''... ଦୂରାଗତ ଏକ ହାଲ୍‌କା ବାସ୍ନା ପରି ସଚେତନ ପାଠକର ମନ ଓ ଚେତନାରେ କ୍ରମଶଃ ସଂଚରି ଯାଉଥିବା ପାରମିତାଂକ ଗଳ୍ପ ତାଂକ ଲେଖାର ଆରଂଭରୁ ହିଁ ଓଡ଼ିଆ ଗଳ୍ପରେ ନୂଆ ପ୍ରତ୍ୟୟ ଆଣିଦିଏ । ଖୁବ୍ ବଛା ବଛା, କ୍ୱଚିତ୍ ଆହରିତ ଅନୁଭୂତି ଓ ଅନୁଚିଂତନର ବିରଳ ଦିଗଂତମାନ ଉନ୍ମୋଚିତ ହୋଇଥାଏ ତାଂକ ଗଳ୍ପରେ । ପାରମିତାଂକ କଥନ-ଢଂଗଟି ଏପରି ଯେ, ତାଂକର ପ୍ରାୟ ପ୍ରତ୍ୟେକଟି ଗଳ୍ପରେ ଲୁଚି ରହିଥାଏ ଗଳ୍ପର ଗୂଢ଼ତ୍ୱ ଓ ତୁଂଗିମାକୁ କ୍ଷୁର୍ଣ୍ଣ କରୁ ନଥିବା କବିତାର ସ୍ପର୍ଦ୍ଧା । ବର୍ଣ୍ଣିତ ଦୃଶ୍ୟ ଓ ଦୃଷ୍ଟିରୁ ନୂଆ ନୂଆ ବିକଳ୍ପ ହୋଇ ପଢ଼ା ସରିବାର ବହୁ କାଳ ଯାଏଁ ପାଠକର ଅବବୋଧକୁ ବିବଶ କରି ରଖଂତି ପାରମିତା । ଉଚ୍ଚାରଣରେ ସ୍ୱଚ୍ଛତା ଓ ସଂଭ୍ରାଂତ୍ୟ ସାଂଗକୁ ଆବେଦନରେ ଅନନୁଭୂତ ସଦ୍ୟତା ଯଦି ହୁଏ 'ବିବିଧ ଅସ୍ୱପ୍ନ'ର ପ୍ରମୁଖତା, ତେବେ 'ଭାଷାକ୍ଷରା' ଅବଶ୍ୟ ହେବ ତା'ର ଈପ୍‌ସିତ ଉତ୍ତରଣ...''

-ପ୍ରକାଶକ

ପ୍ରକାଶକ : ମନୋଜ କୁମାର ମହାପାତ୍ର
**ଗ୍ରନ୍ଥମନ୍ଦିର,** ବିନୋଦବିହାରୀ
କଟକ-୨

ମୁଦ୍ରକ : ତପନ କୁମାର ମହାପାତ୍ର
**ଅପ୍‌ଟିମା ଅଫସେଟ୍ ପ୍ରିଣ୍ଟସ୍,**
ସୂତାହାଟ, କଟକ-୧

ପ୍ରଥମ ମୁଦ୍ରଣ : ଫେବୃଆରୀ, ୨୦୦୦

ପ୍ରଚ୍ଛଦପଟ : ରାଜେଶ ନାୟକ

ମୂଲ୍ୟ : ଟ. ୭୦.୦୦
ସାଦାବନ୍ଧେଇ ଟ. ୬୦.୦୦

# ଅର୍ପଣ

ମୁଁ ସୂକ୍ଷ୍ମସୂତ୍ରଟିକୁ ଅନଭ୍ୟସ୍ତ ହାତରେ ଏ ପାଖ ସେପାଖ କରୁଥିଲାବେଳେ.....

ତା'ର ଚାରିପଟରେ ସନ୍ଦିଗ୍ଧ କାହାଣୀ-ବଳୟଟିଏ ତିଆରି କରିବାର ସ୍ପର୍ଦ୍ଧା କରୁଥିଲାବେଳେ...

ସେଥିରେ କୌଣସିମତେ ମାଖିଦେଇଥିବା ପୁଟକୁ ପରଖିସାରି ସ୍ୱସ୍ତିର ନିଶ୍ୱାସ ନେଲାବେଳେ...

— ସେମାନେ ମନେପଡ଼ନ୍ତି ନାହିଁ ।

ଅଥଚ ଏଇଭଳି ଭାବରେ ମୋ ସାଧରୁ ମୁକୁଳିଯାଇଥିବା ମୋର କାହାଣୀଟିଏ ପଢ଼ିସାରି,

— ଅନ୍ୟମନସ୍କତା ହେତୁ ହେଉପଛେ,

— କେଉଁଠି କେମିତି ଭେଟହେଲେ, କ୍ଷଣଟିଏ ଅଟକିଯିବାର ଲୌକିକତା ହେତୁ ହେଉପଛେ,

— ପାଖରେ ପଡ଼ିଥିବା ଟୁକୁରାଏ କାଗଜରେ ଦୁଇଧାଡ଼ି ଲେଖି ପଠାଇଦେବାର ମାନସିକତା ହେତୁ ହେଉପଛେ,

ସେମାନେ ଯେଉଁ ପଦେ-ଦୁଇପଦ ସମାନୁଭବ ମୋ ସହ ବିନିମୟ କରନ୍ତି, ସେତକ ଯେ ଅମୂଲ୍ୟ, ଅକ୍ଷର, ଅମୃତମୟ ମୋ ପାଇଁ

— ସେମାନେ ଜାଣନ୍ତି ନାହିଁ ।

ଏଇ ଅନନ୍ୟ ସଂଯୋଗର ଦୀର୍ଘାୟୁଷ କାମନାକରି, ସେଇ ସଂବେଦ ପାଠକଂକ ହାତରେ 'ଭାଷାକ୍ଷରା' ଅର୍ପଣ କରୁଛି ।

# ଧନ୍ୟବାଦ

— ଅନ୍ୱେଷାଙ୍କୁ, ମୋର ବନ୍ଦ ଦୁଆରମୁହଁରୁ ଅନେକବାର ବିନା ଅଭିଯୋଗରେ ଫେରି ଯାଇଥିବା ଓ ଅକ୍ଷରଟିଏ ପଢ଼ିନପାରି ମଧ୍ୟ ମୋ ପ୍ରଥମ ସଂକଳନକୁ ଆଦରର ଧନ କରିଥିବାପାଇଁ,

— କବି ପ୍ରତିଭା ଶତପଥୀଙ୍କୁ, କାହାଣୀଟିଏ ଭିତରକୁ ଆସିବାର ସଂକୋଚ ଯାଚନା କରୁଥିବାବେଳେ, ଅନ୍ୟ କୌଣସି ବର୍ଣ୍ଣାଢ୍ୟ ଆଗନ୍ତୁକଙ୍କୁ ପ୍ରବେଶର ଅଗ୍ରାଧିକାର ନ ଦେବାକୁ ବାରମ୍ବାର ଚେତାଇଦେଇଥିବାରୁ,

— ସୁବ୍ରତଙ୍କୁ, ମୋର କହି ନ ହେଇଥିବା ଓ କହିବାର ଦୁର୍ବାର ଆଶା ନେଇ ଅପେକ୍ଷା କରିବସିଥିବା କାହାଣୀମାନଙ୍କ ଯଥାକ୍ରମେ ଅତୀତ ଓ ଭବିଷ୍ୟତର ସାକ୍ଷୀ ହୋଇଥିବାରୁ,

— କବି ହୃଷୀକେଶ ମଲ୍ଲିକଙ୍କୁ, ଭାଷାକ୍ଷରାଠାରୁ ମୟୂରବରବାହନା ଦେବୀଙ୍କୁ ସଂଯୋଜିତ କରିବା ପଥରେ ପ୍ରେରଣାର ଉତ୍ସ ହୋଇଥିବା ହେତୁ,

— ଶିଳ୍ପୀ ରାଜେଶ ନାୟକଙ୍କୁ, ବର୍ଣ୍ଣବିଭା ମାଧ୍ୟମରେ ଅମୂର୍ତ୍ତକୁ ଛିଡ଼ା କରିପାରିଥିବା ହେତୁ,

— ବନ୍ଧୁ ମନୋଜ ମହାପାତ୍ରଙ୍କୁ, ମୋର କାହାଣୀସୁଲଭ ସମ୍ଭାବ୍ୟ ଅଦ୍ଭୁତତାକୁ ଧୈର୍ଯ୍ୟସହକାରେ ମନସ୍ଥ କରିଥିବା ଓ ଅନତି ସମୟରେ ବହିଟିକୁ ମୁଦ୍ରିତ କରିବାର ସହୃଦୟତା ହେତୁ,

ଧନ୍ୟବାଦ ।

# ସୂଚୀପତ୍ର



---

# ବିସ୍ମୃତ ବିହଂଗ

ଅରୁଣ !

ଇଏ ତ ଅରୁଣ ! ଚମକିପଡ଼ିଲେ ମାନସୀ । ଅରୁଣ ଏମିତି, ଏଠି ? ସେଇ ଲମ୍ବା ପତଳା ଶ୍ୟାମଳ ଚେହେରା, ଚକ୍ ଚକ୍ କରୁଥିବା ପ୍ରଶ୍ନିଳ ଆଖି – ଇଏ ତ ଅରୁଣଙ୍କ ଛଡ଼ା ଆଉ କେହି ହୋଇପାରେନା !

ଟିକିଏ ପରେ ପ୍ରକୃତିସ୍ଥ ହେଲେ ମାନସୀ । ଦର୍ପଣରେ ଦେଖୁଥିବା ନିଜ ଚେହେରା ମନେପଡ଼ିଗଲା ତାଙ୍କର । ଆଗପଟରୁ ପ୍ରାୟ ଅର୍ଧାଧିକ କେଶ ତାଙ୍କର ପାଚିଗଲାଣି । ଆଠ ବର୍ଷ ହେବ ସେ ଡାଇ କରୁଛନ୍ତି । ଚେହେରାର ସେଇ ସ୍ନିଗ୍ଧ ମାଦକତା ନାହିଁ– ସମୟ ଓ ବୟସ ତାଙ୍କର ଉଚିତ କାର୍ଯ୍ୟକାରିତା ଦେଖାଉଛନ୍ତି – ସେଥିପ୍ରତି ଖାତିର ନଥିଲା ଯେ ତାଙ୍କର; କିନ୍ତୁ –

ସେ ଯଦି ଏବେ ଏମିତି–ଅରୁଣ କେମିତି ପବନରେ ପରିଚାଳିତ ହେଉଥିବା ତିରିଶ ବର୍ଷ ତଳର ଶ୍ୟାମଳ ତରୁଣ ଥିବେ– ତାଙ୍କ ଆଖି ଦୁଇଟା ସେମିତି ବିଜୁଳିର ଚମକ ଓ ପାରଦର ଦ୍ରବଣ ନେଇ ତାଙ୍କୁ ଚାହିଁଥିବ ? ହସିପକାଇଲେ ମନକୁ ମନ ମାନସୀ । କିନ୍ତୁ ଅରୁଣ ସେତେବେଳେ ଠିକ୍ ଏମିତି ଦିଶୁଥିଲେ । ଆଉଥରେ ଯୁବକଟିକୁ ଲକ୍ଷ୍ୟକଲେ ମାନସୀ । ଦୁଇଟି ମଣିଷ କେବେହେଲେ ଏକାଭଳିଆ ହୋଇପାରନ୍ତି ନାହିଁ, ପୁଣି ସମୟର ଏପରି ବ୍ୟବଧାନରେ ! ବିଶ୍ୱାସ ହେଉନଥିଲା ତାଙ୍କର । ମନକୁ ବୁଝାଉଥିଲେ ସେ – ନାଇଁ ହଠାତ୍ ଏମିତି ଲାଗିଲାନା – ଅରୁଣ କ'ଣ ଏମିତି ଥିଲେ ? ଅତି ସାଧାରଣ ପରିଧାନ ଥିଲା ତାଙ୍କର । ପିଲାଟି ଅତ୍ୟନ୍ତ ଆତ୍ମବିଶ୍ୱାସୀ ଓ ସନ୍ତୁଷ୍ଟ ଦିଶୁଛି । ଅରୁଣ କିନ୍ତୁ ଲାଗୁଥିଲେ ଯେମିତି କିଛି ଗୋଟାଏ ଖୋଜୁଥିଲାପରି ! ସବୁବେଳେ କିଛି ଗୋଟାଏ ପ୍ରତ୍ୟାଶା ଓ ଅପୂର୍ଣ୍ଣତା ତାଙ୍କ ଚାହାଣିରୁ ଝରିପଡୁଥିଲା ।

କିନ୍ତୁ ଏମିତି ଅରୁଣଙ୍କ ପରି ପୂରାପୂରି ! କିଏ ହୋଇପାରେ – ଅରୁଣଙ୍କ ପୁଅ ବି ତ ହୋଇପାରେ ! ପୁଣି ଗୋଟିଏ ଚମକ ଖେଳିଗଲା ତାଙ୍କ ଭିତରେ । କଣେଇକରି ସୁଧୀରଙ୍କୁ ଚାହିଁଲେ ସେ । ସୁଧୀର ସେମିତି ଖବରକାଗଜ ଭିତରେ ମୁହଁ ପୋତି ଦେଇଛନ୍ତି । ଉଠିପଡ଼ି ସାମାନ୍ୟ ଚାଲିବାକୁ ଚାହିଁଲେ ମାନସୀ ।

ଇନ୍ଦିରା ଗାନ୍ଧି ଇଣ୍ଟରନ୍ୟାସନାଲ ଏୟାର୍ ପୋର୍ଟରେ ଅଧଘଣ୍ଟାଏ ହେବ ଅପେକ୍ଷା କଲେଣି ସେମାନେ–କାଲିଫର୍ଣିଆରୁ ଆସୁଛନ୍ତି ଝିଅ ଓ ଜ୍ୱାଇଁ – ସାଙ୍ଗରେ ଦୁଇବର୍ଷର ନାତୁଣୀ । ଅଧିକ ଆକର୍ଷଣ ସେଇଠି । ଝିଅର ଡେଲିଭରି ପରେ ଦୁଇ ମାସର ନାତୁଣୀକୁ

ନେଇ ଯାଇଥିଲା ଯେ, ପାଖାପାଖି ଦୁଇ ବର୍ଷ ପରେ ଫେରୁଛି । ଫୋନ୍‌ରେ ନାତୁଣୀର ଦରୋଟି ଭାଷାର ଗୁଡ୍‌ମର୍ଣ୍ଣିଂ ଶୁଣିଛନ୍ତି ସେ । ଚିଠିରେ ଝିଅ ତା'ର ଭଲପଣିଆ ଓ ଦୁଷ୍ଟାମିର ବିଶଦ ବିବରଣୀ ଦିଏ । ତା'ର ବଢୁଥିବା ସମୟର ଫଟୋ ସବୁ ପଠାଏ । କିନ୍ତୁ ସେଇ ଗେଲବସରର ଲବଣିପିତୁଳାକୁ ଦୁଇ ହାତରେ ଟେକିନେଇ ଛାତିରେ ଜାକି ଧରିବାର ଅନୁଭୂତି ମିଳିପାରି ନଥିଲା ଏ ପର୍ଯ୍ୟନ୍ତ । ସୁଧୀର ଓ ସେ ଅତ୍ୟନ୍ତ ଅଧୀର ଅନେକ ଦିନରୁ– ଯେବେଠାରୁ ସେମାନଙ୍କର ଆସିବାର ଖବର ପାଇଲେଣି । ଏଇଠୁ, ଏୟାରପୋର୍ଟରୁ ରିସିଭ୍ କରିବେ, ସେତିକିପାଇଁ ମଧ୍ୟ ଧୈର୍ଯ୍ୟ ରହୁନଥିଲା ତାଙ୍କର । ଆଜି ରେଷ୍ଟ ହାଉସ୍‌ରେ ରହିବେ ଓ କାଲି ରାଜଧାନୀ ଏକ୍‌ସପ୍ରେସ୍ ଧରିବେ – ଇଏ ସେମାନଙ୍କର ଯୋଜନା ।

ପିଲାଟି ତା' ବସିଥିବା ଜାଗାରୁ ଉଠିପଡ଼ିଲାଣି– ଟିକିଏ ଏପାଖ ସେପାଖ ବୁଲୁଛି – ସେଇ ଅରୁଣଙ୍କ ଢଙ୍ଗରେ ଚାଲୁଛି । ଆରାଇଭାଲ୍ ଟାଇମ୍ ଫ୍ଲାସ୍ ହେଉଥିବା ଟିଭି ପାଖକୁ ଆଗେଇଯାଉଛି । କିଛି ଦେଖିସାରି ପୁଣି ଫେରିଆସୁଛି ତା' ଜାଗାକୁ ଓ ବାଁ ପଟକୁ ମୁହଁ ଝୁଙ୍କାଇ କାହାକୁ କିଛି କହୁଛି । କାହାକୁ କହୁଛି ? ସ୍ତ୍ରୀଲୋକ ଜଣେ ବସିଛନ୍ତି – ପିଲାଟିର ସମସାମୟିକ ନୁହଁନ୍ତି– ବୟସ୍କା ଲାଗୁଛନ୍ତି । ଦୁଇ ପାଦ ଆଗେଇଗଲେ ମାନସୀ ଓ ନିରେଖିକରି ଚାହିଁଲେ ।

ଇଏ ତ ପ୍ରଭା ! ପ୍ରଭା ନିଶ୍ଚୟ । ହଠାତ୍ କିଛି ଆବିଷ୍କାର କଲାଭଳିଆ ଲାଗିଲା ମାନସୀଙ୍କୁ । ଏଇ ପ୍ରଭା, ଅରୁଣଙ୍କ ସ୍ତ୍ରୀ ଓ ପିଲାଟି ଅରୁଣଙ୍କ ପୁଅ । ସେମାନେ ଗୋଟିଏ ସହରରେ ରହୁଥିଲେ ମଧ୍ୟ କେବଳ ଚାରିଥର ଦେଖାହୋଇଛି ସେମାନଙ୍କର । ପ୍ରଥମେ ଥରେ ସେ ଗୋଟିଏ ବଡ଼ ଲୁଗା ଦୋକାନରୁ ଫେରୁଥିବାବେଳେ ଡ୍ରାଇଭର୍‌କୁ ଜିପ୍‌ରେ ଲୁଗା ପ୍ୟାକେଟ୍‌ଗୁଡ଼ିକ ରଖି ସେଇଠି ଜଗି ରହିବାକୁ କହିଲା ପରେ ବୁଲିପଡ଼ିଲା ବେଳକୁ ଠିକ୍ ତାଙ୍କ ପାଖରେ ସ୍କୁଟର୍‌ଟିଏ ରହିଥିଲା, ସେ ମୁଣ୍ଡ ଟେକି ଦେଖିଲେ ଅରୁଣ ଓ ତାଙ୍କ ପଛରେ ଓହ୍ଲାଉଥିଲେ ଅଧା କପାଳ ପର୍ଯ୍ୟନ୍ତ ଓଢ଼ଣା ଟାଣିଥିବା ଶୀର୍ଣ୍ଣକାୟା ଛୋଟିଆ ସ୍ତ୍ରୀଲୋକ ଜଣେ ।

"ପ୍ରଭା, ଇଏ ମାନସୀ । ମୁଁ ତମକୁ କହିଛି ।" ଅରୁଣ ଚିହ୍ନେଇ ଦେଇଥିଲେ । କ'ଣ ସେ ପ୍ରଭାଙ୍କୁ କହିଛନ୍ତି କେଜାଣି !

ମୁଣ୍ଡ ଟୁଙ୍ଗାରି ଚାହିଁଥିଲେ ଭଦ୍ରମହିଳାଜଣକ ମାନସୀଙ୍କୁ । ମାନସୀ ତାଙ୍କୁ ସେତେବେଳେ ସାମାନ୍ୟ ନିରେଖି ଦେଖୁଥିଲେ । ଇଏ ଅରୁଣଙ୍କ ସ୍ତ୍ରୀ ! ଅରୁଣଙ୍କ ବ୍ୟକ୍ତିତ୍ୱ, ଔଜ୍ଜ୍ୱଲ୍ୟ ଓ ବୁଦ୍ଧିମତ୍ତା ସମ୍ମୁଖରେ କେଡ଼େ ନ୍ୟୂନ ଓ ସାଧାରଣ ଲାଗୁଛନ୍ତି ସ୍ତ୍ରୀ ଲୋକଜଣକ ! ନୂଆ ବୋଧହୁଏ ବାହାହୋଇଛନ୍ତି ସେମାନେ । ସେତେବେଳକୁ ମାନସୀଙ୍କର ଦ୍ୱିତୀୟ ସନ୍ତାନ ଜନ୍ମ ହୋଇସାରିଲାଣି । ଜମାରୁ ମାନୁନାହିଁ ଅରୁଣଙ୍କୁ

ସେତେବେଳର ତରୁଣ ମନନେଇ ଭାବିଥିଲେ ସେ । ତାଙ୍କର, ଅରୁଣଙ୍କର ଯୋଡ଼ି ଯେମିତି ହୋଇଥା'ନ୍ତା, ସେମିତି କ'ଣ ହୋଇପାରିଲା ? ମାମୁଲି କଥା କେଇପଦ ହେବା ପରେ ସେମାନେ ପରସ୍ପରଠାରୁ ବିଦାୟ ନେଇଥିଲେ । ସେଦିନ ରାତିରେ କିନ୍ତୁ ଅନେକ ଡେରିଯାଏ ନିଦ ହୋଇନଥିଲା ମାନସୀଙ୍କୁ । ଏଡ଼େ ସାଧାରଣ ଝିଅଟିକୁ କେମିତି ଅରୁଣ ବାହାହୋଇପାରିଲେ ?

କିଛିଦିନ ଭିତରେ ପୁରୁଣା ସାଙ୍ଗସାଥୀ ମହଲରେ ସେ ଶୁଣିଥିଲେ ଯେ ଅରୁଣ ପଦାର୍ଥ ବିଜ୍ଞାନରେ ଅଧ୍ୟାପନା କରୁଛନ୍ତି ଓ ବାପା ମାଆଙ୍କ ଇଚ୍ଛାରେ ମ୍ୟାଟ୍ରିକ୍ ପାସ୍ କରିଥିବା ଗାଉଁଲି ଝିଅଟିଏ ବାହାହୋଇଛନ୍ତି ।

ନିଜର କ୍ରମବର୍ଦ୍ଧିଷ୍ଣୁ ପରିବାରର ଦାବି ଓ ତାକୁ ନେଇ ତାଙ୍କ ନିଜର ଆସକ୍ତି ମଧ୍ୟରେ ସେ ଅରୁଣ ଓ ତାଙ୍କର ସାଧାରଣ ପତ୍ନୀଙ୍କୁ ପ୍ରାୟ ଭୁଲିଯାଇଥିଲେ । କେବଳ ବୋଧହୁଏ ଆଉ ତିନି ଥର ଖଣ୍ଡେ କେବେ କେଉଁଠି ପ୍ରଭାଙ୍କ ସହ ଦେଖାହୋଇଯାଇଥିଲା । ସବୁଥର ଏକା । ଥରଟିଏ ଛୋଟ ଶ୍ୟାମଳ ବର୍ଣ୍ଣର ପୁଅଟିଏ ଥିଲା ସାଙ୍ଗରେ । ଏଇ ପୁଅଟି ବୋଧହୁଏ, ଯିଏ ବଡ଼ହୋଇ ପୂରାପୂରି ଅରୁଣଙ୍କପରି ଦେଖାଯାଉଛି । ସେଥରକ ଅରୁଣଙ୍କ ଖବର ପଚାରିଥିଲେ ମାନସୀ, ପ୍ରଭାଙ୍କୁ । ପ୍ରଭା ଶୁଖିଲା ଭାବରେ ଉତ୍ତର ଦେଇଥିଲେ ଯେ ସିଏ ଖାଲି ରିସର୍ଚ୍ଚ କାମରେ ବ୍ୟସ୍ତ, ଆଉ....

ଗୋଟିଏ ଗୋଟିଏ ପାଦ ଆଗେଇ ଯାଉଥିଲେ ମାନସୀ । କ'ଣ ସେ କହିବେ ପ୍ରଭାଙ୍କୁ ବୁଝିପାରୁ ନଥିଲେ । ଚଂଚଳ ଭାବରେ ଆଖପାଖକୁ ଦୃଷ୍ଟିଦେଲେ ସେ । ନା, ଅରୁଣ କେଉଁଠି ଦେଖାଯାଉନାହାନ୍ତି । ପାଖାପାଖି ହେବାରୁ ପ୍ରଭା ତାଙ୍କୁ ଚିହ୍ନିଲା ଚିହ୍ନିଲା ପରି ହେଲେ । ହଠାତ୍ ତାଙ୍କ ଶୀର୍ଣ୍ଣ ଚେହେରା ଭିତରର ମଳିନ ଆଖି ଦୁଇଟି ଚମକି ଉଠିଲା; ସେ ଏକାଥରେ ଠିଆହୋଇପଡ଼ିଲେ –

''ଇଏ, ତୁମ ପୁଅ ? ପୂରାପୂରି ଅରୁଣଙ୍କପରି ହୋଇଛି ।'' ଟିକିଏ ହସିବାକୁ ଚେଷ୍ଟା କଲେ ମାନସୀ ।

''ମାନସୀ ଅପା'' । ତାଙ୍କ କଥା ଯେମିତି ଶୁଣିପାରି ନଥିଲେ ପ୍ରଭା । ଆବେଗରେ ମାନସୀଙ୍କର ଦୁଇ ହାତକୁ ମୁଠାଇ ଧରିଲେ ସିଏ ନିଜର ପତଳା, ଶିରାଳ ହାତରେ ଓ ପାଟିକରି କାନ୍ଦିଉଠିଲେ ।

''ଆରେ ଆରେ..'' କହୁ କହୁ ଏକ ଅଭୂତପୂର୍ବ ଉପଲବ୍ଧିରେ ଶିହରି ଉଠିଲେ ମାନସୀ ।

ତାଙ୍କର ଦୁଇ ହାତକୁ ଜାବୁଡ଼ି ଧରିଥିବା ପ୍ରଭାଙ୍କର ପତଳା ହାତ ଦୁଇଟିରେ ଚୁଡ଼ି ନାହିଁ– ସେ ପିନ୍ଧିଛନ୍ତି ମଇଳା ରଙ୍ଗର ବାପ୍ତା ଶାଢ଼ିଟିଏ, ମୁଣ୍ଡରେ ବା ସୂଛାରେ ସିନ୍ଦୂର ନାହିଁ !

ଅରୁଣ ନାହାନ୍ତି ! କେଡ଼େ ଅଦ୍ଭୁତ କଥା ସତରେ ! ଏଡ଼େ ବଡ଼ ପୃଥିବୀରେ, ଏତେ ଲୋକ ଅଛନ୍ତି, ତାଙ୍କ କାମ କରୁଛନ୍ତି, ବଞ୍ଚୁଛନ୍ତି; ଅଥଚ ଅରୁଣ ଅପସରି ଗଲେ !

ତାଙ୍କର ଅରୁଣ– ତାଙ୍କ ତାରୁଣ୍ୟ, ସ୍ୱପ୍ନ, ପ୍ରେମ ଓ ଶପଥ ସବୁର କେବଳ ଏକମାତ୍ର ସାକ୍ଷୀ– ସମ୍ଭବ ହେଉ ବା ସମ୍ଭବ ନ ହୋଇପାରୁ ସେ ସବୁ । ସେଇ ସମୟତକ ତ ମିଛ ନୁହେଁ– କେଡ଼େ ଜୀବନ୍ତ ଆଜି ମଧ୍ୟ ।

''ଦୁଇବର୍ଷ ହେଲା ରିସର୍ଚ୍ଚ କରିବାକୁ ଯାଇଥିଲେ ନିଉଜର୍ସି । ଖବର ଆସିଥିଲା ହାର୍ଟଆଟାକ୍ ହୋଇଛି– ଏବେ ତ ମାସେ ତଳେ ଖବର ଆସିଲା ଚାଲିଯାଇଛନ୍ତି । ପନ୍ଦର ଦିନ ହେଲା ଦିଲ୍ଲୀରେ ବସିଛୁ । ବଡ଼ି ଆସିବ ଆସିବ ବୋଲି– ଆଜି ନିଶ୍ଚୟ ଆସୁଛି ବୋଲି ଫ୍ୟାକ୍ସ ଖବର ଆସିଛି....'' ପାଖରେ ଠିଆହୋଇଥିବା ତରୁଣଟିର ଆଖି ଛଳଛଳ ହେଉଛି । ମାନସୀ କିଛି ଶୁଣିପାରୁ ନଥିଲେ ଯେମିତି ।

କେଡ଼େ ଜୀବନ୍ତ ସତରେ ! ସେଇତକ ସମୟ– ସେଇତକ ସ୍ମୃତି !

''ତୁମେ କୋଷ୍ଟାଲ୍ ଲୋକଗୁଡ଼ା– ବୁଝିଲ – କୋଷ୍ଟାଲ୍ ଲୋକମାନେ ବଡ଼ ଅବିଶ୍ୱାସୀ ।''

ବଉଳଗଛରୁ ଛାଡ଼ିଯାଇଥିବା ବର୍ଷାର, ପତ୍ର ସବୁ ଧରିରଖିଥିବା ପାଣି ଟପ୍ ଟପ୍ ଝରିପଡୁଥିଲା ସେମାନେ ବସିଥିବା ବେଞ୍ଚ୍ ଉପରେ । ସେଥିରୁ କେଇବିନ୍ଦୁ ତାଙ୍କର ଓ ଅରୁଣଙ୍କର କେଶ ଉପରେ ମଧ୍ୟ ଲାଗିରହିଲା । ସେଇ ଟିକି ଟିକି ପାଣିବିନ୍ଦୁକୁ ଲକ୍ଷ୍ୟ କରୁ କରୁ ମୁଠାଏ ବଉଳଫୁଲ ଆଞ୍ଜୁଳି ଭିତରେ ଏପଟ ସେପଟ କରି ଉତ୍ତର ଦେଇଥିଲେ ମାନସୀ । ''ମିଛ କଥା– ପୂରା ମିଛ । ମଣିଷ କେବେ କୌଣସି ସ୍ଥାନ ନେଇ ବିଶ୍ୱାସୀ ଅବିଶ୍ୱାସୀ ହୁଏନା ।''

''ହଉ, ଦେଖାଯିବ । ସମୟ ଆସିଲେ ଜଣାପଡ଼ିବ ।'' ଉଦାସ କଣ୍ଠରେ ଉତ୍ତର ଦେଇଥିଲେ ଅରୁଣ ।

''ଠିକ୍ ଅଛି । ସମୟ ଆସିଲେ ତ ଦେଖାଯିବ; କିନ୍ତୁ ଏବେ ଏତେ ସିରିଅସ୍ ହେବାର କ'ଣ ଅଛି ? ଏବେ ସମୟ କହୁଛି ଯେ ପଦନ ସାହୁ ଦୋକାନରୁ ଦୁଇକପ୍ ଗରମ ଚା' ଆସିଯାଆନ୍ତା କି ! ବହୁତ କିଛି ବର୍ତ୍ତମାନର ସମୟ ଚାହୁଁଛି ଯେ – ଏବେ କେବଳ ଦୁଇକପ୍ ଚା' ହିଁ ଯଥେଷ୍ଟ । ଚାଲ ।'' ଚପଳ ଭାବରେ ଆଖିନଚେଇ ହସିହସି ଉତ୍ତର ଦେଇଥିଲେ ମାନସୀ ।

ହସିପକାଇଥିଲେ ମଧ୍ୟ ଅରୁଣ । ମୁହଁରୁ ତାଙ୍କର ସେଇ ଉଦାସିଆ ମେଘ ଘୁଞ୍ଚି ଯାଇଥିଲା । ''ନାଇଁ, ନାଇଁ, ତୁମେ ବସ, ମୁଁ ନେଇଆସୁଛି,'' ସେ କହିଥିଲେ ।

''ଆରେ ଚା'ର ଏତେ ଛୋଟ ଛୋଟ ଗ୍ଲାସ୍ ଯେ ହାତ ତାତିଯିବ ।''

''ନାଇଁ, କିଛି ହେବ ନାହିଁ । ମୁଁ ଆଣୁଛି ।''

''ତେବେ ଏଇ ରୁମାଲଟା ନିଅ, ଗ୍ଲାସ୍‌ରେ ଗୁଡ଼ାଇକରି ଆଣିବ ।'' ମାନସୀ ପର୍ସରୁ ରୁମାଲଟେ ବାହାରକରି ଅରୁଣଙ୍କୁ ଦେଇଥିଲେ ।

ଅରୁଣଙ୍କ ବଡ଼ି ଆସୁଛି । ନିର୍ଜୀବ, ନିସ୍ପନ୍ଦ ଅରୁଣଙ୍କୁ – ହୁଏତ ଧଳାର ବଡ଼ ଚାଦରରେ ଗୁଡ଼ାଇଦିଆଯାଇଥିବ – ହାତ ତାତି ନଯିବା ପାଇଁ ସେ ବଢ଼ାଇଦେଇଥିବା ଛୋଟ ପତଳା ଧଳା ରୁମାଲଠାରୁ ଆହୁରି ଅନେକ ବଡ଼ । ଅରୁଣଙ୍କ ଶବଦାହ ବୋଧହୁଏ ଏଇଠି ହେବ – ଦିଲ୍ଲୀରେ ।

କାନ୍ଧରେ ପରିଚିତ ଆଙ୍ଗୁଳିର ମୃଦୁସ୍ପର୍ଶ । ସୁଧୀର କେତେବେଳେ ଆସି ପଛରେ ଠିଆହୋଇଛନ୍ତି ।

''ମାନୁ, ଫ୍ଲାଇଟ୍ ଆନାଉନ୍ସ ହେଲାଣି । ଟିକିଏ ଆଗକୁ ଯିବା ।''

ଯନ୍ତ୍ରଚାଳିତ ଭଳି ସୁଧୀରଙ୍କ ପଛେ ପଛେ ଚାଲୁଥିଲେ ସେ ।

ଏଇ ଫ୍ଲାଇଟ୍ ବୋହିଆଣୁଛି ତାଙ୍କର ଅତି ଆଦରର ଧନ, ତାଙ୍କ ନୟନପିତୁଳା ନାତୁଣୀକୁ; ଯାହାକୁ ଦେଖିବାପାଇଁ ସେ ଦୁଇବର୍ଷ ହେଲା ଛଟପଟ ହେଉଛନ୍ତି । ସୁଧୀରଙ୍କ ଦେହ ଖରାପ ଯୋଗୁ ତିନିତିନିଥର ଟିକେଟ୍ ହୋଇ କ୍ୟାନ୍ସଲ୍ ହୋଇଛି । ଆଜି ସକାଳୁ ବ୍ୟଗ୍ରତା ହେତୁ ସେ ବ୍ରେକ୍‌ଫାଷ୍ଟ ବି ଖାଇପାରି ନାହାନ୍ତି ।

ଏଇଥିରେ ଆସୁଛି ବରଫ ଦିଆହୋଇ ମାସକ ତଳୁ ସଢ଼ାଡ଼ି ରଖାହୋଇଥିବା ଅରୁଣଙ୍କ ବଡ଼ି– ସେମାନଙ୍କ ଶୋକସଂତପ୍ତ ପରିବାରର ସାମାନ୍ୟ ଆଶ୍ୱସ୍ତିର ସଂତକ ହୋଇ !

''ମାନୁ, କ'ଣ ହେଲା ? ଦେହ ଭଲ ଲାଗୁନାହିଁ କି ? ବାରମ୍ୱାର କହୁଛି ମୁଁ, କିଛି ଖାଇକରି ଆସ ।''

''ନାଇଁ, ନାଇଁ କିଛି ନାହିଁ, ହଠାତ୍ ଏମିତି... ।'' କର୍ଡନ୍ଡ ଏରିଆର ଲୁହା ରେଲିଂ ଧରି ସାମାନ୍ୟ ଆଗକୁ ଝୁଂକିପଡ଼ିଲେ ମାନସୀ ସୁଧୀରଙ୍କୁ ଯେମିତି ତାଙ୍କ ମୁହଁ ନ ଦିଶିବ ।

କେତେ ଜୀବନ୍ତ ସେଇ ସ୍ମୃତି !

ସବୁକିଛି ଯଥାସ୍ଥାନରେ ରଖିଦେଲେ, କେବଳ ସମୟକୁ ପଛକୁ ଫେରାଇ ନେଇପାରିଲେ...

''ଶୁଣ, କୁଆଡ଼େ ଯାଉଛ ?''

''ମୋର ସକାଳୁ ଲାବରେଟୋରି ଯିବାର ଥିଲା । କ'ଣ କୁହ ?''

''ମୋର ବହୁତ କଥା କହିବାକୁ ଅଛି – ସମୟ ଦରକାର ।''

''ଠିକ୍ ଅଛି, ମୁଁ ଗୋଟାଏ ବେଳକୁ ଫେରୁଛି । ତା'ପରେ ଆଉ କିଛି କ୍ଲାସ୍ ନାହିଁ ।''

''ନାଇଁ, ଏବେ ଶୁଣିବାକୁ ହେବ । ମୁଁ ଅପେକ୍ଷା କରିପାରିବି ନାହିଁ, ଏତେ ଡେରିଯାଏଁ...'' ଗୋଡ଼ କଚାଡ଼ି କାନ୍ଦକାନ୍ଦ ହୋଇ କହିଥିଲେ ମାନସୀ ।

''ହଉ, ଠିକ୍ ଅଛି, ଚାଲ ।''

ସବୁ ଥରଭଳି ବଉଳଗଛ ମୂଳର ସିମେଣ୍ଟ ବେଞ୍ଚରେ ବସିଲେ ସେମାନେ । ଆକାଶରେ ମେଘ ଥିଲା କି ନାହିଁ, ଖରା ହେଉଥିଲା କି ଛାଇଥିଲା, କିଏ ଯାଉଥିଲେ ଆସୁଥିଲେ, କିଛି ମନେନାହିଁ ମାନସୀଙ୍କର । ନଇଁପଡ଼ି ଝରିପଡ଼ିଥିବା କେତୋଟି ଫୁଲ ଗୋଟାଇନେଇ ନଖରେ ଛିଣ୍ଡାଉଥିଲେ ସେ । ଦୁଇଜଣଯାକ କିଛି ସମୟ ସେମିତି ଚୁପ୍‌ଚାପ୍ ବସିଲେ ।

''ଅରୁଣ, ଅରୁଣ, ମୁଁ କ'ଣ କରିବି କୁହ ?''– କହିବା ସହ କାନ୍ଦିବା ଆରମ୍ଭ କରିଦେଇଥିଲେ ମାନସୀ ।

''ଆରେ, ଆରେ... କ'ଣ ହେଲା ?'' ବ୍ୟସ୍ତ ହୋଇପଡ଼ିଲେ ଅରୁଣ । ମାନସୀଙ୍କ କାନ୍ଦିବା ଜମା ସହିପାରୁ ନଥିଲେ ସେ ।

''ନନା କହିଛନ୍ତି– ପାଠପଢ଼ା ଆଉ ହେବନାହିଁ । ବନ୍ଦ ଏତିକିରେ । ବି.ଏ.ପାସ୍ ହୋଇଗଲା, ଆଉ କ'ଣ ?''

ଟିକିଏ ସମୟ ନିରବ ରହିଲେ ଦୁଇଜଣଯାକ ।

''ଜାଣିଛ ? ବାହାକରି ଦେବାକୁ ଭାରି ଯୋଗାଡ଼ଯନ୍ତ୍ର ଚାଲିଛି ।'' କଣ୍ଠ ରୁନ୍ଧି ହୋଇଯାଇଥିଲା ମାନସୀଙ୍କର ।

ତଳକୁ କରିଥିବା ମୁହଁ ଉଠାଇ ମୁହୂର୍ତ୍ତକପାଇଁ ତାଙ୍କୁ ଚାହିଁଥିଲେ ଅରୁଣ, ପୁଣି ମୁଣ୍ଡ ନୁଆଇଁଦେଇଥିଲେ ।

ଓଃ ! ସେ ଚାହାଣି ! ଆଜି ଏତେବର୍ଷ ପରେ ମଧ୍ୟ ସେଇମିତି ଦିଶିଯାଉଛି ତାଙ୍କୁ ।

କୌଣସି ଚିହ୍ନାପଡୁନଥିବା ଅଲୌକିକ ଯାତନାରେ ବିଦ୍ଧ ଛଟପଟ କରୁଣ ଚାହାଣି !

''ଶୁଣ ଅରୁଣ, ତୁମେ ବାପାଙ୍କୁ କହିବ–କହିବ ଯେ ମୁଁ ଅପେକ୍ଷା କରିବି ତୁମପାଇଁ ।''

''ସେ କ'ଣ ଶୁଣିବେ ?''

କୌଣସି ଅବର୍ଣ୍ଣନୀୟ ଅସହାୟତାରେ ଜୁଡୁବୁଡୁ ଥିଲା ସେ କଣ୍ଠସ୍ୱର ।

''ତୁମେ ଏତେ ବ୍ରିଲିଆଣ୍ଟ୍– ସେ ତୁମ ବିଷୟରେ ଆଗରୁ ଜାଣନ୍ତି– ନିଶ୍ଚୟ ଶୁଣିବେ ।''

ପୁଣି କେତେ ମୁହୂର୍ତ୍ତର ଅବିଚ୍ଛିନ୍ନ ନୀରବତା ।

''ନହେଲେ ଜାଣିଥା ମୁଁ ଆତ୍ମହତ୍ୟା କରିଦେବି ।''

ଚକିତ ଭାବରେ ଆଉରି ଥରେ ମୁଣ୍ଡ ଉଠାଇ ଚାହିଁଥିଲେ ଅରୁଣ ତାଙ୍କୁ ଓ ତାଙ୍କ ହାତ ପାପୁଲିକୁ ଦୁଇ ହାତରେ ମୁଠାଇ ଧରିଥିଲେ – ଅପାର୍ଥିବ କିଛି ଯେ ଯାଚନା କରୁଥିଲେ ଯେମିତି !

ତାଙ୍କର ନନା ଏତକ ପ୍ରଶ୍ରୟ ଦେବାକୁ ମଧ୍ୟ ଉଚିତ ମଣିନଥିଲେ । ସେତେବେଳେ ସେ କଟକର ଜଣେ ପ୍ରସିଦ୍ଧ ଡାକ୍ତର । ବୋଉଙ୍କୁ ଡାକି କହିଦେଇଥିଲେ– କହିଦିଅ

ମାନୁକୁ, ଏମିତି ମାଗିଖିଆ ଘରେ ମୁଁ ବନ୍ଧୁବାନ୍ଧିବିନାହିଁ । ପାଠ ଏତେ ପଢ଼ାଇଲି କ'ଣ ଏଇଥିପାଇଁ ? ତା'ର ଯଦି ଇଛା ସେ ପଳାଇଯାଉ, କିନ୍ତୁ ତା' ନନାର ମଲାମୁହଁ ଦେଖିବ ।

ବୋଉ ପଣତ କାନିରେ ଆଖି ନାକ ପୋଛି ପୋଛି କହିଥିଲେ– ବହୁତ ଭଲ ଘର ଥିଲା ତାଙ୍କର । ଏକର ଏକର ଚାଷଜମି ହୀରାକୁଦ ବନ୍ଧପାଇଁ ନେଇଗଲେ ସରକାର । ସେଥିପାଇଁ ସେମାନଙ୍କର ଏଇ ଦୁରବସ୍ଥା । ଅରୁଣ ଅତି ଭଲ ପଢ଼ନ୍ତି– ଭଲ ମଣିଷ । ଦୁଇଟି ବର୍ଷ ପରେ ନିଶ୍ଚୟ ଭଲ ଚାକିରି କରିବେ । ବାପାଙ୍କୁ ବୁଝାଇବାକୁ ବହୁତ କାକୁତି ମିନତି କରିଥିଲେ ମାନସୀ ବୋଉଙ୍କ ଆଗରେ ।

''ଦୁଇଟି ବର୍ଷ ?'' ଜିଭ କାମୁଡ଼ି ମୁଣ୍ଡରେ ହାତଦେଇ ବସିପଡ଼ିଥିଲେ ମାନସୀଙ୍କ ବୋଉ ।

''ଦୁଇବର୍ଷ ଅପେକ୍ଷା କରିବା କଥା କେମିତି କହିବି ତାଙ୍କୁ ଯେ ମାନୁ– ସେ ତ ଜିଦ୍‌ଧରି ବସିଛନ୍ତି ଯେମିତି ହେଲେ ଦୁଇ ମାସ ଭିତରେ ବାହାଘର କରିବେ ।''

ଅରୁଣଙ୍କର ଛୋଟ ଅନୁରୋଧଟିଏ ପହଞ୍ଚିଥିଲା ତାଙ୍କ ପାଖରେ । ପରଦିନ ଚାରିଟାବେଳେ ଫିଜିକ୍‌ସ ଲ୍ୟାବ୍ ଆଗରେ ଦେଖାକରିବାକୁ– ପାଞ୍ଚ ମିନିଟ୍ ପାଇଁ । ସେ ବୋଧହୁଏ ଆଗରୁ ଆସି ଅପେକ୍ଷା କରୁଥିଲେ ।

''ଅରୁଣ, ମୁଁ...''

''ଥାଉ, କିଛି କୁହନାହିଁ ମାନସୀ, ଦୟାକରି କିଛି କୁହନାହିଁ ।''

ଚକିତ ହୋଇ ଚାହିଁରହିଥିଲେ ମାନସୀ ତାଙ୍କୁ । କ'ଣ ଦିଶୁଛନ୍ତି ଅରୁଣ ? ହେ ଭଗବାନ୍ ! ଏମିତି ଅବସ୍ଥା ତାଙ୍କର କ'ଣ ତା'ରିଦ୍ୱାରାହିଁ ହେବାର ଥିଲା !

''ଅରୁଣ, ପରୀକ୍ଷା ଅଛି, ଆଗରେ...''

''ଜାଣିଛି ।''

ପ୍ରାୟ ପାଞ୍ଚ ମିନିଟ୍‌କାଳ ସେମାନେ ଚୁପ୍‌ଚାପ୍ ଠିଆହୋଇଥିଲେ । ମାନସୀ ତଳକୁ ମୁହଁକରି ରହିଥିଲେ । ଅରୁଣ କ'ଣ କରୁଥିଲେ ସେ ଜାଣିନାହାନ୍ତି ।

''ଗୋଟିଏ ଛୋଟିଆ କଥା ରଖିବ ମୋର, ମାନସୀ ?''

ମାନସୀ ମୁଣ୍ଡ ଟେକି ଚାହିଁଥିଲେ ତାଙ୍କୁ ।

''ତୁମେ ଯେଉଁଠି ଥାଅ, ଯେମିତି ଥାଅ, ମୋର ମଲାଶରୀର ପାଖରେ ଆସି ଠିଆ ହେବ ଟିକିଏ– ମୁହୂର୍ତ୍ତକପାଇଁ ହେଉ... ।''

ଦୁଇ ପାପୁଲିରେ ମୁହଁ ଘୋଡ଼ାଇ କଇଁକଇଁ କାନ୍ଦି ଉଠିଥିଲେ ମାନସୀ । ତିନି ଚାରି ମିନିଟ୍ ପରେ ମୁହଁ ଉଠାଇଲା ବେଳକୁ ଅରୁଣ ଆଉ ନଥିଲେ ସେଠାରେ । ମାନସୀ ତାଙ୍କପାଇଁ ଛିଡ଼ାହୋଇଥିବା ରିକ୍‌ସାରେ ଫେରିଆସିଥିଲେ ।

କଅଁଳ ବୟସର ଭାବପ୍ରବଣତାର ସେଇ ସୂକ୍ଷ୍ମ ଧାରଟି ପ୍ରଚଣ୍ଡ ଜୀବନାନୁଭୂତିର ବନ୍ୟାରେ କେଉଁଆଡ଼େ ହଜିଯାଇଥିଲା । ସେ ବିଷୟରେ କେବେ ଅଧିକ ଚିନ୍ତା କରିନାହାନ୍ତି ମାନସୀ । କରିବାର ଅବକାଶ ମଧ ପାଇନାହାନ୍ତି । ନିଜ ସଂସାରକୁ ନିଖୁଣ ଭାବରେ ତିଆରିକରିବାରେ ବ୍ୟସ୍ତ ରହିଥିଲେ ସେ ବର୍ଷ ପରେ ବର୍ଷ, ଅକ୍ଲାନ୍ତ ଭାବରେ ।

ପ୍ଲେନ୍ ଲ୍ୟାଣ୍ଡ କଲାଣି ଦଶ ମିନିଟ୍ ହେଲା । ଆରାଇଭାଲ୍ ପ୍ରକୋଷ୍ଠ ଭିତରକୁ ପଶି ଆସୁଛନ୍ତି ତାଙ୍କର ଝିଅ ଓ ପଛେ ପଛେ ଜୋଇଁ ନାତୁଣୀକୁ କାଖକରି । ଏକଦମ୍ ଆସି ଓହଳିପଡ଼ିଲା ଝିଅ ତାଙ୍କ କାନ୍ଧରେ– ତା' ପିଲାଦିନପରି କେତେ କ'ଣ କହି କହି– ଆଙ୍ଗୁଠି ଦେଖାଇ ତାଙ୍କ ନାତୁଣୀକୁ । ସେ ମଧ ଚିହ୍ନା ଅଚିହ୍ନା ମୃଦୁ ହସ ଦେଉଛି, ତା' ବାପାର କାନ୍ଧକୁ ଦୁଇ ହାତରେ ଜାବୁଡ଼ି ଧରିଛି । ଭାରି କୌତୁକିଆ ହୋଇଛି ଛୁଆଟା– କରୁଣ ହସ ହସିଲେ ମାନସୀ ତାକୁ ଚାହିଁ ।

''କ'ଣ ହୋଇଛି ମା' ? ତୁମ ଦେହ ଭଲ ଅଛି ତ ?'' ଝିଅ ବ୍ୟସ୍ତହୋଇ ପଚାରୁଛି ।

''କିଛି ନାହିଁ ମା', ଠିକ୍ ଅଛି ।''

ଜ୍ୱାଇଁ ଏ ଭିତରେ ଲଗେଜ୍ ନେଇ ଆସିଲେଣି । ଯିବାପାଇଁ ଉଦ୍ୟତ ହେଲେଣି ସମସ୍ତେ । ପାଦ ଅଟକି ଯାଉଥିଲା ମାନସୀଙ୍କର । ଫେରିପଡ଼ି ବାଁପଟକୁ ଚାହିଁଲେ ମାନସୀ । ଲଗେଜ୍ କନ୍‌ଭେୟର୍ ବେଲ୍‌ଟ ପାଖରେ ଠିଆହୋଇଛନ୍ତି ପ୍ରଭା ଓ ତାଙ୍କ ପୁଅ– ଏକୁଟିଆ ଦୁଇଜଣ– ଆଉ କେହି ନାହାନ୍ତି ସେଠି, ସେମାନଙ୍କ ଜିନିଷଟିକୁ ଅପେକ୍ଷାକରି ।

''ମା', ସବୁ ଆସିଯାଇଛି, ଚାଲ ଯିବା ।''

ମାନସୀ ସେଇମିତି ସେ ମାଆ, ପୁଅଙ୍କୁ ଚାହିଁ ଠିଆହୋଇଛନ୍ତି । ସେମାନେ ମାନସୀଙ୍କୁ ପଛକରି ଭିତରେ ଛିଡ଼ାହୋଇଥିଲେ ।

''ମା' ? କ'ଣ ହେଲା ? କିଏ ଚିହ୍ନାଲୋକ ଅଛନ୍ତି କି ଆଉ ?''

'ଚାଲ ।' ଦୀର୍ଘନିଃଶ୍ୱାସ ପକାଇଲେ ମାନସୀ । ଏକ୍‌ଜିଟ୍‌ରେ ପହଞ୍ଚିବା ପୂର୍ବରୁ ଆଉ ଥରେ ପଛକୁ ବୁଲିପଡ଼ି ଚାହିଁଲେ ମାନସୀ । ଦୂରରେ ମାଆ, ପୁଅ ସେଇମିତି ଛିଡ଼ା ହୋଇଛନ୍ତି– ସେମାନଙ୍କର ଜିନିଷଟି ଆସିନାହିଁ ଆହୁରି !

କାର୍ ପଛ ସିଟ୍‌ରେ ଆଉଜିପଡ଼ି ଆଖି ବୁଜିଲେ ମାନସୀ । ଆଖି ବନ୍ଦକଲେହିଁ ସମୟ ଫେରିଯାଉଛି । ସେଇଠି ରହିଯାଉଛି– ଫିଜିକ୍‌ସ ଲ୍ୟାବ୍ ଆଗରେ ତିରିଶ ବର୍ଷ ତଳେ ଯେଉଁଠି ସେ ଆସିବା ଆଗରୁ ଅରୁଣ ଅପେକ୍ଷା କରୁଥିଲେ ।

ପ୍ରଥମ ଥର ପାଇଁ ସେ ଈର୍ଷା କରି ବସିଲେ ଆଉ ଜଣେ ନାରୀକୁ । ଜଣେ ଅତି ସାଧାରଣ ନାରୀକୁ, ତାଙ୍କର ମାଟିଆ ମଇଳା ବାପ୍ତା ଶାଢ଼ିର ଅଧିକାର ଓ ଶିରାଳ

ହାତର ନିରାଭରଣତାର ଅହଂକୁ– ଏତେବଡ଼ ଏୟାର୍‌ପୋର୍ଟରେ ହଠାତ୍ କାନ୍ଦିପକାଇ ପାରିବାର ସହଜତାକୁ ।

ଲୁହ ଦୁଇଧାର ବୋଧହୁଏ ବହିଆସିଥିଲା ଆଖିରୁ ତାଙ୍କର ।

‘‘କ’ଣ ହେଲା ମାଆ ? କଷ୍ଟ ଲାଗୁଛି କି ?’’

‘‘ନାଇଁ ମା’, କିଛି ନାହିଁ ।’’

‘‘ତୁ ଜାଣିନୁ କି ? ଅତି ଖୁସି ହେଲେ ତୋ ମାଆ ଆଖିରୁ ଲୁହ ବହୁଥାଏ ।’’ ଝିଅର ବାପା ମଜାଳିଆ ସ୍ୱରରେ କହିଲେ ।

‘‘ନାଇଁ ନାଇଁ ବାପା, କିଛି ହେଉଛି । ମା’ର ସେଇ ପୁରୁଣା ଛାତି ପେନ୍ କି ?’’ ଝିଅ ବ୍ୟସ୍ତହୋଇ ପଚାରୁଛି ।

‘‘ନାଇଁ ଏମିତି ଟିକିଏ ପୋଡୁଛି । ଠିକ୍ ହୋଇଯିବ ଯେ ।’’

‘‘ଜମା ନୁହେଁ । ଚାଲ, ଏମସ୍ ବାଟଦେଇ ଟିକିଏ ଦେଖାଇଦେଇ ଯିବା । ଡେରି ହେଲେ ମୁଁ ରହିଯିବି । ତୁ ପ୍ରକାଶ ଆଉ ଝିଅଙ୍କୁ ନେଇ ଗେଷ୍ଟ୍ ହାଉସ୍ ଚାଲିଯିବୁ ।’’ ସୁଧୀରଙ୍କ ବ୍ୟସ୍ତ ସ୍ୱର ଶୁଭିଲା ।

‘‘ବ୍ୟସ୍ତ ହୁଅନି ତୁମେମାନେ– କିଛି ହୋଇନି ମୋର । ଏମିତି ଖାଲି ଟିକିଏ– ଚାଲ ଗେଷ୍ଟ୍ ହାଉସ୍ ଚାଲ ।’’

‘‘କିନ୍ତୁ ମାଆ –’’

‘‘ନାଇଁ, ନାଇଁ, ସେ ଧୀରେ ଧୀରେ ଠିକ୍ ହୋଇଯିବ । କିଛି ନାଇଁମ ।’’ ଲୁହ ପୋଛି ହସିବାକୁ ଚେଷ୍ଟା କରୁଥିଲେ ମାନସୀ ।

ତା’ ବାପା କୋଳରୁ ଆଗ ସିଟ୍‌ରୁ ଉହୁଁକିପଡ଼ି ପଛକୁ ବୁଲି ଚାହିଁଥିଲା ତାଙ୍କୁ, ତାଙ୍କର ନାତୁଣୀ । ତା’ ବାପାଙ୍କୁ ହଲାଇ ହଲାଇ କହୁଥିଲା– ପାପା, ସି କ୍ରାଇଙ୍ଗ୍ !

□□□

# ଚନ୍ଦ୍ରଶିଳା

ଅନିବାର୍ଯ୍ୟ କାରଣବଶତଃ ଟ୍ରେନ୍ ଅନିର୍ଦ୍ଦିଷ୍ଟ କାଳପାଇଁ ବିଳମ୍ବିତ !

ସାମାନ୍ୟ ଶୀତ ଶୀତ ଲାଗୁଥିଲା । ବାହାରେ ବୋଧହୁଏ ଅଳ୍ପ କୁହୁଡ଼ି । ପ୍ରାୟ ସ୍ୱଚ୍ଛ ଜହ୍ନ ଆକାଶରେ ତା'ର ସ୍ନିଗ୍ଧ, ମୁଗ୍ଧକର ଜ୍ୟୋତ୍ସ୍ନା । ହସିଦେଲେ ସିକତା – ସମସ୍ତ ଶରୀର ସହଜ ଓ ସରଳ ହୋଇଆସିଲା ତାଙ୍କର । ଆଜି – ପୂର୍ଣ୍ଣମୀ – ଜହ୍ନରାତି ! ହଠାତ୍ ଟିକିଏ ଡର ଲାଗିଲା ତାଙ୍କୁ । ମାଡ଼ିପଡ଼ିଲାପରି ଲାଗିଲା ଜହ୍ନରାତିର ଯାଦୁକରୀ । ରାତି ସାଢ଼େ ଆଠଟା ହେବ । କ'ଣ କରିବେ ଏବେ ସିଏ ? ଚାରିଘଣ୍ଟାର ବାଟ ଘରକୁ ତ ଫେରିହେବ ନାହିଁ, ରାସ୍ତା ବିପଦମୁକ୍ତ ନୁହେଁ । କିଏ ଜାଣିଥିଲା ଟ୍ରେନ୍ ଏମିତି ଲେଟ୍ ହେବ ବୋଲି ? ଆଗରୁ ଟିକିଏ ବୁଝାବୁଝିକରି ଆସିଥିଲେ ଭଲହୋଇଥା'ନ୍ତା । ଶଙ୍କର ଠିକ୍‌କରିଥିବା ଏଇ ହୋଟେଲ୍‌ରେ ରହିଯିବାଟା ଠିକ୍ ହେବ କି ନାହିଁ ? ଅମର ବି ଘରେ ନାହାନ୍ତି, ପଚାରିଦେଇ ହେବ ନାହିଁ – ସିକତା ଟିକିଏ ଦ୍ୱନ୍ଦ୍ୱରେ ପଡ଼ିଗଲେ ।

''ମ୍ୟାଡାମ୍, ସଫାସୁତୁରା ଜାଗା । ମୁଁ ନିଜେ ଦେଖି ଆସିଛି । ଅନ୍ୟମାନେ, ଯାହାଙ୍କର ଏଇ ଟ୍ରେନ୍‌ରେ ଯିବାର ଥିଲା, କେତେଜଣ ରହୁଛନ୍ତି ସେଇଠି । ଆଜି ରାତିଟା, ଭାରି ଭିଡ଼ ହେବାକୁ ଯାଉଥିଲା । ମୁଁ କୌଣସିମତେ ଗୋଟିଏ ରୁମ୍ ରିଜର୍ଭ କରିପାରିଲେ ମଧ୍ୟ ମ୍ୟାନେଜର୍ ଘଣ୍ଟାଟିଏ ଅପେକ୍ଷା କରିବ ବୋଲି କହିଛି ।'' କାର୍‌ର ଆଗସିଟ୍‌ରୁ, ତାଙ୍କର ଏଇ ଗସ୍ତର ସମସ୍ତ ଦାୟିତ୍ୱ ନେଇଥିବା ଶଙ୍କର ବ୍ୟସ୍ତହୋଇ କହିଚାଲିଥିଲା ।

ସହରର ଫାଙ୍କା ସଫା ରାସ୍ତାରେ ତାଙ୍କ କାର୍‌ଟି ଗଡ଼ି ଚାଲିଥିଲା । ଏଇ ସହରତଳି ଅଞ୍ଚଳ କହିଲେ ଚଳେ । ଦୁଇପଟର ଧାନ କିଆରିରେ ପୂର୍ଣ୍ଣମୀ ଜହ୍ନର ରୁପେଲି ଆଭା, ନିଃଶବ୍ଦରେ ଗଡ଼ିଯାଉଥିବା କାର୍, ପ୍ରାୟ ସ୍ତବ୍ଧ ରାସ୍ତାଘାଟ ଓ ତା' ସାଙ୍ଗକୁ ସାମାନ୍ୟ ଶୀତ କେମିତି ରୋମାଞ୍ଚକର ଲାଗୁଥିଲା ତାଙ୍କୁ । ଏମିତି ଅବସ୍ଥାରେ ନିଜେ ନିଜେ ହୋଟେଲ୍ ଖୋଜି ସେ ଯେ ଗୋଟିଏ ରାତି ରହିବେ ଏମିତି କେବେ ବି ଥରେହେଲେ ଘଟିନାହିଁ ତାଙ୍କ ଜୀବନରେ । ଅନନୁଭୂତ ଘଟଣାଟିଏ ହେବ କିନ୍ତୁ । ସ୍ମିତହସ ଖେଳିଗଲା ମୁହଁରେ ତାଙ୍କର । ପରମୁହୂର୍ତ୍ତରେ ଲାଗିଲା କେଜାଣି କ'ଣ ହେବ– ଠିକ୍ ହେବ କି ନାହିଁ । କ'ଣ ଯଦି ଅସୁବିଧା ହେଲା ପୁଣି.....

ଏତକ ମନରୁ କାଢ଼ିବାପାଇଁ ସେ ଶଙ୍କର ସହ କଥା ଆରମ୍ଭ କଲେ–''ତୁମେ କୋଉଠି ରହିବ ଶଙ୍କର ? ଆଉ ଡ୍ରାଇଭର୍ ?''

"ମ୍ୟାଡାମ୍, ମୁଁ ହୋଟେଲ୍‌ର ଲବିରେ ଶୋଇଯିବି । ପଚାଶ ଟଙ୍କା ଦେଇଦେଲେ ଚଳିଯିବ— ପ୍ରଦୀପ ଗାଡ଼ି ଭିତରେ । ଗୋଟିଏ ରାତି କଥା ତ— ସକାଳ ଦଶଟା ସୁଦ୍ଧା ଟ୍ରେନ୍ ଆସିବାର ସମ୍ଭାବନା ଅଛି ।

"କେମିତି ? ଘୋଷଣା ତ ହେଉଥିଲା ଅନିର୍ଦ୍ଦିଷ୍ଟ କାଳପାଇଁ ଲେଟ୍ ।"

"ହଁ ମ୍ୟାଡାମ୍ । ମୁଁ କିନ୍ତୁ ଭିତରେ ଯାଇ ବୁଝିକି ଆସିଥିଲି । ରେଲ୍‌ୱେ ଟ୍ରାକ୍‌ରେ କୋଉଠି ମାଲ୍‌ଗାଡ଼ିଟେ ଓଲଟି ପଡ଼ିଛି । ସେଇଟା କ୍ରେନ୍‌ରେ ଉଠାଇ ଦିଆଗଲା ପରେ ଏଇ ଟ୍ରେନ୍ ଆସିବ । ଦୁଇଟା ଷ୍ଟେସନ୍ ପଛରେ ଅଟକିଛି । ସକାଳ ଦଶଟାରୁ ଡେରି ହେବନାହିଁ । ମୁଁ ପୁଣି ସକାଳୁ ଯାଇ ବୁଝିଆସିବି ।"

ଭାରି ଭଲ ପିଲାଟି ଶଙ୍କର । ସ୍ନେହରେ କୋମଳ ହୋଇଆସିଲା ସିକତାଙ୍କ ମୁହଁ । ତିନି ମାସ ହେଲା ଜଏନ୍ କରିଛି— ଅମରଙ୍କ ନୂଆ ସେକ୍ରେଟାରୀ । କିନ୍ତୁ ସିକତାଙ୍କ ଭଲମନ୍ଦ ବୁଝିବାରେ ସଦାବେଳେ ଆଗଭର । ପ୍ରକୃତରେ ସେ ଆଜ ଥାଉ ସିକତାଙ୍କର ଏତେଟା ବ୍ୟସ୍ତହେବା କଥା ନୁହେଁ । ବରଂ ଏଇ ସଂପୂର୍ଣ୍ଣ ନୂଆ ଅନୁଭୂତି ଟିକକକୁ ପୂର୍ଣ୍ଣଭାବରେ ଆପଣେଇ ନେବାକୁ ପ୍ରସ୍ତୁତ ହେଲେ ସେ ।

ହୋଟେଲ୍ ରୁମ୍ ତାଙ୍କ ପ୍ରତ୍ୟାଶାଠାରୁ ଉନ୍ନତ ଥିଲା । ଚଳିଯିବ ଏଥିରେ, ଭାବିଲେ ସିକତା – ସତରେ ରାତିଟିଏ କଥା ତ । ଅନ୍ତତଃ ସଫା ଅଛି ଓ ସବୁଠାରୁ ଭଲକଥା ଯେ ଛୋଟ ବାଲ୍‌କନିଟିଏ ଅଛି, ଯେଉଁଠି ଚେଆର୍ ପକାଇ ବସି ପୂର୍ଣ୍ଣମୀ ଆକାଶକୁ ଚାହିଁ ହେବ ।

"ଆପଣ ଫ୍ରେସ୍ ହୁଅନ୍ତୁ ମ୍ୟାଡାମ୍, ମୁଁ ଚା' ମଗାଇଦେଉଛି ।" କହି ଶଙ୍କର ଆସ୍ତେ କବାଟଟି ଆଉଜାଇ ଚାଲିଗଲା ।

ମନ୍ଦ ନୁହେଁ – ଏମିତି ରାତିଟିଏ କେବଳ ଏକା ଏକା, ନିଜପାଇଁ । ଏମିତି ବି ଘରେ ଆଉ କିଏ ଥିଲେ କି ? ଅମର ତ ସିଂଗାପୁରରେ— ଫେରିବାକୁ ଦୁଇ ତିନି ଦିନ ଲାଗିବ – ହୁଏତ ଫୋନ୍ କରି କହି ମଧ୍ୟ ପାରନ୍ତି ଯେ ଆହୁରି ଅଧିକ ଚାରିଦିନ ରହିବାକୁ ପଡୁଛି ଓ ସେ ଅତି ବ୍ୟସ୍ତ କାମନେଇ— ଏକଥା ମଧ୍ୟ କହିବେ ଯେ ବ୍ୟାଙ୍କ୍‌କୁ ଫୋନ୍ କରିଦେଇଛନ୍ତି ଓ ପର୍ସନାଲ୍ ଆକାଉଣ୍ଟ୍‌ରୁ ସେମାନଙ୍କର ଜଏଣ୍ଟ୍ ଆକାଉଣ୍ଟ୍‌କୁ ଟଙ୍କା ଟ୍ରାନ୍ସଫର୍ ହୋଇଯିବ । ସିକତାଙ୍କର ଚିନ୍ତା କରିବାର କିଛି ନାହିଁ ।

ଝରକାରୁ ପର୍ଦ୍ଦା ଆଡ଼େଇଦେଲେ ସିକତା । ତିନି ମହଲା ଉପରର ରୁମ୍‌ଟି – ତେଣୁ ଚନ୍ଦ୍ରାଲୋକରେ ଆଲୋକିତ । ଶାଢ଼ି ବଦଳେଇବେ କି ନାହିଁ ଭାବୁ ଭାବୁ କବାଟରେ ଶବ୍ଦଟିଏ ହେଲା । ବୋଧହୁଏ ଶଙ୍କର ବା ଚା' ନେଇ ୱେଟର୍ । ଆସିବାକୁ କହିଲେ ସିକତା । "ତୁମେମାନେ ଖାଇଦେଇ ଶୋଇପଡ଼ । ଚଞ୍ଚଳ ଉଠିବାକୁ ପଡ଼ିବ । ମୁଁ କିଛି ଖାଇବି ନାହିଁ ଭାବୁଛି ।" ଶଙ୍କରକୁ କହିଲେ ସେ ।

''ଅଳ୍ପଟିକେ କିଛି ଖାଇଦିଅନ୍ତୁ । ଦିନସାରା ତ ସେମିତି ଗଲା । କାଲି କେତେବେଳେ କ'ଣ ହେବ କେଜାଣି ! ଟିକେ କିଛି ମଗାଇ ଦିଅନ୍ତି, ମ୍ୟାଡାମ୍ ।'' ଅତି ବିନୀତ ଭାବରେ କହିଲା ଶଙ୍କର ।

''ଭେଜିଟେବୁଲ୍ ସ୍ୱିଟ୍ କର୍ଣ୍ଣ ସୁପ୍ ଆଉ ଭେଜ୍ ନୁଡୁଲ୍ସ – ସେତିକି ହେଉ ତେବେ ।''

ସିକତାଙ୍କ କଥା ନ ସରୁଣୁ ରୁମ୍ ଭିତରୁ ଅପସରିଗଲା ଶଙ୍କର; କିନ୍ତୁ ଦୁଇ ତିନି ମିନିଟ୍‌ରେ ଫେରିଆସିଲା ।

''ମ୍ୟାଡାମ୍, ଏଠି ରୁମ୍ ସର୍ଭିସ୍ ନାହିଁ । ତଳକୁ ଯିବାକୁ ପଡ଼ିବ । ଖାଲି ପନ୍ଦର ମିନିଟ୍ ପାଇଁ – ଡାଇନିଂ ହଲ୍ ଫାଷ୍ଟ୍ ଫ୍ଲୋର୍‌ରେ'' ..... ନିରାଶ ସ୍ୱରରେ କହିଲା ଶଙ୍କର ।

''ହଉ ତୁମେ ଚାଲ, ମୁଁ ଆସୁଛି ।''

ସିକତା ଚା' ପିଇନେଲେ । ବେସିନ୍ ପାଖକୁ ଯାଇ ମୁହଁ ଥଣ୍ଡାପାଣିରେ ଧୋଇଦେଲେ ଓ ପାନିଆରେ ବାଳ ଉପରୁ ଉପରୁ ସାଉଁଳେଇ ଦେଲେ । ହୋଟେଲ୍ ଭିତରେ ଏତେ ଶୀତ ନାହିଁ– ଚଦରଟି ରଖି ସ୍ଲିପର୍ ଗଳାଇ ବାହାରିଗଲେ ସେ ।

ଲମ୍ବାଳିଆ ଡାଇନିଂ ହଲ୍ – ଘର ମଝିରେ ଆୟତାକାର ଭାବରେ ଟେବୁଲ୍‌କୁ ଟେବୁଲ୍ ଯୋଡ଼ା ହୋଇ ଲମ୍ବା ଡାଇନିଂ ସ୍ପେଶ୍ ତିଆରି ହୋଇଛି – ଏକାସାଂଗରେ ଯେମିତି ଚବିଶ ଜଣ ଯାଏଁ ଖାଇପାରିବେ । ଗୋଟିଏ ପଟରେ ପାଞ୍ଚ ଛଅଟା ଚେଆର୍ ଖାଲି– ଆଉ ପ୍ରାୟ ସମସ୍ତେ ବସିଯାଇଛନ୍ତି । ସିକତା ଚେଆର୍ ଟାଣିଆଣି ବସିଗଲେ । ବସିବା ମାତ୍ରେ ୱେଟର୍ ଆସି ଅର୍ଡର୍ ନେଇଗଲା ।

ସେ କିଛି ଜାଣିବା ଆଗରୁ ଗରମ ତରଳ ଜିନିଷ କିଛି ତାଙ୍କ କୋଳରେ ପଡ଼ିଲା ପରି ଲାଗିଲା ତାଙ୍କୁ ଓ ସେ ଅସ୍ତବ୍ୟସ୍ତ ହୋଇ ଉଠିପଡ଼ିଲେ ।

''ସରି ମ୍ୟାଡାମ୍, ସରି । ଆଇ ଆମ୍ ଭେରି ସରି । ଓଃ ! କେମିତି ପଡ଼ିଗଲା ଏମିତି ! ଗରମ ତ ହେଇଥିବ ବହୁତ– ଶାଢ଼ିଟା ବି ନଷ୍ଟ ହେଇଗଲା ।''

କେହି ଜଣେ ପାଖରୁ ଅସ୍ତବ୍ୟସ୍ତ ହୋଇ କହିଚାଲିଲେ ।

ଏଇ ଲୋକଜଣକ ବସିବାପାଇଁ ଚେଆର୍ ଟାଣିଆଣି ବୁଲିପଡ଼ିଲା ବେଳକୁ ସିକତାଙ୍କ ଖାଇବା ଟ୍ରେ ଆଣି ଆସୁଥିବା ୱେଟର୍ ସହ ମୁହାଁମୁହିଁ ହୋଇଯାଇଥିଲେ । ସିକତାଙ୍କ ମୁଣ୍ଡଉପର ଦେଇ ଟେବୁଲ୍ ଉପରେ ରଖିବାକୁ ଯାଉଥିବା ଟ୍ରେରେ ବୋଧହୁଏ ଏହି ଲୋକ ଜଣଙ୍କର ହାତ ବାଜିଗଲା– ବୋଧହୁଏ ଜୋର୍‌ରେ ବାଜିଛି– ସୁପ୍ ଗିନାଟି ଟହଲି ଯାଇ ଢାଳିଗଲା ଓ ଗରମ ସୁପ୍ ଯାଇ ସିକତାଙ୍କ କୋଳରେ ପଡ଼ିଲା ।

ବିରକ୍ତ ହୋଇଗଲା ସିକତାଙ୍କ ମନ– ମୁହଁରେ ସେଇ ବିରକ୍ତି ପ୍ରତିଫଳିତ ହେଲା ବୋଧହୁଏ– ସେଇ ଅସ୍ତବ୍ୟସ୍ତ କୈଫିୟତ୍‌ର କୌଣସି ସୌଜନ୍ୟମୂଳକ ଉତ୍ତର ଦେଲେ

ନାହିଁ ସେ । ବରଂ ଠିଆହୋଇପଡ଼ି ଉପରକୁ ଯାଇ ଶାଢ଼ିଟି ଧୋଇ ବା ବଦଳାଇ ଦେବାକୁ ପଡ଼ିବ ବୋଲି ଭାବୁଥିଲେ ସେ ।

''ଆଇ ଆମ୍ ରିଏଲି ଭେରି ସରି । ଟିକିଏ ଅସାବଧାନତାରୁ କେମିତି ଯେ ପଡ଼ିଗଲା । ଆପଣଙ୍କୁ ଏମିତି ହଇରାଣ କଲି ।'' ଆହୁରି ବ୍ୟଗ୍ର, ଦୋଷୀ ଦୋଷୀ ସ୍ୱର ଶୁଭିଲା ସେଇ ଲୋକ ଜଣଙ୍କର ।

ଏଥର ମୁହଁ ବୁଲାଇ ତାଙ୍କଆଡ଼କୁ ଚାହିଁଲେ ସିକତା । ଓଠରେ ଜୋର୍ ଜବରଦସ୍ତି ହସଟାଏ ଖେଳାଇ କହିଲେ, ''ଇଟ୍ ଇଜ୍ ଓକେ । ଅଜାଣତରେ ତ ହୋଇଗଲା । ମୋତେ ବୋଧେ ଶାଢ଼ି ବଦଳାଇ ଆସିବାକୁ ପଡ଼ିବ ।''

''ହଁ, ଶାଢ଼ିଟା ବି ନଷ୍ଟହୋଇଗଲା । ଆପଣ କୋଉ ଫ୍ଲୋର୍‌ରେ ଅଛନ୍ତି ? ଚାଲନ୍ତୁ ମୁଁ ଛାଡ଼ିଦେଇ ଆସୁଛି ।''

''ନାଇଁ, ନାଇଁ, ଆପଣ ଖାଆନ୍ତୁ – ମୁଁ ଚାଲିଯିବି ଯେ ।'' ସିକତା ଉତ୍ତର ଦେଲେ ।

''ଆପଣ ବି ତ ଖାଇବେ । ଆସିଲାବେଳକୁ ଡେରିହୋଇଯିବ ୱେଟର୍‌କୁ କହିଦେଲେ ସେ ଖାଇବାଟା ଉପରକୁ ନେଇଯିବ । ଚାଲନ୍ତୁ ।''

ସିକତା ଡାଇନିଂ ରୁମ୍ ସାରା ଦେଖିନେଲେ । ଶଙ୍କର ଦିଶୁ ନାହିଁ । ବୋଧହୁଏ ଖାଇବାକୁ ଚାଲିଯାଇଛି । କିଏ ନାଇଁ କିଏ– ତାଙ୍କ ସହ କାହିଁକି ରୁମ୍‌କୁ ଯିବେ ? ଏକୁଟିଆ କ'ଣ ଏତିକି ଉଠି ଚାଲିଯାଇ ପାରିବେ ନାହିଁ ? ମନେ ମନେ ଟିକିଏ କୁଣ୍ଠିତ ହେଲେ ସିକତା ।

''ମୁଁ ଶ୍ରୀମନ୍ତ ଦାସ । ଇଫ୍ ଆଇ ଆମ୍ କରେକ୍ଟ – ଆପଣ ମିସେସ୍ ମିଶ୍ର – ମିସେସ୍ ଅମର ମିଶ୍ର ।'' ଲୋକଜଣକ କହିଲେ ।

ଏଥର ପ୍ରକୃତରେ ଟିକିଏ ହସିଲେ ସିକତା ଓ ସିଧାସଳଖ ସେଇ ଲୋକଜଣକ ମୁହଁକୁ ଚାହିଁଲେ । ସମ୍ମତିସୂଚକ ମୁଣ୍ଡହଲେଇଲେ ଟିକିଏ ଓ ଆଶ୍ଚର୍ଯ୍ୟ ମଧ ହେଲେ ଟିକିଏ, ''ହଁ, ଆପଣ କେମିତି ଚିହ୍ନିଲେ ମୋତେ ?''

''ପ୍ରାୟ ବାର ତେର ବର୍ଷ ତଳେ : ୮୬-୮୭ ମସିହା ଆଡ଼କୁ ଆପଣମାନେ ଗୋଟେ ବଡ଼ ଦୁଇ ମହଲା ଘରେ ରହୁଥିଲେ, ପାଖରେ ଗୋଟିଏ ଛୋଟ ପାର୍କ ଥିଲା.....''

''ହଁ, ହଁ, ଆମ ନିଜ ଘର ତିଆରି ଚାଲିଥିଲା ତ ସେତେବେଳେ..... ଆଉ ଆପଣ''......

''ସେଇ ପାର୍କ ଆରପଟେ କେତେଗୁଡ଼ିଏ ପ୍ରାଇଭେଟ୍ ଘର ଥିଲା, ତା'ପରେ ସରକାରୀ କ୍ୱାର୍ଟର୍‌ଗୁଡ଼ା ଆରମ୍ଭ ହୋଇଯାଇଥିଲା.....'' ସେମାନେ ଏଥର ସିଡ଼ିର ପାହାଚ ଚଢ଼ିବାକୁ ଆରମ୍ଭ କରିଥିଲେ.... । ''ସେଇ ପ୍ରାଇଭେଟ୍ ଘର ମଧ୍ୟରୁ ଗୋଟିକରେ ମୁଁ ଭଡ଼ାରେ ରହୁଥିଲି । ଏବେ ପାଞ୍ଚ ବର୍ଷ ହେବ ଘର ବଦଳାଇଲି ।'' ଶ୍ରୀମନ୍ତ ନାମକ ଲୋକଜଣକ ସିକତାଙ୍କ ସହ ପାହାଚ ଉଠୁ ଉଠୁ କହୁଥିଲେ ।

''ଆମେ ପ୍ରାୟ ସତାଅଶୀ ମସିହା ଶେଷଆଡ଼କୁ ସେଇ ଘର ଛାଡ଼ି ଦେଇଥିଲୁ....'' ପୁରୁଣା କଥା କିଛି ମନେପକାଇବା ପରି ଆଗ୍ରହରେ କହିପକାଇଲେ ସିକତା ଓ ସେମାନେ ଏକାଠି ସିଡ଼ି ଉଠିବାରେ ଲାଗିଥିଲେ ।

''ହଁ, ଆପଣମାନେ ତା'ପରେ କୁଆଡ଼େ ଗଲେ ମୁଁ ଜାଣିପାରିଲିନି । ପ୍ରାୟ ପ୍ରତିଦିନ ମୁଁ ଆପଣଙ୍କ ଘର ଆଗଦେଇ ଯାଉଥିଲି – ସେତେବେଳେ ମୁଁ ନୂଆ ନୂଆ ବ୍ୟବସାୟ ଆରମ୍ଭ କରିଥିଲି । ପାର୍କ ପାଖରୁ ପ୍ରାୟ ଗୋଟେ କିଲୋମିଟର ହେବ ମୋର ଶୋ'ରୁମ୍ ଥିଲା ।''

ସିକତା ଓ ଶ୍ରୀମନ୍ତ – ସିକତାଙ୍କ ରୁମ୍ ସାମନାରେ ପହଞ୍ଚିଯାଇଥିଲେ । ସିକତା ତାଙ୍କର ଛୋଟ ପର୍ସ ଖୋଲି ତା' ଭିତରୁ ରୁମ୍ ଚାବି କାଢ଼ିଲେ ଓ କବାଟରେ ଖୋଲିବା ପାଇଁ ଗଳାଇଲେ ।

ଶ୍ରୀମନ୍ତଙ୍କ କଥାର ସ୍ରୋତ କେମିତି ବନ୍ଦହୋଇଯାଇଥିଲା । ସିକତା ଟିକିଏ କାନଡେରିଲେ । ଶ୍ରୀମନ୍ତ ପୁଣି କଥା ଆରମ୍ଭ କଲେ – ଏଥର ତାଙ୍କ ସ୍ୱର ଦବିଯାଇଥିବା ପରି ଲାଗୁଥିଲା ଓ ପୂର୍ବ କଥାର ସ୍ରୋତ ଧିମେଇ ଯାଇଥିଲା – ''ଆପଣଙ୍କ ସେଇ ଆକ୍ସିଡେଣ୍ଟ ବେଳେ – ଠିକ୍ ସେତିକିବେଳେ ମୁଁ ମୋ ଫିଆଟ୍‌କାର୍‌ରେ ଆପଣଙ୍କ ଘର ଆଗଦେଇ ଯାଉଥିଲି''.....

ଚାବି ମୋଡ଼ିବାକୁ ଉଦ୍ୟତ ହାତଟି ସେଇଠି ରହିଗଲା ସିକତାଙ୍କର – ଧୀର ଭାବରେ ମୁହଁ ଉଠେଇ ସେ ଶ୍ରୀମନ୍ତଙ୍କୁ ଚାହିଁଲେ । ହଠାତ୍ ଅଦ୍ଭୁତ ଓ ଅସୁବିଧା ଲାଗିଲା ସିକତାଙ୍କୁ ।

ମୁହୂର୍ତ୍ତେ ଚୁପ୍ ରହିଯାଇଥିଲେ ଶ୍ରୀମନ୍ତ । ''ଆପଣଙ୍କ ଚାକରାଣୀ ଏମିତି ଭାବରେ ଗେଟ୍ ଖୋଲି ପାଟି କରି କରି ମୋ ଗାଡ଼ି ସାମନାକୁ ଦଉଡ଼ି ଆସିଲା ଯେ, ଏକଦମ୍ ସଡନ୍ ବ୍ରେକ୍ ଦେବାରୁ ମୋ ଗାଡ଼ି ଠିକ୍ ତା'କୁ ଲାଗିକରି ଅଟକିଗଲା । ହାତ ହଲାଇ ଉତ୍ତେଜନାରେ ସେ କ'ଣ କ'ଣ କହିଚାଲିଥିଲା । ମୁଁ ତେଣୁ ଗାଡ଼ି ଡୋର୍ ଖୋଲି ବାହାରକୁ ବାହାରିଲି । ସେ ଏକପ୍ରକାର ମୋ ହାତଧରି ଟାଣି ଟାଣି ନେଇଗଲା – ଏକଦମ୍ ଆପଣଙ୍କ ଘରର ଉପର ମହଲାକୁ'' ..... ଶ୍ରୀମନ୍ତଙ୍କ ସ୍ୱର ଆହୁରି ଧୀର ଶୁଭୁଥିଲା, ''ଆପଣଙ୍କ ବେଡରୁମ୍‌କୁ .....ଆପଣ........'' ଶବ୍ଦ ଗୋଟି ଗୋଟି ଉଚ୍ଚାରଣ କରିବାପରି ଏତକ ଅତି ଧୀରଭାବରେ କହୁଥିଲେ ଶ୍ରୀମନ୍ତ । ଶ୍ରୀମନ୍ତଙ୍କ ଦୃଷ୍ଟିସହ ଆଖି ମିଳିଗଲା ସିକତାଙ୍କର । କିଛି ଯେମିତି ବିଚିତ୍ର ସେ ଖୋଜୁଥିଲେ ବା ଦେଖୁଥିଲେ ଶ୍ରୀମନ୍ତଙ୍କ ଚାହାଣିରେ । ସେଇ ଅଦ୍ଭୁତ, ଅସହଜ ଅବସ୍ଥା ଧୀରେ ଧୀରେ ଯେମିତି ଆଚ୍ଛନ୍ନ କରି ପକାଉଥିଲା ସିକତାଙ୍କୁ, ପାଦଆଡୁ ଚରିଆସୁଥିଲା ଉପରକୁ–ଦେହକୁ, ସମସ୍ତ ଅଂଗ-ପ୍ରତ୍ୟଙ୍ଗକୁ । ସମ୍ମୋହିତ ହେଲାପରି ସିକତା ଚାହିଁଥିଲେ ଶ୍ରୀମନ୍ତଙ୍କୁ । ସେଇ ହୋଟେଲ୍, ଜବରଦସ୍ତି କଟାଇବାକୁ ବାକିଥିବା ରାତି, ସୁପ୍ ପଡ଼ିଯାଇଥିବା ଶାଢ଼ି, ଚାବି ସହ ରୁମ୍ କବାଟରେ ଲାଗିଥିବା ତାଙ୍କ ଡାହାଣ ହାତ–ସବୁଠାରୁ ସେ ବିଚ୍ଛିନ୍ନ ହୋଇ ଯାଉଥିଲେ ଯେମିତି..... ।

ଚୁପ୍ ହୋଇଯାଇଥିଲେ ଶ୍ରୀମନ୍ତ । ସିକତାଙ୍କ ବିହ୍ୱଳ ଅବସ୍ଥା ବୋଧହୁଏ ସାମାନ୍ୟ ବୁଝିପାରୁଥିଲେ ସେ । ଏମିତି ଗୋଟିଏ କଥା ମନେପକାଇ ଦେଇଥିବାରୁ ତାଙ୍କୁ ମଧ୍ୟ ଅସହଜ ଲାଗୁଥିଲା ।

''ଆପଣଙ୍କୁ ହସ୍‌ପିଟାଲ୍‌ରେ ଆଡମିଟ୍ କରିବା ପରେ ପରେହିଁ ଅମରବାବୁ ଆସି ପହଞ୍ଚିଥିଲେ ଓ ସେତେବେଳେ ମୋତେ କୁଣ୍ଢାଇଧରି କାନ୍ଦିଥିଲେ – ମୋର ମନେଅଛି ।'' ସାମାନ୍ୟ ହସି ପୂର୍ବ ସ୍ୱରରେ କହିବାକୁ ଆରମ୍ଭ କଲେ ଶ୍ରୀମନ୍ତ । କଥା ତାଙ୍କର କିନ୍ତୁ ବେତାଳିଆ ଶୁଭୁଥିଲା ।

''ତା'ପରେ ଅମରବାବୁଙ୍କ ସହ ବହୁତଥର ଦେଖାହୋଇଛି । କିନ୍ତୁ ଆପଣଙ୍କ ସହ ଆଉ ଦେଖା ହୋଇ ନ ଥିଲା ......'' କଥାର ଖିଅ ଧରିବାକୁ ଚେଷ୍ଟା କରୁଥିଲେ ଶ୍ରୀମନ୍ତ । ସିକତା କିନ୍ତୁ ସେଇମିତି ତାଙ୍କ ମୁହଁକୁ ଚାହିଁ ଠିଆହୋଇଥିଲେ । ତାଙ୍କୁ ଦେଖୁଥିଲେ କି ନାହିଁ, ସେଇଭଳି ଅସହଜ ଅବସ୍ଥାରେ କିନ୍ତୁ ଥିଲେ ।

''ଆପଣ ରିଲାକ୍ସ କରନ୍ତୁ, ମୁଁ ୱେଟର୍ ହାତରେ ଖାଇବା ପଠାଇ ଦେଉଛି । ଆଚ୍ଛା, ଗୁଡନାଇଟ୍ । ସକାଳେ ଦେଖାହେବ ।'' ଶ୍ରୀମନ୍ତ ତାଙ୍କ ଉତ୍ତରକୁ ଅପେକ୍ଷା ନ କରି ତଳକୁ ଓହ୍ଲାଇବାକୁ ଆରମ୍ଭ କଲେ ।

ରୁମ୍ ଭିତରେ ଶାଢ଼ି ନ ବଦଳାଇ ଖଟରେ ଗଡ଼ିପଡ଼ିଲେ ସିକତା । ଏଇ ତା'ହେଲେ ସେଇ ଲୋକ – ଯିଏ ତାଙ୍କୁ ଉଠେଇନେଇ ସେଦିନ ହସ୍‌ପିଟାଲରେ ଆଡମିଟ୍ କରିଥିଲେ । ସେଇ ସାଙ୍ଗେ ସାଙ୍ଗେ ଆଡମିଶନ୍ ହୋଇନଥିଲେ ସେ ହୁଏତ ବଞ୍ଚି ନ ଥା'ନ୍ତେ । ସେଇ ସମୟଠାରୁ ବାର ତେର ବର୍ଷ ଭିତରେ କେତେବେଳେ କେମିତି ଏଇ କଥାଟି ବିଜୁଳିପରି ଚମକି ଯାଇଛି ତାଙ୍କ ମନରେ – ଅନେକ ସମୟରେ କୃତଜ୍ଞତା ଆସିଛି ତାଙ୍କ ଜୀବନଦାତାଙ୍କ ପ୍ରତି । ସେଇ ଅଚିହ୍ନା ଅଜଣା ଲୋକଟିର ମଙ୍ଗଳ ମନାସିଛନ୍ତି ସେ କେତେଥର । ପରିସ୍ଥିତି ବିଶେଷରେ ରାଗିଛନ୍ତି ମଧ୍ୟ କେବେ କେବେ – କ'ଣ ଦରକାର ଥିଲା ଏମିତି ଉପରେପଡ଼ି ସାହାଯ୍ୟ କରିବା ? ସିଏ ତାଙ୍କର ମରୁଥିଲେ ତ ମରୁଥିଲେ – ଭଲହୋଇଥା'ନ୍ତା ଠିକ୍‌ହିଁ ହୋଇଥା'ନ୍ତା ସେ ମରିଯାଇଥିଲେ.....

ୱେଟର୍ ଆସ୍ତେ କବାଟ ଠକ୍ ଠକ୍ କରି ଭିତରକୁ ଆସିଲା ଓ ତାଙ୍କୁ ନ ଚାହିଁ ଟେବୁଲ୍ ଉପରେ ଖାଇବା ଟ୍ରେ ରଖିଦେଇ ପ୍ରାୟ ନିଃଶବ୍ଦରେ ବାହାରିଗଲା । ସିକତା ସେମିତି ଖଟରେ ପଡ଼ିରହିଥିଲେ ।

ହଁ, ମରିଯାଇଥିଲେ ଭଲ ବୋଧହୁଏ ହୋଇଥା'ନ୍ତା । କେତେ ସ୍ଲିପିଂ ପିଲ୍ ସେଇରାତିରେ ସେ ଖାଇଥିଲେ କେଜାଣି । ଘରେ ତ କେହି ନ ଥିଲେ – ବବ୍‌ଲୁକୁ ପାଞ୍ଚବର୍ଷ ଓ ବଣ୍ଟିକୁ ତିନି । ଦୁଇଜଣଯାକଙ୍କୁ କେତେବେଳୁ ଶୁଆଇ ପକାଇଥିଲେ ସେ ।

ସେଇ ରାତି ବି ଏମିତି ପୂର୍ଣ୍ଣମୀ ଥିଲା ।

କି ପ୍ରକାର ନିଶ୍ଚିତତା ଘାରି ଦେଇଥିଲା ତାଙ୍କୁ ! କ'ଣ ଲାଗିଥିଲା ସତରେ ଯେତେବେଳେ ସେ ଭାବୁଥିଲେ କାଲି ସକାଳେ ଆଉ ଉଠିବେ ନାହିଁ, କାହାରିପାଇଁ ମଧ୍ୟ ଉଠିବେ ନାହିଁ ! କିନ୍ତୁ ପୁଣି ହସ୍‌ପିଟାଲ୍, ସାଲାଇନ୍, ଇଂଜେକ୍‌ସନ୍ ହୋଇ ଓ ତିନି ଦିନ ତିନି ରାତି ମୃତ୍ୟୁ ସହ ଲଢ଼ିବା ପରେ ସେ ଘରକୁ ଫେରିଆସିଥିଲେ ।

ବ୍ୟସ୍ତ, ବିରକ୍ତ, ବିବ୍ରତ ସ୍ୱର ଶୁଭୁଥିଲା ଅମରଙ୍କର; ''ଏମିତି ପାଗଳାମି କ'ଣ ବାହାରିଲା ତୁମର ? କ'ଣ ଅଭାବ ତୁମର ? ଭାବିବାକୁ ଲଜ୍ଜା ଲାଗୁଛି । କ'ଣ ଅଭାବ ସତରେ କହିଲ ? ମୋର ସମ୍ମାନ କଥା ଭାବିଲ ନାହିଁ ଥରେ – ବବ୍‌ଲୁ, ବଣ୍ଟିଙ୍କ କଥା ମଧ୍ୟ ନୁହେଁ ? କି ଆଶ୍ଚର୍ଯ୍ୟ !''

ମରି ନ ପାରିବାର ହତାଶା କି ବଞ୍ଚି ରହିବାର ସ୍ପୃହା କାହାର ପ୍ରଭାବ ତାଙ୍କୁ ଘାରୁଥିଲା କେଜାଣି ବହୁତ ଦିନ ଧରି ସେ ବାହାରକୁ ପ୍ରାୟ ବାହାରି ନ ଥିଲେ ।

''ଇଏ ଗୋଟାଏ ଢଙ୍ଗ । ବୁଝିଲ ତନୁଦିଦି – ଏମିତି କିଏ ମଲାଣି ? କ'ଣ ଭାରି ଗୋଟାଏ ହେଇଗଲା ଯେ – ଆଜିକାଲି ତ ସାଧାରଣ ହେଲାଣି ଏସବୁ । ଅମର ମିଶ୍ର କୁଆଡ଼େ ବାହାରେ କାହା କାହା ସାଂଗରେ ରହୁଥିଲା । ଆମର ଇଏ କହୁଥିଲେ ବର୍ଷେ ହେଲା ସବୁବେଳେ କଳି କରୁଥିଲା ସିକତା ତା' ସ୍ୱାମୀ ସହ''– ଏଇ କଣ୍ଠସ୍ୱର ଥିଲା ରୀନାଙ୍କର – ଅମରଙ୍କ ବିଜିନେସ୍ ପାର୍ଟନର୍ ଦିନେଶ ପାତ୍ରଙ୍କ ସ୍ତ୍ରୀ ।

''ପ୍ରକୃତରେ – କ'ଣ କାହାକୁ ଘରକୁ ଆଣିଲା ଅମର ମିଶ୍ର ନା କୋଉଠି ଆଉ କାହାଘରେ ଲାଖି ରହିଗଲା ଯେ ସିକତା ଏତକ କରିବାକୁ ଗଲା ! ବାହାରେ କିଏ କ'ଣ କଲା, ସେଥିରେ କ'ଣ ଯାଏ ଆସେ ? କ'ଣ ସିକତାର ଅଭାବ କରିଥିଲା ସିଏ ? ପୁଣି ଦୁଇ ଦୁଇଟା ଛୋଟପୁଅ, ଦେଖୁନ'' – ତନୁଦିଦି ବୋଧହୁଏ ଏମିତି ମତାମତ ଦେଇଥିଲେ ।

''ନାଇଁମ, ଇଏ ପ୍ରକୃତ ନୁହେଁ । ଇଏ ଗୋଟାଏ ଧମକ ଥିଲା । ଆତ୍ମହତ୍ୟା କରିବାର ଥିଲା ତ ବଞ୍ଚିଲା କେମିତି ?'' ..... ଇଏ କାହାସ୍ୱର ଥିଲା କେଜାଣି ? ବହୁତ ଦିନ ପରେ ପ୍ରଥମକରି ନିଜ ବାନ୍ଧବୀମାନଙ୍କ ଟି ପାର୍ଟିରେ ଯୋଗ ଦେବାକୁ ଯାଇ ଦୁଆରମୁହଁରେ ଅଟକି ଯାଇଥିଲେ ସିକତା । ସେମାନଙ୍କର ପ୍ରତିକ୍ରିୟା ସ୍ତମ୍ଭୀଭୂତ କରିଦେଇଥିଲା ତାଙ୍କୁ ।

ସତରେ, ଛୋଟ ବଡ଼ ପ୍ରମାଣମାନ ପାଇ ସେ ଗତ ଦେଢ଼ ଦୁଇବର୍ଷ ହେଲା ଅମରଙ୍କ ସହ ଯୁକ୍ତିତର୍କ କରିଆସୁଥିଲେ । ଅମର ପ୍ରାୟ ରାଗିଯାଉଥିଲେ, ବେଳେବେଳେ ଶାନ୍ତ ହୋଇ ଶୁଣୁଥିଲେ । ବେଳେବେଳେ ଖାତିର ନ କରି ଅନ୍ୟ କାମରେ ବ୍ୟସ୍ତ ରହୁଥିଲେ । ଅନେକଥର କହୁଥିଲେ – ''ଏମିତି ଜୀବନଧାରା ମୋର । ତୁମର ଇଚ୍ଛା ହେଉଛି ତ ରହ, ନ ହେଲେ ନାହିଁ ।''

ବ୍ୟାଗ୍ ଖୋଲି ଟାୱେଲ୍‌ଟି ବାହାରକଲେ ସିକତା । ଛୋଟିଆ ପକେଟ୍ ନୋଟ୍‌ବୁକ୍‌ଟି ଖସିପଡ଼ିଲା ସେଥିରୁ । କାଳେ ସେଇଟା ଭୁଲିଯିବେ ବୋଲି ଟାୱେଲ୍‌ରେ ଗୁଡ଼ାଇ ରଖିଦେଇଥିଲେ ସେ । ସେଥିରେ କ୍ରମାନ୍ୱୟରେ ଟିପିଛନ୍ତି ସାଧୁବାବାଙ୍କୁ କ'ଣ କ'ଣ ପଚାରିବେ । ଅମର ବାରମ୍ବାର କହିଛନ୍ତି, ତାଙ୍କର ତିନିଟାଯାକ କଣ୍ଟ୍ରାକ୍‌ଟର ଆଦ୍ୟ ଅକ୍ଷର ବି ଲେଖାଇଦେଇଛନ୍ତି ଓ ତାଗିଦ୍ କରିଦେଇଛନ୍ତି ଯେ ଏ ତିନୋଟିର ଭାଗ୍ୟ ଓ ପରିଣତି କ'ଣ ହେବ ପଚାରି ବୁଝିବାପାଇଁ ଯେମିତି ହେଲେ । ଏଇସବୁ ବ୍ୟବସାୟିକ କଥା ସାଧୁବାବାଙ୍କୁ ପଚାରିବାକୁ ଲାଜମାଡୁଥିଲା ସିକତାଙ୍କୁ । ସେ ଭାବୁଥିଲେ ନିଜ ପୁଅ ଦୁଇଜଣଙ୍କ କଥା ପଚାରିବାକୁ – ସେମାନଙ୍କର ଭବିତବ୍ୟ ଇତ୍ୟାଦି । ପ୍ରକୃତରେ କ'ଣ ସେ ପଚାରିବାକୁ ଚାହାନ୍ତି, ନିଜେ ମଧ୍ୟ ଠିକ୍ କରିପାରିନାହାନ୍ତି । ତଥାପି ନୋଟ୍‌ବୁକ୍‌ଟିକୁ ଯତ୍ନରେ ତା' ଜାଗାରେ ରଖିଦେଲେ ସିକତା । ଏତେ ପ୍ରତ୍ୟକ୍ଷ ଓ ପ୍ରଖ୍ୟାତ ସାଧୁବାବାଙ୍କୁ ଖାଲି ଦର୍ଶନ କରିବାକୁହିଁ ପ୍ରକୃତ ଇଛା ଥିଲା ତାଙ୍କର । ଆଜି ଟ୍ରେନ୍‌ର ପ୍ରତ୍ୟେକ ଯାତ୍ରୀ ବୋଧହୁଏ ତାଙ୍କରି ପାଖକୁ ଯାଉଛନ୍ତି । ଏଇଟା ସ୍ପେଶାଲ୍ ଟ୍ରେନ୍ ଚାଲୁଛି ବୋଲି ଶଙ୍କର କହୁଥିଲା । ବୋଧହୁଏ ଏଇ ଶ୍ରୀମନ୍ତ ମଧ୍ୟ ସାଧୁବାବାଙ୍କ ପାଖକୁ ଯାଉଛନ୍ତି । ଆଜି ଟ୍ରେନ୍ ଲେଟ୍ ହୋଇନଥିଲେ, କାଲି ସକାଳୁ ସକାଳୁ ସେ ଆଶ୍ରମ ପାଖ ଷ୍ଟେସନ୍‌ରେ ପହଞ୍ଚି ଯାଇଥା'ନ୍ତେ ।

ନିଦ ଆସୁନାହିଁ । ବାଲ୍‌କନି କବାଟ ଖୋଲି ବାହାରକୁ ଆସିଲେ ଓ ଚେଆରରେ ବସିପଡ଼ିଲେ ସେ । ଛୋଟିଆ ସହରଟିର କର୍ମବ୍ୟସ୍ତତା କେତେବେଳୁ ସରିଗଲାଣି । ନିସ୍ତବ୍ଧ ଲାଗୁଛି ଚାରିଆଡ଼ । ଘର, ଦୋକାନ, ଗଛପତ୍ର ସବୁ ଉପରେ କୁହୁଡ଼ିର ପ୍ରାୟ ଦିଶୁ ନଥିବା ପତଳା ଆସ୍ତରଣ – ପୂର୍ଣ୍ଣମୀ ଜହ୍ନ କିରଣରେ ଚକ୍‌ଚକ୍ କରୁଛି ତା' । ତୋଫା ଆକାଶ ଓ ଶୀତୁଳିଆ ଜହ୍ନ କିରଣରେ ଦୂରକୁ ବହୁଦୂରକୁ ଅନେକ ସମୟ ଧରି ଚାହିଁ ବସିଥିଲେ ସେ । ଧୀରେ ଆଖିପତା ଲାଗିଆସିଛି ବୋଧହୁଏ ତାଙ୍କର ।

ଚକ୍ ଚକ୍ ସଫା ଦେହ – ଝୋଟପରି ଲମ୍ବା ଧଳା କେଶ ଓ ଦାଢ଼ି, ଉଦାସ ଗମ୍ଭୀର ଦୃଷ୍ଟି – ଦେହରେ ଗେରୁଆ ରଙ୍ଗର ବସ୍ତ୍ର – ଏଇ ତ ସାଧୁବାବା ! ସତେ ଯେମିତି ସାକ୍ଷାତ ଜହ୍ନରୁ ଓହ୍ଲାଇ ଆସିଛନ୍ତି ! ସାଷ୍ଟାଙ୍ଗ ପ୍ରଣିପାତ କରିବାକୁ ତତ୍ପର ହେଲେ ସିକତା ।

ଆଶୀର୍ବାଦସୂଚକ ପାପୁଲି ଉତ୍ତୋଳନ କଲେ ସାଧୁବାବା – କି ଦୟାର୍ଦ୍ର ତାଙ୍କ ଦୃଷ୍ଟି ! ତରଳ କରୁଣା ଝରିପଡୁଛି ଯେମିତି ହାତ ପାପୁଲିରୁ । ଅଭିଭୂତ ହୋଇଯାଉଥିଲେ ସିକତା । ବିରଳ କଣ୍ଠସ୍ୱରରୁ ଉଚ୍ଚାରିତ ହେଲା, 'ଆୟୁଷ୍ମତୀ ଭବ' ।

'ଆୟୁଷ... ?' ଅସ୍ଫୁଟ ସ୍ୱର ସହିତ ନାସ୍ତିସୂଚକ ସାମାନ୍ୟ ମୁଣ୍ଡ ହଲିଗଲା ସିକତାଙ୍କର ।

ନରମ ଭାବରେ ସାମାନ୍ୟ ସ୍ମିତ ହସି ପ୍ରଶ୍ନକଲେ ସାଧୁବାବା, ''ଦରକାର ନାହିଁ ? ତେବେ କ'ଣ ପ୍ରଶ୍ନ ତୁମର ଝିଅ ?''

ସାମାନ୍ୟ ଇତସ୍ତତଃ ହେଲେ ସିକତା ।

''ସଂକୋଚ କର ନାହିଁ ମାଆ – ଦ୍ୱିଧା ରଖ ନାହିଁ – ମୁକ୍ତ ଭାବରେ ପ୍ରଶ୍ନ କର ।'' ସେଇ ଅଭୟ ମୁଦ୍ରା ଓ କରୁଣାର ମୂର୍ତ୍ତି ସମ୍ମୋହିତ କରୁଥିଲା ସିକତାଙ୍କୁ ।

''ବାବା, କେବେ ମିଳିପାରିବ...'' ଅନୁଚ୍ଚାରିତ ରହିଗଲା ସିକତାଙ୍କ ବାକ୍ୟର ଶେଷାଂଶ ।

''କ'ଣ ଖୋଜୁଛ ମାଆ ? କ'ଣ ଚାହୁଁଛ ?'' ଶୀତଳ ଜହ୍ନ କିରଣ, ଚତୁର୍ଦ୍ଦିଗର ନିସ୍ତବ୍ଧତା ପରି ଶାନ୍ତ, ନିର୍ମଳ ଥିଲା ସେ କଣ୍ଠସ୍ୱର ।

''ବାବା ! ସାରା ଦିନଟିଏର ଆଉ ଭରା ରାତିଟିଏର ବିଶ୍ୱସ୍ତତା – କେବେ ମିଳିପାରିବ ମୋତେ, ବାବା ?'' ଆକୁଳ କଣ୍ଠସ୍ୱର ଶରୀରର କୋଣ ଅନୁକୋଣରୁ ବିଚ୍ଛିନ୍ନ ହୋଇ ଭାସିଆସିଲା ଯେମିତି – ସିକତା ଚକିତ ହେଉଥିଲେ – ଏ କଣ୍ଠସ୍ୱର କ'ଣ ତାଙ୍କର !

ଉଦାସ ଗମ୍ଭୀର ଦୃଷ୍ଟି ଲମ୍ବିଗଲା ସାଧୁବାବାଙ୍କର ଦିଗ୍‌ବଳୟ ପର୍ଯ୍ୟନ୍ତ । ସେ ଦୃଷ୍ଟି ଏକ ଶାନ୍ତ, ନିଃସଙ୍ଗ କରୁଣାରେ ଧୋଇହୋଇଯାଇଥିଲା ।

'ମାଆ !' ଗମ୍ଭୀର ସ୍ୱର ଲହରେଇ ଆସିଲା ସେଇ ଦିଗ୍‌ବଳୟରୁ । ''ସେମାନେ କେହି ଜାଣନ୍ତି ନାହିଁ । ଅଜାଣତରେ ସମସ୍ତେ ଖୋଜିହେଉଛନ୍ତି । ବିଭିନ୍ନ ସ୍ଥାନ ଆସ୍ଥାନରୁ – ଭିନ୍ନ ପାତ୍ର, ଅପାତ୍ରରୁ – ସ୍ଥିତି, ଅସ୍ଥିତିରୁ – ସ୍ୱପ୍ନ, ଦୁଃସ୍ୱପ୍ନରୁ – ଅଥଚ ଠିକ୍ ଜାଣନ୍ତି ନାହିଁ କ'ଣ ଖୋଜୁଛନ୍ତି । ମାଆ, ତୁମେ ଲୋଡୁଥିବା ଦରବଟି ନାହିଁ ବୋଲି ନୁହେଁ – ଅଛି, ଏଇଭଳି ଭାବରେ ଅଛି – ଏଇ ନରମ, ଝଲମଲ ଜହ୍ନରାତିପରି ବ୍ୟାପୀ ରହିଛି – ଏକୁଟିଆ, ନିସ୍ତବ୍ଧ, ନିଃସଙ୍ଗ ଭାବରେ । ଖୋଜିବୁଲିବାରେ ଉଜୁଡ଼ିଯାଉଛି ପୃଥ୍ୱୀ – କିନ୍ତୁ ଲହୁଲୁହାଣ, ବିଷଣ୍ଣ, ବିରସ ଏଇ ଜିନିଷଟିକୁ ଚିହ୍ନିପାରୁ ନାହାନ୍ତି କେହି.... । ମାଆ, ସରିଆସୁଛି ସିଏ, ତରଳିଯାଉଛି – ନିଶ୍ଚିହ୍ନ ହୋଇଯିବ ବୋଧହୁଏ ଅତିଚଞ୍ଚଳ...'' ଅସ୍ପଷ୍ଟ ହୋଇଆସିଲା କଣ୍ଠସ୍ୱର ସାଧୁବାବାଙ୍କର –ଅସ୍ପଷ୍ଟ ହୋଇଆସିଲା ବରଫପରି ସଫେଦ୍ ଚକ୍ ଚକ୍ ତାଙ୍କର ଆକୃତି ମଧ ।

ସିକତାଙ୍କୁ ଲାଗିଲା, ସେ ଯେପରି ଚନ୍ଦ୍ରଶିଳା–ତାଙ୍କ ଅନୁତ୍ତର ପ୍ରଶ୍ନପରି–ତରଳିଯାଉଛନ୍ତି ଚନ୍ଦ୍ର କିରଣରେ – ଭୋର୍ ଭୋର୍ କଲିଂ ବେଲ୍ ଶବ୍ଦରେ କବାଟ ଖୋଲି ଶଙ୍କରକୁ ଦେଖିଲେ ସିକତା । ଶୀଘ୍ର ତିଆର ହୋଇଯିବାକୁ କହିଲା ସେ, ଗାଡ଼ି ଆଠଟା ସୁଦ୍ଧା ଆସିଯିବ ।

ଅଳସ ଭଙ୍ଗୀରେ ମୁହଁବୁଲେଇ ପଛପଟ ବାଲ୍‌କନିକୁ ଚାହିଁଲେ ସିକତା । ସାରାରାତି କାଳି ସେ ସେଇଠି କଟାଇଥିଲେ ବୋଲି ଶଙ୍କର ବା କେମିତି ଜାଣିବ ! ''ଆମେ ତିଆର ହୋଇଯିବା ଶଙ୍କର । ଡ୍ରାଇଭରକୁ କୁହ ଗାଡ଼ି ରେଡ଼ି କରୁ – ଫେରିଯିବା ।''

''ଫେରିଯିବା ମ୍ୟାଡାମ୍ ? କାହିଁକି ? ଟ୍ରେନ୍ ଆଉ ଲେଟ୍ ହେବ ନାହିଁ । ଏବେ ଆଠଟାରେ ବସିଲେ ସଂଧ୍ୟା ସୁଦ୍ଧା ପହଞ୍ଚିଯିବା । ସେଠି ସବୁ ବ୍ୟବସ୍ଥା ହୋଇଛି ଦୁଇଦିନ ରହିବାର......'' ଶଙ୍କର ବ୍ୟସ୍ତ ହୋଇପଡୁଥିଲା ।

''ଥାଉ, ଫୋନ୍ କରି ମନାକରିଦେବା ।'' ସ୍ଥିର ଶୁଭୁଥିଲା ସିକତାଙ୍କ ସ୍ୱର ।

''କିନ୍ତୁ ମ୍ୟାଡାମ୍, ସାଧୁବାବାଙ୍କ ସହ ଆପଏଣ୍ଟମେଣ୍ଟ ? ବହୁତ କଷ୍ଟରେ ମିଳିଛି ।''

''ଆଉ ସାଧୁବାବାଙ୍କ ପାଖକୁ ଯିବା ଦରକାର ନାହିଁ । ଫେରିଯିବା ।'' ଶଙ୍କରଆଡୁ ମୁହଁବୁଲାଇ ଭିତରକୁ ପଶିଗଲେ ସିକତା ।

□□□

# ହେଟାବାଘ ଓ ମେଣ୍ଢାଛୁଆ ଉପାଖ୍ୟାନ

''ସାର୍, ଆପଣ କ'ଣ ଆଜି ଟିକେ ଡେରିରେ ଆସିଲେ କି ?'' ପିଅନ ବାନାମ୍ବର ରୁମ୍‌ର କବାଟ ଅଧାଫିଟାଇ ମୁରୁକିହସି ପଚାରିଲା ।

''କାହିଁ ନାଇଁ ତ, କାହିଁକି, କ'ଣ ହେଲା କି ?'' ଏମିତି ଗୋଟିଏ ପ୍ରଶ୍ନ ବାନାମ୍ବର କରିବବୋଲି ହୁଏତ ପ୍ରତ୍ୟୁଷ ଭାବି ନ ଥିଲା । ତେଣୁ ଉତ୍ତର ଦେବ କି ନାହିଁ ଭାବିବା ଆଗରୁ ଏତକ ପାଟିରୁ ବାହାରିପଡ଼ିଲା ତା'ର ।

''ନାଇଁ କିଛି ନାଇଁ ଯେ — ବଡ଼ସାହାବ ଅଧଘଣ୍ଟାଏ ହେଲା ଖୋଜୁଥିଲେ ଆପଣଙ୍କୁ ତ, ଭାବିଲି ଆସି କହିଦିଏ । ଆପଣ ଜାଣିଲେଣି ନା ନାହିଁ ?'' ବାନାମ୍ବର କିଛି ଗୋଟାଏ ଦୋଷ ଧରି ପକାଇବା ପରି ସଗର୍ବ ଓ ଗୋପନୀୟ ଭାବ ଦେଖାଇ କହୁଥିଲା । କଥା କହିଲାବେଳକୁ ତା'ର ପାନଖିଆ କଳାମାଟିଆ ଛାମୁଦାନ୍ତ ଦୁଇଟି ବାହାରି ଆସୁଥିଲେ, ଶ୍ରୋତାଆଡ଼କୁ ଖତେଇ ହେଲାପରି ।

''ସାହେବ ଅଧଘଣ୍ଟାଏ ହେଲା ଖୋଜୁଥିଲେ ? ଏବେ ତ ଦଶଟା ପନ୍ଦର ହେଇଛି । ମୁଁ ଦଶଟାବେଳେ ଅଫିସକୁ ଆସିବା କଥା ।'' ବାନାମ୍ବରକୁ ସଫେଇ ଦେଉଥିବାରୁ ନିଜ ଅଜାଣତରେ ପ୍ରତ୍ୟୁଷର ମୁହଁ ଲାଲପଡ଼ିଗଲା ।

''କେଜାଣି ? ଆପଣ ପଚାରି ବୁଝନ୍ତୁ ।'' ବାନାମ୍ବର ଜାଣିଶୁଣି ମୁହଁରେ ଆଉଟିକିଏ ହସଖେଳାଇ ଅଧାଖୋଲା କବାଟଟିକୁ ବନ୍ଦକରି ବାହାରିଗଲା ।

ଆଉ କିଛି ଭାବିବା ଆଗରୁ ଠାକୁର ସାହେବଙ୍କ ପାଖକୁ ଯିବାକୁ ହେବ । ପ୍ରତ୍ୟୁଷ ଉଠିଲା ।

''ଗୁଡ୍ ମର୍ଣ୍ଣିଂ ସାର୍ । ଖୋଜୁଥିଲେ ମତେ ?''

''ରାଇଟ୍ ପ୍ରତ୍ୟୁଷ । ଆଜି ଲେଟ୍‌ରେ ଆସିଛ କି ?'' ଠାକୁର୍ ସାହେବ ମୁଣ୍ଡଉଠେଇ ଭ୍ରୂକୁଞ୍ଚେଇ ଟିକେ ଚାହିଁଲେ ଓ ପୁଣି ପଢୁଥିବା ଟାଇପ୍ଡ ଚିଠିରେ ମନୋନିବେଶ କଲେ । ସେଇମିତି କହିଲେ 'ବସ' ।

''ନୋ ସାର୍... ୟେସ୍ ସାର୍ । ପନ୍ଦର ମିନିଟ୍ ଡେରି ହୋଇଗଲା । ଝିଅକୁ ହସ୍ପିଟାଲ୍ ନେବାର ଥିଲା ଯେ —'' ଏଇ କୈଫିୟତ୍ ଦେବାକୁ ଚାହୁଁ ନ ଥିଲା ପ୍ରତ୍ୟୁଷ ।

''ନିଅ ତମର ଚିଠି ।'' ସେଇମିତି ମୁଣ୍ଡ ନ ଉଠେଇ ବାଁପଟ ଚିଠିଥାକରୁ ମାଟିଆ ଲଫାପାଟିଏ ବାହାରକରି ତା' ହାତକୁ ବଢ଼ାଇଦେଲେ ଠାକୁର୍ ସାହେବ । ''ତୁମେ ଯାଇପାର ।''

''ଥାଙ୍କ୍ ୟୁ ସାର୍ ।'' କେଉଁଥିପାଇଁ ଧନ୍ୟବାଦ ଦେଲା ଭାବିବାକୁ ଡର କାହିଁ ? ମାଟିଆ ଲଫାପା ଭିତର ଚିଠିପାଇଁ ବା ଯିବାକୁ ପାଇଥିବା ନିର୍ଦ୍ଦେଶପାଇଁ ।

ସିଟ୍‌ରେ ବସୁବସୁ ଡରଡର ହୋଇ ଚିଠିଟିକୁ ଖୋଲିପକାଇଲା ପ୍ରତ୍ୟୁଷ । ଚିଠି ନୁହେଁ ତ କ'ଣ ଇଏ ? ସିଏ ଭାବିଥିଲା ହୁଏତ କୋଉ ଗୋପନୀୟ ନିର୍ଦ୍ଦେଶ ବା ସାବଧାନନାମା ବା ବଦଳି ନିର୍ଦ୍ଦେଶ ବା ସେମିତି କିଛି । କିନ୍ତୁ ଇଏତ ଆହୁରି ଅଲଗା । ତା'ର ପୂର୍ବତନ ଉପରିସ୍ଥ ମିଷ୍ଟର୍ ଟି.କେ. ସିହ୍ନାଙ୍କର ତା' ବିଷୟରେ ମନ୍ତବ୍ୟ – ଦୟାକରି ଯାହାକୁ ତା'ର ସର୍ବୋଚ୍ଚ ହାକିମ ଜଣାଇଛନ୍ତି – ''ଦି ଅଫିସର୍ ଇଜ୍ ଇନ୍ କମ୍ପିଟେଣ୍ଟ୍ ଆଣ୍ଡ୍ ହିଜ୍ ଇଣ୍ଟିଗ୍ରିଟି ଇଜ୍ ଡାଉଟ୍‌ଫୁଲ୍ ।'' ଆଖି ବଡ଼ ବଡ଼ କରି ସେଇ ଚିଠିଟିକୁ ଚାହିଁ ରହିଥିଲା ପ୍ରତ୍ୟୁଷ । କାହିଁକି ଇଏ ? କ'ଣ ପାଇଁ ? କୋଉଠୁ କୋଉ ପର୍ଯ୍ୟନ୍ତ ଭାବିବ ସେ ? ଗିଲାସେ ପାଣି ନେଇ ପିଇଲା ପ୍ରତ୍ୟୁଷ । କେହି ଡିଷ୍ଟର୍ବ କରିବେ ନାହିଁ – ନାଲି ଲାଇଟ୍‌ର ସ୍ୱିଚ୍ ଟିପିଲା । ଭାବିବାକୁ ଲାଗିଲା, କେଉଁଠି କି ପ୍ରକାର ଭୁଲ ସେ କରିଛି ? ସ୍ତ୍ରୀ ଝିଅକୁ ଧ୍ୟାନ ନ ଦେଇ ଗଧପରି ଖଟେ ବୋଲି ପ୍ରଜ୍ଞା ରାଗେ ସବୁବେଳେ । ଅଫିସର୍ ନା କିରାଣି ବୋଲି ଖୁଣ୍ଟାଦିଏ ଅଧିକାଂଶ ବେଳେ । କେବେ ବି ଛୁଟି ନ ନେଇ, ସକାଳ ସଂଧ୍ୟା ନ ମାନି ସେ ଫାଇଲ୍ ଧରି ବସୁଥିଲା କ'ଣ ପାଇଁ ? ବୋଧହୁଏ ସେ ସତରେ ଇନ୍‌କମ୍ପିଟେଣ୍ଟ୍ । ନ ହେଲେ ଯାହାଯାହା ସବୁ ଅଧସ୍ତନମାନଙ୍କ ହାତରେ ହେବାକଥା ସେତକ ନିଜେ ଲାଗିପଡ଼ି କରେ କାହିଁକି ? ସେମାନେ ତା'କୁ ନିଶ୍ଚୟ ବୋକା ବୋଲି ଭାବୁଥିବେ । ଅନେକ ସମୟରେ ଡିକ୍‌ଟେସନ୍ ନ ଦେଇ ନିଜେ ହାତରେ ଲେଖି ଟାଇପ୍ କରିବାକୁ ଦିଏ ସେ । କିନ୍ତୁ ସିହ୍ନା ସାହେବ୍ କେବେ କିଛି ତାକୁ ନିର୍ଦ୍ଦିଷ୍ଟ କରିଦେଇଥିବା କଥା ତା'ର ମନେନାହିଁ । କେବେ କେଉଁ ଚିଠି ମାଧ୍ୟମରେ ବା ମୁହଁରେ କଡ଼ା କିଛି ଶୁଣାଇଥିବା ମନେନାହିଁ । ତେବେ ତା'ପ୍ରତି ତାଙ୍କ ବ୍ୟବହାର ଅତ୍ୟନ୍ତ ଶୀତଳ ଥିଲା ଓ ତାଙ୍କର ଭାବଲେଶହୀନ ମୁହଁକୁ ଦେଖି ଦେଖି ସେ ଭାବୁଥିଲା ଯେ ଲୋକଜଣକ ବୋଧହୁଏ ଏମିତି । କୌଣସି ପ୍ରକାର ପ୍ରବଣତା ବୋଧହୁଏ ତାଙ୍କ ମୁହଁରେ ପ୍ରକାଶ ପାଏ ନାହିଁ । ଅଥଚ ଏ ଚିଠି !

–ଶୁଣୁଚ, ତୁମ ସିହ୍ନା ସାହେବଙ୍କୁ ଓ ମିସେସ୍ ସିହ୍ନାଙ୍କୁ ସମସ୍ତେ କୁଆଡ଼େ ପାଳିକରି ଲଞ୍ଚ୍ ବା ଡିନ୍‌ରକୁ ଡାକୁଛନ୍ତି – ପ୍ରଜ୍ଞା ଏତକ କେବେ କହିଥିଲା ।

କୌଣସି ଆଗ୍ରହ ପ୍ରକାଶ କରିନଥିଲା ପ୍ରତ୍ୟୁଷ ସେ ଦିଗରେ । ତାକୁ ଆଶ୍ଚର୍ଯ୍ୟ ମଧ୍ୟ ଲାଗୁଥିଲା, ଯଦି ସେ ସତରେ ମିଷ୍ଟର୍ ଓ ମିସେସ୍ ସିହ୍ନାଙ୍କୁ ଘରକୁ ଡାକେ ଦୁଇ ତିନିଘଣ୍ଟା ସେମାନଙ୍କ ସହ କଟାଇବ କେମିତି ? କ'ଣ କଥାବାର୍ତ୍ତା କରିବ ? ତାଙ୍କର ସେଇ ପଥର ମୂର୍ତ୍ତିପରି ଭାବଲେଶହୀନ ମୁହଁ ଓ ସ୍ଥିର ପଲକ ପଡୁ ନ ଥିବା, କ୍ଳାନ୍ତ ଲାଗୁଥିବା ଆଖି ଆଗରେ ତା'ର ତ ମୁହଁ ବନ୍ଦ ରହିବ । ହେଇପାରେ ପ୍ରଜ୍ଞା ପାରିବ

ମିସେସ୍ ସିହ୍ନାଙ୍କୁ ଆପ୍ୟାୟିତ କରି । ତା'ର ସେ ବାକ୍‌ପଟୁତା ଅଛି, ଚମତ୍କାର ଜଣେଇପାରେ ସେ । କିନ୍ତୁ ସେ ତ ପାରିବ ନାହିଁ । ଏମିତିରେ ସେ ବେଶୀ କଥାବାର୍ତ୍ତା କରିପାରେ ନାହିଁ । ସଭା, ସମିତି ଲୋକଗହଳରେ ଚୁପ୍‌ହୋଇ ବସି ଶୁଣେ । କାହାକୁ କଥା କହି ପ୍ରଭାବିତ କରିପାରିଲା ପରି ସୁଗୁଣ ତା'ର ଯେ ନାହିଁ ସେକଥା ସେ ଭଲଭାବରେ ଜାଣିଥିଲା ।

ରାତିଦିନ ଲାଗି ସେ ସୁପରଭାଇଜ୍ କରିଥିବା ଦେଢ଼ କିଲୋମିଟର୍ ଲମ୍ବ ନୂଆ ଟ୍ରାକ୍‌ଟି ଧସିଯାଇଥିଲା— ସାମାନ୍ୟ କେତେ ମିଲିମିଟର୍ ବର୍ଷାରେ । ବୋକାରୋକୁ ଯାଉଥିବା ଲୁହାପଥର ବୋଝେଇ ମାଲଗାଡ଼ିର ଇଞ୍ଜିନ୍ ସହ ସାତଟି ଡବା ଓଲଟି ପଡ଼ିଲା ଏଥିପାଇଁ । ଅଢ଼େଇଦିନ କ୍ରେନ୍ ଓ ମଣିଷଙ୍କର ଅକ୍ଲାନ୍ତ ପରିଶ୍ରମରେ ବିଧ୍ୱସ୍ତ ଅଞ୍ଚଳଟି ସମତୁଲ ହେଲା, କିନ୍ତୁ ଟ୍ରାକ୍‌କୁ ସକ୍ଷମ ପ୍ରମାଣପତ୍ର ଦେଇ ନ ଥିଲା ପ୍ରତ୍ୟୁଷ । ଅନୁନ୍ନତ ମାନର ବ୍ୟାଲାଷ୍ଟ୍ ଯୋଗୁ ଏଇ ଦୁର୍ଘଟଣାଟି ହୋଇଛି – ଏହା ତା'ର ରିପୋର୍ଟ ଥିଲା । ଆହୁରି ମନ୍ତବ୍ୟ ମଧ୍ୟ ଥିଲା – କଣ୍ଟ୍ରାକ୍‌ଟରର ଏଇ ବିଲ୍‌ଟି ପାସ୍ ନ କରିବା ପାଇଁ, ଯେପର୍ଯ୍ୟନ୍ତ ବ୍ୟାଲାଷ୍ଟ୍ ବଦଳାଯାଇ ନୂଆ ଟ୍ରାକ୍ ତିଆରି ନ ହୋଇଛି । ଆହୁରି ମଧ୍ୟ ସେ ତା'ର ଉପରିସ୍ଥଙ୍କୁ ରିପୋର୍ଟ ମଧ୍ୟରେ ସ୍ମରଣ କରାଇ ଦେଇଥିଲା ଯେ ଏହି ଅନୁନ୍ନତମାନର ବ୍ୟାଲାଷ୍ଟ୍ ବିଷୟରେ ସେ ପୂର୍ବରୁ ଉପରିସ୍ଥଙ୍କୁ ଜଣାଇଥିଲା ।

—ଶଳାକୁ ପାନେ ଦେଉଛି ରହ – ଶଳା ମୋତେ ପାଠପଢ଼ାଉଛି – କଣ୍ଟ୍ରାକ୍ଟର ପାଇକରାର ଏଇ ଥିଲା ଅଭିବ୍ୟକ୍ତି । ଏତକ ପୁଣି ତା'ର କାର୍ଯ୍ୟ ନିରୀକ୍ଷକ ଶୁଣାଇଥିଲା ତା'କୁ । ସତରେ ସେ ସହାନୁଭୂତିର ସହ କହୁଥିଲା ନା କଣ୍ଟ୍ରାକ୍‌ଟର ପରି ମହାପ୍ରତାପଶାଳୀ ବ୍ୟକ୍ତିଙ୍କର ଶତ୍ରୁତା ନ ଆଚରିବାକୁ ତାକୁ ଚେତାଇ ଦେଉଥିଲା ସେ ଜାଣେ !

ହଁ, ସେଇ ମାସରେହିଁ ଚାରି ପାଞ୍ଚଥର ସିହ୍ନା ସାହେବ କଥା ହୋଇଛନ୍ତି ଫୋନ୍‌ରେ ତା'ସହ । ତାଙ୍କ ପି.ଏ. ରୀତିମତ ପ୍ରତ୍ୟୁଷକୁ ଖୋଜି ଫୋନ୍ ଧରାଇଦିଏ, ସାହେବ କହିଛନ୍ତି କଥା ହେବାକୁ ।

"ମହାପାତ୍ର, ତୁମ ଆକ୍‌ସିଡେଣ୍ଟ୍ ରିପୋର୍ଟଟା ପଢ଼ିଲି । ଠିକ୍ କରି ତିଆରି କରିଛ ତ ? ଫେରାଇଦେଉଛି – ଆଉଥରେ ଦେଖ । ଠିକ୍ ଡାଟା ସଂଗ୍ରହ କରି ଏଲାବୋରେଟ୍ ରିପୋର୍ଟ ତିଆରିକର । ଆସନ୍ତା ସପ୍ତାହରେ ପଠାଅ ।" ଏତକ ନିଷ୍କମ୍ପ କଣ୍ଠରେ କହିଲାବେଳେ ସିହ୍ନା ସାହେବଙ୍କ ମୁହଁ କେମିତି ସ୍ଥିର ଥିବ, ଆଖିପତା, ଓଠ, ବେକର ମାଂସପେଶୀରେ ସାମାନ୍ୟତମ ଚଳନ ମଧ୍ୟ ହେଉ ନ ଥିବ – ତାହା ଦୃଶ୍ୟ ହେଉଥିଲା ପ୍ରତ୍ୟୁଷକୁ ।

"ୟେସ୍ ସାର୍ । ମୁଁ ନିଶ୍ଚୟ ଆଉଥରେ ଦେଖିବି ।" ଏତକ ଛଡ଼ା ଆଉକିଛି କହିପାରି ନ ଥିଲା ପ୍ରତ୍ୟୁଷ ।

ରିପୋର୍ଟଟି ଆଉଟିକେ ଅଧିକ ବିସ୍ତୃତଭାବେ ତିଆରିକଲା ସେ । ପ୍ରାଞ୍ଜଳ ହେବା ଦରକାର । ଚିତ୍ରଟିଏ ଆଙ୍କିଲା ସେ । ସୁରକ୍ଷା ପଦ୍ଧତିରେ କେଉଁଟି କେଉଁଠି ଭୁଲ ରହିଯାଇଛି, ସେଇଠି ନାଲିରଙ୍ଗରେ ଚିହ୍ନ ଦେଲା । ଟ୍ରାକ୍ କିପରି ମାନର ହେବାକଥା ତା' ମଧ୍ୟ ଦର୍ଶାଇଲା । ମାଲଗାଡ଼ିର ଇଞ୍ଜିନ୍ ଓ ଡବାଗୁଡ଼ିକ ପଡ଼ିଯାଇଥିବା ଜାଗାରେ ସବୁଜ ସଙ୍କେତ ଦେଲା । କିପରି ଆକ୍‌ସିଡେଣ୍ଟଟିକୁ ରୋକାଯାଇ ପାରିଥା'ନ୍ତା, ତା' ମଧ୍ୟ କ୍ରମାଗତ ଭାବରେ ଟିପିଲା । ଟ୍ରାକ୍ ଆଉଥରେ ଉତ୍ତମମାନର ବ୍ୟାଲାଷ୍ଟ୍ ଓ ସ୍ଲିପର୍ ସହ ତିଆରି ନ ହେଲେ ଏତେ ମୂଲ୍ୟବାନ୍ ବସ୍ତୁ ବୋହୁଥିବା ମାଲଗାଡ଼ିମାନ କୌଣସିମତେ ସେଇ ପଥରେ ଚାଲିବା ଉଚିତ ନୁହେଁ – ଏଇ ଲାଇନ୍‌ଗୁଡ଼ିକୁ ଗାଢ଼ ଭାବରେ ଲେଖିଥିଲା । ଦିଆଯାଇଥିବା କଣ୍ଟ୍ରାକ୍ଟ ପରିମାଣ ମଧ୍ୟରେ ଆଉଥରେ ସେଇ ଟ୍ରାକ୍‌ଟି ତିଆରି ହେବା ଉଚିତ ଓ ସେ ସମ୍ପର୍କରେ ସୁଚିନ୍ତିତ ନିର୍ଦ୍ଦେଶ ଦିଆଯିବା ଉଚିତ ବୋଲି ସେ ଦୃଢ଼ମତ ଦେଲା । ତିନିଦିନର ପରିଶ୍ରମ ପରେ ରିପୋର୍ଟଟି ଦେଖି ତାକୁ ସନ୍ତୋଷ ମିଳିଥିଲା । ଷ୍ଟେନୋକୁ ଡାକି ତାକୁ ଟାଇପ୍ କରିବାକୁ ଦେଇଥିଲା ଓ ହାଇଲାଇଟ୍ କରିବାପାଇଁ ତାକୁ ଫେରାଇ ଦେବାକୁ କହିଥିଲା ।

''ଆପଣଙ୍କ ରିପୋର୍ଟ ଦେଖୁ ଦେଖୁ ସିହ୍ନାସାହେବ ତ ଏକଦମ୍ ରାଗିଗଲେ । ସାଙ୍ଗେ ସାଙ୍ଗେ ଲଫାପା ସହ ତାକୁ ଫୋପାଡ଼ିଦେଲେ ।'' ସେଇ କାର୍ଯ୍ୟ ନିରୀକ୍ଷକ ଜଣକ ଦୟା ଦେଖାଇବା ପରି କହିଲେ ।

''ଆପଣ ସାର୍‌ଙ୍କ ସହ ଟିକିଏ କଥା ହୋଇଯାଆନ୍ତୁ ।''

ନାଲିପଡ଼ିଯାଇଥିଲା ପ୍ରତ୍ୟୁଷର ମୁହଁ ।

''ସାର୍ କ'ଣ କଥା ହେବାକୁ କହିଛନ୍ତି ?'' ପ୍ରତ୍ୟୁଷ ବୋକାଙ୍କ ପରି ପଚାରିଲା ।

''ସେ ତ ଆପଣଙ୍କୁ କହିବାକୁ କିଛି କହିନାହାନ୍ତି । କିନ୍ତୁ ରିପୋର୍ଟ ଯେତେବେଳେ ଡଷ୍ଟବିନ୍‌ରେ ପକାଇଦେଲେ, ଆପଣଙ୍କର ତ ପଚାରିବା କଥା ।'' ସର୍ବଜ୍ଞପରି ଏତକ କହି ନିରୀକ୍ଷକ ଜଣକ ଅପସରିଯାଇଥିଲା ।

ଏହା ସତ ହୋଇ ନ ପାରେ, କଦାପି ହୋଇ ନ ପାରେ । ସେ ଏତେ ଯତ୍ନରେ ରିପୋର୍ଟଟି ତିଆରି କରିଥିଲା । ଯଦି କିଛି ପଏଣ୍ଟ୍ ବାଦ୍ ରହିଯାଇଛି, ତେବେ ସିହ୍ନାସାହେବ ତାକୁ କହିପାରିଥା'ନ୍ତେ । ଫୋପାଡ଼ିଦେଲେ କ'ଣ ସତରେ !

ଏଇଠି ବୋଧହୁଏ ଦ୍ୱିତୀୟଥର ପାଇଁ ମସ୍ତବଡ଼ ଭୁଲ୍ କରିବସିଲା ସେ । ଅଭିମାନ କଲା । ନା, ସେ ନିଜଆଡୁ କଦାପି ପଚାରିବ ନାହିଁ । ସେତକଦିନ ଘରେ ମଧ୍ୟ ସେ ବଡ଼ ଚିଡ଼ିଚିଡ଼ି ହେଲା । ଟିକେ ଟିକେ କଥାରେ ପ୍ରଜ୍ଞା ଉପରେ ରାଗିଲା । ସଂଧ୍ୟାବେଳକୁ ସ୍କୁଟର୍ ବାହାରକରି ଚାଲିଗଲା ଯେ ରାତି ଦଶଟାବେଳକୁ ଫେରିବାକୁ ଲାଗିଲା । ଝିଅକୁ ଧରି ଆଗପଛ ଉପରତଳ କରି ଆଉ ଖେଳାଇଲା ନାହିଁ ।

''ସାର୍ କହିଛନ୍ତି ଫୋନ୍‌ରେ କଥା ହେବାକୁ ।'' ସିହ୍ନାସାହେବଙ୍କ ପି.ଏ. କହିଲା– ''ଆପଣଙ୍କୁ ଟିକେ ଆଗରୁ ମଧ୍ୟ ଖୋଜୁଥିଲେ । ସିଟ୍‌ରେ ନ ଥିଲେ କି ?'' ନର୍କକୁ ଯାଇଥିଲି– ପାଟିରୁ ବାହାରି ଆସୁଥିଲା ପ୍ରତ୍ୟୁଷର । ''ହଁ, ଟଏଲେଟ୍ ଯାଇଥିଲି ।'' ସେ କାହିଁକି ଏମିତି କୈଫିୟତ୍ ଯେ ଦିଏ । ''ଠିକ୍ ଅଛି, ମୁଁ କଥା ହୋଇଯିବି ।''

''ସାର୍, ଖୋଜୁଥିଲେ ସାର୍ ।'' ପ୍ରତ୍ୟୁଷର ସ୍ୱରରେ କମ୍ପନ ନଥିଲା ।

''ହଁ, ତୁମ ରିପୋର୍ଟ, ସେଇ ଆକ୍‌ସିଡେଣ୍ଟ ରିପୋର୍ଟ ସେଇଟା ଇଉସ୍‌ଲେସ୍ । ମୁଁ ତାକୁ ଆକ୍‌ସେପ୍ଟ କରିପାରିବି ନାହିଁ ।''

''କୋଉଠି ଭୁଲ୍ ରହିଗଲା ସାର୍ ?'' ପୁଣି ଅଭିମାନିଆ ଶୁଭିଲା ପ୍ରତ୍ୟୁଷର ସ୍ୱର ।

'ଭୁଲ' ? ଏଇ ପ୍ରଥମଥର ଉତ୍ତେଜନାରେ ଥରୁଥିଲା ସିହ୍ନାଙ୍କର ସ୍ୱର । ''ତୁମେମାନେ ସବୁ କେମିତି ଚାକିରି ପାଇଛ କେଜାଣି ?''

''ସେଇ ପରୀକ୍ଷାଦ୍ୱାରା ସାର୍, ଯାହା ଆପଣ ଦଶବର୍ଷ ତଳେ ପାସ୍ କରି ଚାକିରି ପାଇଥିଲେ ।''

ମିନିଟିଏ ନିରବ ରହିଗଲା ଦୁଇପଟ ।

''ହ୍ୱାଟ୍ ? ଷ୍ଟୁପିଡ୍ ।'' ଧଡ୍‌କରି ଫୋନ୍ ରଖିବାର ଶବ୍ଦ ହେଲା । ଏମିତି ଗୋଟାଏ ଆସ୍ପର୍ଦ୍ଧା କରିବ ବୋଲି ପ୍ରତ୍ୟୁଷ ନିଜେ ମଧ୍ୟ ଭାବିପାରୁ ନ ଥିଲା । ନିଜ ବାକ୍‌ଚାତୁର୍ଯ୍ୟର ଏହି ଭୀଷଣ ଅଭାବ ଗଭୀର ଭାବରେ ଅନୁଭବ କରୁଥିଲା ପ୍ରତ୍ୟୁଷ । କିନ୍ତୁ ଯା ପରେ ସେ ଆଉ କ'ଣ କରନ୍ତା ତା' ମଧ୍ୟ ଜାଣିପାରୁ ନଥିଲା ।

ଚିଠିଟିକୁ ଧରି ସେଇମିତି ଦିନସାରା ବସିରହିଥିଲା ପ୍ରତ୍ୟୁଷ । ଚାରିଟା ପରେ ସେ ଭାବିଲା ଯେ ତା'ର ଠାକୁର୍ ସାହେବଙ୍କ ପାଖକୁ ଯିବା ଉଚିତ ।

''ମୋର ସାର୍ ସାତଦିନ ଛୁଟି ଦରକାର । ହେଡ୍ କ୍ୱାର୍ଟରକୁ ଯିବାକୁ ଚାହୁଁଛି ।''

''କ'ଣ ନିହାତି ଦରକାର ?'' ସେମିତି ମୁହଁ ଉପରକୁ ନ ଉଠାଇ ପଚାରିଲେ ଠାକୁର୍ ।

ହଁ ସାର୍, ଏଇ ଚିଠିଟା...

''ଓଃ ! ହଁ, ମୁଁ ଜାଣେ । ତେବେ ପ୍ରଥମେ ଉତ୍ତରଟା ତ ଦିଅ– ତା'ପରେ ଦେଖାଯିବ ।''

ଫେରିଆସିଥିଲା ପ୍ରତ୍ୟୁଷ । ତା' ନିଜ ଢଙ୍ଗରେ ଦୁଇପୃଷ୍ଠାର କୈଫିୟତ ବାଢିଥିଲା । ଦୁଇଦିନ ପରେ ବହୁତ ଭାବିଚିନ୍ତି ସେଇଟିକୁ ପଠାଇଥିଲା ଠାକୁର୍ ସାହେବଙ୍କ ପାଖକୁ ଫରଓ୍ୱାର୍ଡ କରିବାପାଇଁ । ତା' ପରପର ଦିନଗୁଡ଼ିକ ବଡ଼ ଅସ୍ଥିର ଥିଲା ତା'ପାଇଁ । କୌଣସି ନିର୍ଦ୍ଦିଷ୍ଟ କାମରେ ମନୋନିବେଶ କରିପାରୁ ନଥିଲା ସେ । ଏକ ଅସ୍ଥିର ଉତ୍ତେଜନାରେ ସେ ଅପେକ୍ଷା କରୁଥିଲା କିଛି ଗୋଟାଏ ସମ୍ଭାବନାକୁ । ତା'ର ଟେବୁଲ୍ ଉପର ଆଶ୍ ଟ୍ରେ

ସବୁବେଳେ ପାଉଁଶ ଭର୍ତ୍ତିହୋଇ ରହିଲା ଓ ଅଧିକାଂଶ ସମୟରେ ଉଛୁଳିକରି ଟେବୁଲ୍‌ର ଗୋଟିଏ କଣରେ ଜମାହୋଇ ପଡ଼ିଚାଲିଲା । ମାସଟିଏ ବିତିଗଲା ଏ ଭିତରେ । ଆହୁରି ଅସ୍ଥିର ହୋଇପଡ଼ିଲା ପ୍ରତ୍ୟୁଷ । କୌଣସି ଚିଠିପତ୍ର ତା ନାମରେ ଆସୁନଥିଲା । ଠାକୁର ସାହେବ ମଧ୍ୟ ନିରବ । ଲାଗୁଥିଲା ସମସ୍ତେ ତା'କଥା ଭୁଲିଯାଇଛନ୍ତି, ଖାଲି ସିଏ ଯାହା ଭୁଲିପାରୁ ନାହିଁ । ମଝିରେ ମଝିରେ ଠାକୁର୍ ସାହେବ ଯେତେବେଳେ ଡାକନ୍ତି ପ୍ରତ୍ୟୁଷ ଟିକିଏ ସଂତ୍ରସ୍ତ ହୋଇଉଠେ, ତା'ର ପ୍ରତୀକ୍ଷିତ ଉତ୍ତରଟି ଆସିଗଲା କି ? କିନ୍ତୁ ନା, ଆଉ କିଛି ନା କିଛି ହେଲେ କାମ ଥାଏ । ଉପରକୁ ଯେତେ ଶାନ୍ତ ଲାଗୁଥିଲେ ମଧ୍ୟ ତା'ର ଶିରାପ୍ରଶିରାରେ ଅସ୍ଥିରତା ଖେଳିବୁଲୁଥାଏ ।

ପ୍ରାୟ ଅର୍ଦ୍ଧେ..ମାସ ପରେ ଚିଠିଟି ଆସିଲା । ଥରୁଥିବା ହାତରେ ତାକୁ ଖୋଲିଲା ପ୍ରତ୍ୟୁଷ । କେଜାଣି କାହିଁକି ତାକୁ ଲାଗୁଥିଲା ତା'ର ସାମାନ୍ୟତମ ବିଶ୍ୱାସ ହେଉ ନ ଥିବା ତଥ୍ୟ କିଛି ଏଥିରେ ରହିଛି ନିଶ୍ଚୟ । ଥିଲା ମଧ, ଏକ୍‌ସପ୍ଲାନେସନ୍ ନଟ୍ ଆକ୍‌ସେପ୍‌ଟେଡ୍ । ପ୍ରମୋଶନ୍ ଉଡ୍ ବି ୱିଥ୍‌ହେଲ୍‌ଡ ଟିଲ୍ ଫର୍‌ଦର୍ ଅର୍ଡ଼ର । ଅନେକପ୍ରକାର ଆଶଙ୍କା ମଧ୍ୟରେ ସାମାନ୍ୟ କିଛି ଆଶା ଥିଲା ତା'ର, କିଛି ଅଲୌକିକ ଘଟଣା ପରି– ସିହ୍ନା ସାହେବଙ୍କର ଟିକିଏ ଦୟା ହୁଏତ ହେଇପାରେ– ସେ ଆଜିଯାଏ ବୁଝିପାରି ନଥିବା ଭୁଲଟିକୁ ସେ କ୍ଷମା କରିଦେଇପାରନ୍ତି । ଚିଠିଟି ଦେଇ ଏଥର ଠାକୁରଙ୍କୁ ଦେଖାକରିବାକୁ ବଡ଼ ଅପମାନିତ ଲାଗୁଥିଲା ତାକୁ । ଦିନର ଶେଷରେ କୌଣସିମତେ ଠାକୁରଙ୍କ ପାଖରେ ପହଞ୍ଚିଲା ସେ ।

''ସାର୍ ମୋତେ ସାତଦିନ ଛୁଟି ଦିଅନ୍ତୁ । ହେଡ୍‌କ୍ୱାର୍ଟର ଯିବି ।''

''ଆରେ କ'ଣ ପାଇଁ ?'' କହିଲା ପରେ ମୁଣ୍ଡ ଟେକିଲେ ଠାକୁର ସାହେବ । ହାତରେ ଥିବା ତା'ର ଚିଠିଟି ଦେଖିପାରିଲେ ବୋଧହୁଏ । ''ଓ..... କିନ୍ତୁ ସାତଦିନ କ'ଣ କରିବ ? ଦୁଇ ତିନିଦିନ ଯାଅ ।''

ଆଉ ଅଧିକ କିଛି କହିବାକୁ ଧୈର୍ଯ୍ୟ ନ ଥିଲା ପ୍ରତ୍ୟୁଷର ।

ଘରେ ପହଞ୍ଚୁ ପହଞ୍ଚୁ ପ୍ରଜ୍ଞା କହିଆସୁଥିଲା ''ଝିଅ ଆଜି ସଫୋଲା ବୋତଲଟାଯାକ...'' ରହିଗଲା ସିଏ, ପ୍ରତ୍ୟୁଷ ମୁହଁରୁ କ'ଣ ଦେଖିଲା କେଜାଣି ? ପାଟିକରି କାନ୍ଦିବାକୁ ଇଚ୍ଛା ହେଉଥିଲା ପ୍ରତ୍ୟୁଷର, କିନ୍ତୁ ପାରିଲାନି– କିଏ କେବେ କହିଥିଲା କାନ୍ଦିବା କୁଆଡ଼େ କାପୁରୁଷ ବା କୁପୁରୁଷଙ୍କ ଲକ୍ଷଣ । ଚୁପ୍‌ଚାପ୍ ବକ୍‌ସ ସଜାଇଲା କଲିକତା ଯିବାପାଇଁ ।

ବଡ଼ହାକିମଙ୍କ ପାଖକୁ ତା'ପରି ଅଫିସର ଜଣେ ସିଧା ତ ଯାଇପାରିବ ନାହିଁ, ଯିବା ସମ୍ଭବ ମଧ୍ୟ ନୁହେଁ । ସେକ୍ରେଟାରୀଙ୍କୁ ଦେଖାକଲା– ପରିଚୟ ଦେଲା । ତାକୁ ଲାଗିଲା ଯେମିତି ତା'ର ପରିଚୟ ପାଇବା ପରେ ତାଙ୍କ ମୁହଁରେ ଖେଳୁଥିବା ଜବରଦସ୍ତ ଅମାୟିକତା ମଧ୍ୟ ଉଭେଇଗଲା । ସେ ବସିବାକୁ ନ କହିବାରୁ ସେ ନିଜେ ନିଜେ

ବସିଗଲା । ଚିଫ୍‌ଙ୍କ ସହ ଦେଖାକରିବାକୁ ଚାହୁଁଛି, ବ୍ୟକ୍ତିଗତ କାରଣରୁ । ଏହାର କୌଣସି ପ୍ରତିକ୍ରିୟା ମିଳିଲା ନାହିଁ । ଅଧଘଣ୍ଟାଏ ପରେ ନିଜର ଅଭିପ୍ରାୟ ଦୋହରାଇଲା ।

''ଓଃ.... ସାର୍ ଆଜି ବହୁତ ବ୍ୟସ୍ତ । ଏବେ ମିଟିଂ ଚାଲିଛି । ଆଫ୍‌ଟରନୁନ୍‌ରେ ମେମ୍ବର ଆସୁଛନ୍ତି । କାଲି ଆସନ୍ତୁ ।''

ସେ ବସିଥିବା ଚଉକିଠାରୁ ସମ୍ପର୍କ ଛିଣ୍ଡାଇଦେବା ଢଙ୍ଗରେ ବ୍ୟକ୍ତ କଲେ ସେକ୍ରେଟାରୀ ।

ପରଦିନ ତାଙ୍କ ପାଖରେ ଭିଡ଼ ଥିଲା । ଗୁଡ଼ାଏଲୋକ ବସିଥିଲେ ଚିଫ୍‌ଙ୍କୁ ଦେଖାକରିବା ପାଇଁ । ସେମାନେ ଗୋଟିଏ ପରେ ଗୋଟିଏ ସୁଯୋଗ ପାଇଲେ । ପ୍ରତ୍ୟୁଷ ଅପେକ୍ଷା କଲା ତା'ର ପାଳି ପାଇଁ – ସେକ୍ରେଟାରୀ କେତେବେଳେ ତାକୁ ଇସାରା କରିବେ । କିନ୍ତୁ ନା–ଗୋଟାଏ ବାଜିବାକୁ ବସିଲା – ଅପେକ୍ଷାଗୃହ ମଧ୍ୟ ଖାଲିହୋଇ ଆସିଲା । ଆଉ ଅପେକ୍ଷା କରିବାର ଧୈର୍ଯ୍ୟ ନଥିଲା ପ୍ରତ୍ୟୁଷର ।

''ପାଞ୍ଚ ମିନିଟ୍ ପାଇଁ ସାର୍‌ଙ୍କୁ ଦେଖାକରିଥା'ନ୍ତି ।''

''ଏବେ ତ ଗୋଟାଏ ବାଜିଲାଣି । ଭିଡ଼ ତ ଦେଖୁଛନ୍ତି । ଲଞ୍ଚ୍ ପରେ ସାର୍ ଫିଲ୍ଡ ଇନ୍‌ସପେକ୍‌ସନ୍‌ରେ ଯିବେ, କାଲି ବରଂ ଆସ ।'' ପ୍ରତ୍ୟୁଷକୁ ଲାଗିଲା ଏତକ ଯେମିତି ତାକୁ କହିବାପାଇଁ ଆଗରୁ ଠିକ୍‌କରି ରଖିଥିଲେ ସେକ୍ରେଟାରୀ ।

ତୃତୀୟ ଦିନ ଯେମିତି ହେଲେ ଚିଫ୍‌ଙ୍କୁ ଦେଖାକରିବାକୁ ଦୃଢ଼ପରିକର ହେଲା ପ୍ରତ୍ୟୁଷ । ସେକ୍ରେଟାରୀଙ୍କ ପାଖରେ ପହଞ୍ଚିଲାବେଳକୁ ନିଜକୁ ଷ୍ଟ୍ରାଇକ୍ କରିବାକୁ ବାହାରୁଥିବା ଛାତ୍ରନେତାପରି ଲାଗିଲା ତାକୁ । ଆଜି ସେ ଯେମିତି ହେଲେ ଦେଖାକରିବ– ଦରକାର ହେଲେ ଟେବୁଲ୍ ବାଡ଼େଇକରି କହିବ ସେକ୍ରେଟାରୀଙ୍କୁ । କିନ୍ତୁ ପ୍ରକୃତରେ ସେମିତି କିଛି ନକରି ଚୁପ୍ ହୋଇ ବସିରହିଲା ସେ । ଭାବିଲା ବୋଧହୁଏ ଆଜି ତାକୁ ସେକ୍ରେଟାରୀ ଚିଫ୍‌ଙ୍କୁ ଦେଖା କରିବାକୁ ନିଶ୍ଚୟ ଦେବେ । ସାଢ଼େବାରଟାବେଳେ ସେ ନିଶ୍ଚିତ ହୋଇଗଲା, ଆଜି ମଧ୍ୟ ଗତ ଦୁଇଦିନର ପୁନରାବୃତ୍ତି ହେବ । ସେକ୍ରେଟାରୀଙ୍କୁ ଆଉ ନ ଚାହିଁ ସେ ଧଡ୍ କରି ଉଠିପଡ଼ିଲା ଓ ଚିଫ୍‌ଙ୍କ ରୁମ୍‌ଆଡ଼କୁ ମାଡ଼ିଗଲା । କବାଟ ଆଗରେ ପିଅନ ରୋକିଲା ତାକୁ ।

''ଛାଡ଼ ମୋତେ ।'' ଅତି ରୁକ୍ଷଭାବରେ କହି ପଶିଗଲା ଭିତରକୁ ପ୍ରତ୍ୟୁଷ ।

ଚିଫ୍‌ଙ୍କୁ ଆଗରୁ କେବେ ଦେଖି ନଥିଲା ସେ । ଗୋଟିଏ ଆଡ଼କୁ ଚାହିଁ ଷ୍ଟେନୋକୁ ଡିକ୍‌ଟେସନ୍ ଦେଉଥିଲେ ସେ । ସାମାନ୍ୟ ଚକିତ ହେଲାପରି ଚାହିଁଲେ ତାକୁ ।

''ମୁଁ ତିନିଦିନ ହେଲା ଆପଣଙ୍କୁ ଦେଖାକରିବାକୁ ଅପେକ୍ଷା କରିଛି । ପାଞ୍ଚ ମିନିଟ୍ ପାଇଁ.....'' କଣ୍ଠରୁଦ୍ଧ ହୋଇଯାଉଥିଲା ପ୍ରତ୍ୟୁଷର । ତାକୁ ଲାଗୁଥିଲା ଯେମିତି ସେ ଠାକୁର ମୂର୍ତ୍ତିଙ୍କ ଆଗରେ ଗୁହାରି କରିବାକୁ ଆସିଛି ।

''ବସ ।''

ପ୍ରାୟ ଦଶ ମିନିଟ୍ ପରେ ପ୍ରଶ୍ନିଳ ଦୃଷ୍ଟିରେ ତାକୁ ଚାହିଁଲେ ଚିଫ୍ । ଯେତେ କମ୍‌ରେ ସମ୍ଭବ ପ୍ରତ୍ୟୁଷ କହିଗଲା – କଥା ସରିଗଲା ପରେ ଦୀର୍ଘନିଃଶ୍ୱାସ ଛାଡ଼ିଲା ସେ ।

''ହୁଁ, ଲାଗୁଛି କେଶ୍‌ଟା ମୋର ନଜରରେ ପଡ଼ିଛି । ତୁମେ ଗୋଟେ କାମ କର । ଗିଭ୍ ଏ ରାଇଟ୍ ଅପ୍ । ଆସନ୍ତା ମାସରେ ବୋର୍ଡ ମିଟିଂ ବସିବ । ଏଇଟା ସେଥିରେ ଡିସାଇଡ୍ ହେବ ।''

କୃତଜ୍ଞତାର ସହ ନମସ୍କାର କରି ଫେରିଆସିଲା ପ୍ରତ୍ୟୁଷ । ଆଶା ଭରିଆସିଲା ତା' ଭିତରେ । ଆଉ ମାସଟିଏ ତ– ମାସଟିଏ ପରେ ଏ ଭିତରେ ବାହାରିଯାଇଥିବା ପ୍ରମୋଶନ୍ ଅର୍ଡ଼ରରେ ତା' ନା ରହିବ । ମାସଟିଏ କୌଣସିମତେ ଅପେକ୍ଷା କରିବାକୁ ପଡ଼ିବ ।

ଅଫିସ୍‌ରେ ପହଞ୍ଚୁ ପହଞ୍ଚୁ ପିଅନ ବାନାମ୍ବର ଅଧାକବାଟ ଖୋଲି ମାଟିଆ ଲଫାପାଟିଏ ବଢ଼ାଇଦେଲା– ତା'ର ଟ୍ରାନ୍ସଫର୍ ହୋଇଛି– ଗୋଦାମକୁ ।

''ସାର. ମୋର ଫିଲ୍‌ଡ ପୋଷ୍ଟିଂ ଜମା ଦେଢ଼ବର୍ଷ ହୋଇଛି । ଆଇ ଆମ୍ ଫାଇଟିଂ ମାଇଁ କେଶ୍ । ପ୍ରମୋଶନ୍ ତ ହେଲା ନାହିଁ । ଚିଫ୍ କହିଛନ୍ତି ମାସେ ପରେ ବୋର୍ଡ ମିଟିଂ ବସିବ । ସାର୍ ଏମିତି ସମୟରେ....'' ଅତି ବିବ୍ରତ ହୋଇପଡୁଥିଲା ପ୍ରତ୍ୟୁଷ ।

''ଆରେ, ତୁମେ ଏତେ ବ୍ୟସ୍ତ ହୋଇପଡୁଛ କାହିଁକି ? ଗୋଦାମଘର ପୋଷ୍ଟିଂ କିଛି ଖରାପ୍ ନୁହେଁ ।'' ସାମାନ୍ୟ ହସ–

''ତେବେ ଚିଫ୍‌ଙ୍କର ତ ଏନ୍ ଏଫ୍ ବଦଳି ହୋଇଯାଇଛି । ସକାଳେ ଆଜି ଅର୍ଡର ଆସିଛି ।'' ପୁଣି ସାମାନ୍ୟ ହସ–

''କିନ୍ତୁ ସାର୍.....'' ଏଥର ରୀତିମତ କାନ୍ଦ କାନ୍ଦ ଦିଶିଲା ପ୍ରତ୍ୟୁଷ ।

''ତୁମେ ଏତେ ବ୍ୟସ୍ତ ହୋଇପଡୁଛ ଯେ । ତୁମେ ଯଦି....ଟିକିଏ ରହିଗଲେ ଠାକୁର୍ ଓ ପ୍ରତ୍ୟୁଷର ଆଖିରେ ଆଖି ମିଳାଇ ଅର୍ଥପୂର୍ଣ୍ଣ ହସ ଖେଳାଇ ଆଣିଲେ ମୁହଁରେ ।

କ'ଣ ସେ ଯଦି ? – ପ୍ରତ୍ୟୁଷ ହଠାତ୍ ଆଶଙ୍କିତ ହୋଇପଡ଼ିଲା । କ'ଣ ସେ ଯଦି କରିପାରିଥା'ନ୍ତା ! ସେ ଯଦି କଣ୍ଟ୍ରାକ୍‌ଟରମାନଙ୍କୁ ଏପଟ ସେପଟ କଥା କହି ଠାକୁରଙ୍କ ପାଖକୁ ପଠାନ୍ତା– ସେ ଯଦି ପ୍ରଜ୍ଞାକୁ ପ୍ରତି ସପ୍ତାହାନ୍ତ ମିସେସ୍ ଠାକୁରଙ୍କ ସହ ସପିଙ୍ଗ୍ ପାଇଁ ପଠାନ୍ତା– ସେ ଯଦି ଠାକୁର୍ ସାହେବଙ୍କ ଉଣେଇଶିବର୍ଷର ଝିଅକୁ କମ୍ପ୍ୟୁଟର ବେସିକ୍ସ ପଢ଼ାଇବାକୁ ଆସୁଥା'ନ୍ତା – କ'ଣ କରିପାରିଥା'ନ୍ତା ସେ ଯଦି ?

ତା'ର ଉକ୍ଣ୍ଠାର ସମାପନ କଲେ ଠାକୁର୍ ସାହେବ ।

''ତୁମେ ଯଦି ମୋତେ ଟିକେ ଆଗରୁ କହିଥା'ନ୍ତ !'' ଖେଳିଆସିଥିବା ଅର୍ଥପୂର୍ଣ୍ଣ ହସକୁ ସୀମିତ କରିଦେଲେ ଠାକୁର୍ ସାହେବ ।

କିଛି ଉତ୍ତର ଦେଲାନାହିଁ ପ୍ରତ୍ୟୁଷ । ଦୁଇ ତିନି ମିନିଟ୍ ମୁହଁପୋତି ବସିଥିଲା ଓ ଚାଲିଆସିଥିଲା ।

ପୁଣି ବାନାମ୍ବର, ‘‘ସାର୍, ଜଲ୍‌ଦି ଆସନ୍ତୁ– ସନ୍ତୋଷ ସାର୍‌ଙ୍କ ଫୋନ୍ – ଆଗରୁ ଥରେ କରିଥିଲେ ବି ।’’

ସନ୍ତୋଷ କାହିଁକି ?

‘‘ଆରେ ଭାଇ ବଡ଼ ଖରାପ ଲାଗିଲା ଶୁଣିକରି । କ’ଣ କିଛି ହେଉଛି ନା ନାହିଁ ?’’

‘‘କେଜାଣି ?’’ ନିସ୍ପୃହ ଉତ୍ତର ଦେଲା ପ୍ରତ୍ୟୁଷ ।

ଦୁଇ ଚାରିପଦ ମାମୁଲି କଥାବାର୍ତ୍ତା ପରେ ଫୋନ୍ ରଖିଦେଲା ପ୍ରତ୍ୟୁଷ । ଇଞ୍ଜିନିଅରିଂ ତା’ ସହ ପଢୁଥିଲା ସନ୍ତୋଷ । କ୍ୟାରିଅର ସାରା ଈର୍ଷା କରୁଥିଲା ତାକୁ । ଏକାଡେମୀରେ ସେ ସ୍ୱର୍ଣ୍ଣପଦକ ପାଉଥିବାବେଳେ ସନ୍ତୋଷ ମନ୍ତବ୍ୟ କରିଥିଲା– ଶଳା, ଏଇ ବହିପୋକଗୁଡ଼ାକ ଫିଲ୍‌ଡରେ ମାଙ୍କଡ଼ଚିତ୍ ମାରିବେ ।

ବୋଧହୁଏ ସତ କହିଥିଲା ସନ୍ତୋଷ ।

ସ୍କୁଟର୍‌ରେ ବଜାର ଦେଇ ଆସିଲାବେଳକୁ ପ୍ରତ୍ୟୁଷର ମନେପଡ଼ିଲା ପ୍ରଜ୍ଞା ଗତକାଲି କହିଥିଲା ଯେ ଝିଅର ନିପଲ୍ ଛିଣ୍ଡିଯାଇଛି । ତା’ପରେ ସେ ଭାବିଲା ଯେ କିଛି ପରିବା ନେଇ ତା’ର ଘରକୁ ଯିବା ଉଚିତ ।

ପହଞ୍ଚୁ ପହଞ୍ଚୁ ପ୍ରଜ୍ଞାର ଅଭିଯୋଗ, ‘‘ଜାଣିଛ, ଆଜି ଝିଅ କ’ଣ କରିଛି ?’’ ତା’ ମୁହଁକୁ ଚାହିଁ ଟିକିଏ ରହିଗଲା ପ୍ରଜ୍ଞା ।

‘‘ହୁଁ, କ’ଣ କରିଛି କୁହ ?’’ ବେଶ୍ ଉତ୍ସାହ ପ୍ରକାଶକରି ପଚାରିଲା ପ୍ରତ୍ୟୁଷ ।

‘‘ସେଇ ଅତି ପୁରୁଣା ବହିଟା ମ – ଈଶପ୍ ଫାବଲ୍‌ସ– ତାକୁ ଖଣ୍ଡ ଖଣ୍ଡ କରି ଚିରିପକାଇଛି । ମୁଁ ରୋଷେଇ ଘରେ ଥିଲି... ଟିକିଏ ପରେ ପ୍ରଜ୍ଞାର ଆଖି ବିସ୍ଫାରିତ ହୋଇଉଠିଲା–’’ ଏ’ମା ! ଆଜି ସୂର୍ଯ୍ୟ କୋଉ ଦିଗରୁ ଉଦୟ ହେଲେ କି ! ତୁମେ କ’ଣ ପରିବା ଧରି ଆସିଛ !’’

‘‘ଆଜିଠାରୁ ସୂର୍ଯ୍ୟ ସବୁଦିନେ ଏଇ ଦିଗରେ ଉଦୟ ହେବେ ।’’ ରାୟ ଶୁଣାଇଲା ପରି କହି ଘର ଭିତରକୁ ପଶିଲା ପ୍ରତ୍ୟୁଷ । ଚଟାଣସାରା ଅତି ପୁରୁଣା ଛୋଟିଆ ବହିଟା ପୃଷ୍ଠା ପୃଷ୍ଠା ଚିରାଯାଇ ବିଛାଇ ହୋଇ ପଡ଼ିଛି । ଅଷ୍ଟମ ଶ୍ରେଣୀରେ ବାପା ତାକୁ କିଣି ଦେଇଥିଲେ– ତା’ର ପ୍ରଥମ ଇଂରାଜୀ ଗପ ବହି । ସେ ପ୍ରଥମ ଓ ପରେ ଅନେକ ଥର ପଢ଼ିଥିବା ଗପଟି ମନେପଡ଼ିଗଲା ତା’ର–

ମଧ୍ୟ ପ୍ରାଚ୍ୟରେ କୌଣସି ହାଡ଼ଥରା ଶୀତଦିନିଆ ସକାଳ । ସୁନ୍ଦର ନରମ ଖରା ପଡ଼ିବାମାତ୍ରେ ତା’ ଆଖିଆଗରେ ଛୋଟିଆ ସବୁଜ ପୃଥିବୀକୁ ପର୍ଯ୍ୟବେକ୍ଷଣ କରିବା ପାଇଁ ଅପେକ୍ଷାକୃତ ଭାବପ୍ରବଣ ଛୁଆ ମେଣ୍ଢାଛୁଆଟି ବରଫ ତରଳିଯାଇ ଛୋଟିଆ ପାଣିଧାର ସୃଷ୍ଟି କରିଥିବା ଗଡ଼ାଣିଆଡ଼କୁ ଆଗେଇ ଯାଉଥିଲା । ଛୁଆ ଦୁଇଟି ଧଳା ମାଟିଆ ମିଶା ରଙ୍ଗର ପାଦକୁ ସେ ପାଣିରେ ସାମାନ୍ୟ ବୁଡ଼ାଇ ଚଞ୍ଚଳ କାଢ଼ିପକାଇଲା ।

ଆଃ ! କି ଥଣ୍ଡା ! ପୁଣି ସାହସକରି ଆଗପାଦ ଦୁଇଟି ବୁଡ଼ାଇଲା ଓ ଧୀରେ ମୁଣ୍ଡ ନୁଆଁଇ ଜିଭ ଦେଇ ଥଣ୍ଡା ପାଣିକୁ ଚାଟିଲା । ଥଣ୍ଡା ପାଣିର ପ୍ରଥମ ସ୍ୱାଦ ! ପୁଣି ଧୀରେ ମୁଣ୍ଡ ବୁଡ଼ାଇଲା ଓ ଢୋକଟିଏ ପିଇଲା ।

''ଆରେ କିଏ ରେ ? ମୋ ପାଣି କିଏ ଗୋଳିଆ କରୁଛି ?'' —ଥରିଉଠିଲା ଯେମିତି ଚାରିକଡ଼ରେ କୋଳି ଓ ଖଜୁରି ବୁଦାଗୁଡ଼ିକ ! ମୁଣ୍ଡଟେକି କନକନ ହୋଇ ଚାରିଆଡ଼କୁ ଚାହିଁଲା ମେଣ୍ଢାଛୁଆଟି । ଛୋଟ ବଡ଼ ଖଜୁରି ବୁଦା ଉହାଡ଼ରୁ ହଳଦିଆ ଗୋଲ୍ ଗୋଲ୍ ଦୁଇଟି କ'ଣ ଚକ୍‌ଚକ୍ କରୁଛି । ଟିକିଏ ନିରେଖି ଦେଖିବାକୁ ଚେଷ୍ଟାକଲା ମେଣ୍ଢାଛୁଆଟି— ପାରିଲା ନାହିଁ । ମିନିଟିଏ ଠିଆହୋଇ କାନ ଟେକିଲା, କିଛି ବାରିପାରିଲା ନାହିଁ । ପୁଣି ମୁଣ୍ଡ ନୁଆଇଁ କଳେ ପାଣି ନେଲା । ''କହିଲିପରା, ଶୁଭିଲା ନାହିଁ ତୋତେ ।'' —ଗର୍ଜନରେ ଯେମିତି ତା' ପାଦତଳର ପାଣି ଥରିଉଠିଲା । ଏଥର ସାମାନ୍ୟ ଦେଖିପାରିଲା ମେଣ୍ଢାଛୁଆଟି । ପାଉଁଶିଆ ମାଟିଆ ମିଶା ଖୁବ୍ ବଡ଼ ଏକ ଆକୃତି — କେବେହେଲେ ଏମିତି କିଛି ସେ ଦେଖିନାହିଁ — ମାଆ ତ କେବେ କହି ନାହିଁ ଇଏ କିଏ ବୋଲି । ସାମାନ୍ୟ ଟିକିଏ ଡର ଲାଗିଲା ତାକୁ ।

''ମୁଁ ତ ଗୋଳିଆ କରୁନାହିଁ — ପାଣି ପିଉଛି ।'' ସେଇ ଆକୃତି ଆଡ଼କୁ ଚାହିଁ ଥଙ୍ଗେଇ ଥଙ୍ଗେଇ କହିଲା ମେଣ୍ଢାଛୁଆଟି ।

''କ'ଣ ହେଲା ? ଗୋଳିଆ କରୁନାହୁଁ ? ମୁଁ ମିଛରେ କହୁଛି ?'' ଏଥର ସେ ଆକୃତିଟି ଓ ଦୁଇ କଡ଼ରେ ଖଜୁରି ବୁଦା ଟିକିଏ ହଲିଲା ।

ପାଣିରୁ ପାଦ ଉଠାଇଆଣିଲା ମେଣ୍ଢାଛୁଆଟି । କ'ଣ କରିବ ସିଏ ? ଦଉଡ଼ିଯିବ କି ମାଆ ପାଖକୁ ? କାନ୍ଦ ଲାଗିଲା ତାକୁ । କାହିଁକି ଏକୁଟିଆ ଆସୁଥିଲା ସେ ?

''ମୁଁ ତ ତଳପଟରୁ ପିଉଛି । ତୁମେ ତ ଉପର ପଟରେ ଅଛ ।'' ମାଆ ସବୁବେଳେ ସାତ ଭାଇ ଭଉଣୀ ଭିତରେ ତାକୁ ବୁଦ୍ଧିଆ କହୁଥିବା ତା'ର ମନେପଡ଼ିଗଲା ।

''ତୋତେ ଜଣାଅଛି ନା ନାହିଁ ? ଆଜି ନୁହେଁ, ଆରଜନ୍ମରେ ତୁ ପାଣି ଗୋଳିଆ କରି ପିଉଥିଲୁ । ମୋତେ ଟୋପେ ହେଲେ ସଫାପାଣି ପିଇବାକୁ ମିଳିନଥିଲା ।'' ଏଥର ଆକୃତିଟିକୁ ସ୍ପଷ୍ଟ ଦେଖିପାରିଲା ମେଣ୍ଢାଛୁଆଟି । ବାପ୍‌ରେ ବାପ୍ କି ଭୀଷଣାକାର — ଭାବିଲା ସିଏ ।

''ମାଆ କହୁଥିଲା, ମୁଁ ଆରଜନ୍ମରେ ଗୋଟେ ସୁନ୍ଦର ପ୍ରଜାପତି ହୋଇଥିଲି । ଆଉ ପ୍ରଜାପତିମାନେ ତ ପାଣି ପିଅନ୍ତି ନାହିଁ ।'' ଏକଦୃଷ୍ଟିରେ ସେଇ ଭୀଷଣାକାର ହେଟାବାଘକୁ ଚାହିଁ ଚାହିଁ କହିଲା ମେଣ୍ଢାଛୁଆଟି ।

—''ଶଳା, କେଡ଼େ ଚିକ୍‌କଣ ହେଇଛି ଦେଖ — ପୁଣି କେତେ ଯୁକ୍ତି କରୁଛି । ଧୋବ ଫରଫର ଦେହରୁ ଲହୁଣି ବୋହିପଡୁଛି ଖାଲି । ଶଳାର ଚମଡ଼ା ତଳ ମାଂସ କେମିତି

ନରମ ହେଇଥିବ''— ଲାଳ ଦୁଇଟୋପା ବୋହିପଡ଼ିଲା ବୁଢ଼ା ହେଟାବାଘର । ଦିନଥିଲା— ଏଇଠୁ ସେ କୁଦାଟାଏ ମାରିଲେ ପଲକରେ ଯାଇ ମେଣ୍ଢାଛୁଆ ଉପରେ ପଡ଼ିଥା'ନ୍ତା । ଏବେ କିନ୍ତୁ ଆଗପଟ ଡାହାଣ ଗୋଡ଼କୁ ବୋହିବାକୁ ପଡୁଛି । ସେ ଛତରା ଡାହାଳ କୁକୁର ଦଳକ କାମୁଡ଼ି ଛୋଟା କରିଦେଇଛନ୍ତି ।

''ଆରେ ଆରେ, ସେଇ ତୋ ମାଆ ତ ! ସେ ମେଣ୍ଢୀଟି ଭାରି ଚତୁରୀ ଥିଲା । ହଁ ସେଇ ତ ଆଉ ! ସେଇ ତ ପ୍ରତିଦିନ ମୋର ପାଣି ଗୋଳିଆ କରୁଥିଲା । ଶୋଷରେ ମୁଁ ଝୁରି ମରୁଥିଲି ।'' ଛୋଟେଇ ଛୋଟେଇ ପାଦେ ପାଦେ ଆଗଉଥିଲା ବୁଢ଼ାହେଟା । ଯେମିତି ହେଲେ ମେଣ୍ଢାଛୁଆଟିକୁ ସେ ପାଖରେ ପହଞ୍ଚିବା ପର୍ଯ୍ୟନ୍ତ ଅଟକାଇବାକୁ ହେବ । ''ହଁ ଶୁଣ, ସବୁଦିନେ ପାଣି ପିଉଥିଲା— କେତେ ବା ପାଣି ଥିଲା ସେତେବେଳେ— ଆଉ ମୁଁ ଥରେ ଧରିପକାଇବାରୁ ନେହୁରା ହୋଇ କହିଥିଲା — ମୋତେ ଛାଡ଼ିଦିଅ ମଉସା । ସାତଟା ଛୁଆ ପେଟରେ ଅଛନ୍ତି ମୋର । ସବୁଠାରୁ ଥୁକୁଲ୍‌ଥାକୁଲ୍ ଛୁଆକୁ ପଠାଇଦେବି ତୁମ ପାଖକୁ । ଆଉ ଛଅଟା ତ ବଞ୍ଚିଯିବେ ହେଲେ— ମୋତେ ମାର ନାହିଁ । ଆଉ ତୁ ହେଉଛୁ ତା'ର ସବୁଠାରୁ ସୁନ୍ଦର ଛୁଆ । କହ, ସତ ନା ନାହିଁ ?''

—ଆଃ ! ମାଆ ମୋର କେତେ କଷ୍ଟରେ ପଡ଼ି ଏତକ କଥା ଦେଇଥିବ ସେ ସତରେ ! ସବୁଛୁଆଙ୍କଠାରୁ ତାକୁ ତ ସେ ଅଧିକ ଭଲପାଏ । ପାଖରେ ବସାଇ ସୁଖ ଦୁଃଖ କହେ । ତା'ର ପ୍ରତିଶ୍ରୁତି ମୁଁ ନୁହେଁ ତ କିଏ ପୂରଣ କରିବ ଆଉ ? —ଉଷୁମ ଲୁହଧାର ଗଡ଼ିଆସିଲା ଆଖିରୁ ମେଣ୍ଢାଛୁଆଟିର ।

''ଏତେ ଭାବୁଛୁ କ'ଣ ? ଚାହୁଁଛୁ ଯଦି ଚାଲେ ପଚାରିବା ତୋ ମାଆକୁ ।'' ଆଉ ଦୁଇପାଦ ଛୋଟେଇ ଛୋଟେଇ ଆଗେଇ ଆସିଲା ବୁଢ଼ାହେଟା ।

''କ'ଣ ଆଉ ପଚାରିବି ? ମାଆ କହିଛି ଯେତେବେଳେ....'' ଆତ୍ମାହୁତି ଦେବାକୁ ଯାଉଥିବା ସହିଦପରି ସ୍ଥିର ନିଷ୍କମ୍ପ ସ୍ୱରରେ ଏତକ କହିଲା ମେଣ୍ଢାଛୁଆ । କହିସାରି ଛୋଟେଇ ଛୋଟେଇ ପାଖେଇ ଆସୁଥିବା ବୁଢ଼ାହେଟାକୁ ଥରେ ଦେଖିଦେଇ ଆଖିବୁଜି ଠିଆ ହୋଇଗଲା ସେ । ନରମ ଖରା ଓ ନରମ ପବନ ତା' ମାଆର ଉଷୁମ ପହ୍ଲାର ସ୍ପର୍ଶ ଓ ଉଷୁମ ଦୁଧର ବାସ୍ନା ବୋହି ଆଣୁଥିଲେ ତା' ପାଖକୁ । ଗତରାତିରେ ମାଆର ଉଷୁମ କୋଳରେ ମୁଣ୍ଡଗୁଞ୍ଜି ଶୋଇଥିବାର ଅଶେଷ ମୁହୂର୍ତ୍ତକ ତା'ର ମନେପଡ଼ିଯାଉଥିଲା । ବୁଢ଼ା ହେଟାବାଘ ଛୋଟେଇ ଛୋଟେଇ ତା' ପାଖରେ ପହଞ୍ଚିବା ମୁହୂର୍ତ୍ତକୁ ଅପେକ୍ଷା କରି ଆଖିବୁଜି ଠିଆହୋଇଥିଲା ମେଣ୍ଢାଛୁଆଟି । ମାଟି ଚାରିକଡ଼ର ଘାସ ବୁଢା ହେଟାର ତିନିଗୋଡ଼ର କ୍ରମାଗତ ଉତ୍ତେଜିତ ଆଘାତରେ ଥରିଉଠୁଥିଲେ । ସେଇ କମ୍ପନ ପାଦଦେଇ ମେଣ୍ଢାଛୁଆଟିର ସମଗ୍ର ଦେହ ଭିତରେ ସଂଚରି ଯାଉଥିଲା ।

—ମେଣ୍ଢାଛୁଆଟି ସେଇମିତି ଆଖିବୁଜି ଠିଆହୋଇଥିଲା ।

□□□

# ପଞ୍ଜୁରି

''ବଉଳ, ତୁ କହୁଛୁ ତ ?''

''ଏତେଦିନ ହେଲାଣି ଆସିଲୁଣି– ଫୋନ୍‌ଟେ ବି କରୁନୁ, ଆସୁନାହୁଁ ବି ।''

''କରିଥିଲୁ ? ମୋତେ ତ କେହି କହିନାହାନ୍ତି । ନାଇଁ ଲୋ, ମୁଁ କ'ଣ ଯାଇପାରିବି ? ପରେ କହିବି ତତେ । ଶୁଣ୍, ଯଦି ଫୋନ୍ କରୁ ବଉଳ ବୋଲି କହିବୁ ନାହିଁ, ପ୍ରିୟା ବୋଲି କହିବୁ, ବୁଝିଲୁ ? ୟାଙ୍କର ଭଉଣୀମାନେ ସବୁ କନ୍‌ଭେଣ୍ଟ୍‌ରୁ ପଢ଼ିଛନ୍ତି ତ, ବଉଳ ଫଉଳ ଗୋଟେ କ'ଣ, ଓଲ୍‌ଡ ଫ୍ୟାସନ୍‌ଡ୍ କହି ହସିବେ । ହଉ, ଦେଖ୍, ଘରକୁ ଆସିଲେ, କହିବୁ ନାହିଁ ମୁଁ ଡାକିଥିଲି ବୋଲି – କହିବୁ ନିଜେ ନିଜେ ଏମିତି ଆସିଛୁ ବୋଲି ।''

''ନା, ମୋ ଯିବା କଥା ଛାଡ଼ । ଶୁଣ୍, ସୋମବାର ସଂଧ୍ୟାରେ ଆସୁନୁ । ସେଦିନ ଘରେ କମ୍ ଲୋକ ଥିବେ ।''

''ନାଇଁ ନାଇଁ ଶନିବାର କି ରବିବାର ନୁହେଁ । ୟାଙ୍କର ଛୁଟି ତ । ତୁ ପ୍ଲିଜ୍ ସୋମବାର ସଂଧ୍ୟାରେ ଆସେ ।''

''ହଉ ମୁଁ ରହୁଛି । ବହୁତ ସମୟ ହୋଇଗଲାଣି । ଆସିବୁ ନିଶ୍ଚୟ । ବହୁତ କଥା ଅଛି କହିବାକୁ ।''

ଫୋନ୍ ରଖିଲା ବେଳକୁ ପ୍ରିୟା ମୁହଁରୁ ଝାଳ ବହିଆସୁଥିଲା । ଶାଢ଼ି କାନିରେ ସନ୍ତର୍ପଣରେ ମୁହଁ ପୋଛିଦେଲା ସେ । ବାରଣ୍ଡା ଦେଇ ଡାହାଣପଟ ରୁମ୍‌କୁ ଯାଉ ଯାଉ ସାମନା କାନ୍ଥରେ ବେସିନ୍ ଉପରେ ଲଗାଯାଇଥିବା ଦର୍ପଣରେ ମୁହଁ ଦେଖିବାକୁ ଗୋଟିଏ ସେକେଣ୍ଡ୍ ଅଟକିଗଲା ସେ । ପରମୁହୂର୍ତ୍ତରେ ସତର୍କ ହୋଇ ଚାରିଆଡ଼କୁ ଟିକିଏ ଚାହିଁଦେଲା– ତା'କୁ ଦର୍ପଣରେ ମୁହଁ ଦେଖୁଥିବାର କେହି ଦେଖୁନାହିଁ ତ ଆଉ ! ରୁମ୍ ଭିତରକୁ ପଶୁ ପଶୁ ତା'ର ଆଖି ଟେବୁଲ୍ ଉପର କର୍ଡଲେସ୍ ରିସିଭର୍‌ଆଡ଼କୁ ଚାଲିଗଲା । ଆରେ ରିସିଭର୍ ତ ନାହିଁ ସେଠାରେ ! ଧଡ଼୍‌କରି ପଡ଼ିଲା ତା ଛାତି । ତା'ହେଲେ କିଏ ନିଶ୍ଚୟ ଶୁଣୁଥିଲା ତା' କଥା । କିଏ ଆଉ ? ରୁବି କି ? ସେ ନିଶ୍ଚୟ ଏବେ ତାଙ୍କର ବ୍ଲୁ ନାଇଟିଟି ପିନ୍ଧି ଓଠରେ ତାଚ୍ଛଲ୍ୟର ହସ ଖେଳାଇ ଖେଳାଇ ଆସିଯିବେ.... ।

''କ'ଣ ଆଉ, ବଉଳ...''

ପୁଉଲି ଶୋଇଛି ଆରାମରେ । ବଡ଼ ମଶାରିଟା ପକାଇ ଦେଇଛି ପ୍ରିୟା ତା' ଚାରି କଡ଼ରେ । ମଶାରି ଟେକି ଭିତରେ ପଶିଲା ସେ । ପୁଉଲି ଚଦରଟା ପୂରା କାଢ଼ିଦେଇଛି

—ଆଉ ଟିକିଏ ଘୋଡ଼ାଇ ଦେବାକୁ ହେବ । ଟିକିଏ ବସିପଡ଼ିଲା ପ୍ରିୟା । ସମୀରଙ୍କ ବହିଥାକରୁ ଦୁଇଟା ବହି ବାହାରିଆସିଛି, ଟେବୁଲ ଉପରେ ଖୋଲାଇ ହୋଇ ପଡ଼ିଛି ।

ଉଠାଇଦେଇ ସଜାଡ଼ି ଦେବାକୁ ହେବ । ଏଇ ତ ସେ ବହିଟା ଉପରେ ରିସିଭର୍ ଥୁଆହୋଇଛି । ସମୀର ଗାଧୁଆଘରୁ ବାହାରି ରଖିଦେଇଛନ୍ତି ବୋଧହୁଏ । ସ୍ୱସ୍ତିର ନିଃଶ୍ୱାସ ବାହାରିଗଲା ଛାତି ଥରାଇ ପ୍ରିୟାର ।

ଭାରି ଖୁସି ଖୁସି ଲାଗୁଥିଲା ତାକୁ । ଏତେବର୍ଷ ପରେ ବଉଳ ଆସିଛି । ପ୍ରାୟ ଚାରିବର୍ଷ ହୋଇଗଲାଣି । ସେଇ ଯେ ଏମ୍.ଏ. ରେଜଲ୍‌ଟ ବାହାରିଲା ପରେ ଆମେରିକା ଯାଇଥିଲା ଆଉ ଏବେ ଫେରୁଛି । ପି.ଏଚ୍‌ଡ଼ି. ସରିଯାଇଛି ତା'ର । ସେଇଠି ଗୋଟିଏ ୟୁନିଭରସିଟିରେ ଆସିଷ୍ଟାଣ୍ଟ ପ୍ରଫେସର୍ ହୋଇଛି । ତା'ର ସହକର୍ମୀ ଜଣକୁ ବାଛିଛି ବାହାହେବା ପାଇଁ । ତା'ର ବାକ୍‌ଦତ୍ତ ହିମାଚଳ ପ୍ରଦେଶର— ତାଙ୍କର ବାପା ମାଆ ବହୁତ ବର୍ଷରୁ ଆମେରିକାରେ ଅଛନ୍ତି— ଡାକ୍ତର ଦମ୍ପତି ସେମାନେ । କେହି ଘରେ ନ ଥିଲାବେଳେ ପ୍ରିୟା ମାଉସୀଙ୍କୁ ଫୋନ୍ କରି ତା' ବଉଳ ବିଷୟରେ କଥାବାର୍ତ୍ତା ହୁଏ । ଚିଠିପତ୍ରର ଆଦାନ ପ୍ରଦାନ ବହୁତ ଦିନରୁ ବନ୍ଦହୋଇଗଲାଣି । ତା' ବାହାଘର ପରେ ପରେ ଦୁଇ ତିନିଥର ଚିଠି ଦେଇଥିଲା ବଉଳ— ପ୍ରିୟା ଉତ୍ତର ଦେଇପାରିନାହିଁ । କିନ୍ତୁ ବଉଳ ଆମେରିକା ଯିବାର ମାସକ ମଧ୍ୟରେହିଁ ବାହାଘର ଠିକ୍ ହୋଇଯାଇଥିଲା ତା'ର । ପ୍ରିୟାର ମନ ବଡ଼ ଖରାପ ହୋଇଗଲା । ଆଉ ମାସକ ପରେ ଆମେରିକା ଯାଇନଥାନ୍ତା ବଉଳ ! ସେ ମଧ୍ୟ ଅବଶୋଷ ସହ ଚିଠି ଲେଖିଥିଲା । ସେଇ ବଉଳ ତା'ର କାଲି ସଂଧ୍ୟାରେ ଫୋନ୍ କରିଥିଲା । ଘରେ ସମସ୍ତେ ଥିଲେ । ଅଳ୍ପ ଟିକିଏ ହଁ ନା ରେ କଥା ହୋଇ ଫୋନ୍ ରଖିଦେଇଥିଲା ପ୍ରିୟା । ଆଜି ସମସ୍ତେ ଯିଏ ଯୁଆଡ଼େ ଗଲାପରେହିଁ ତା' ସହ କଥା ହେବାକୁ ଭାବିଥିଲା ସେ । କିନ୍ତୁ ରୁବି ଏପର୍ଯ୍ୟନ୍ତ କଲେଜ୍ ଯାଇନଥିଲେ । ଆଉ କେତେ ଧୈର୍ଯ୍ୟଧରି ସଂଭାଳି ରହିପାରିଥା'ନ୍ତା ସିଏ ଫୋନ୍ ନ କରି ! ଯାହାହେଉ କେହି ଶୁଣିନାହାନ୍ତି— ସନ୍ତୋଷର ହସ ଖେଳିଗଲା ପ୍ରିୟାର ମୁହଁରେ ।

ଆଜି କିଛି ଭଲ ତରକାରି ରାନ୍ଧିବାକୁ ଇଚ୍ଛା ହେଉଥିଲା ତା'ର । ସେ ରାନ୍ଧିବାକୁ ଭଲ ପାଏ । ଚାକର ପିଲାଟିଏ ଅଛି, ବୋଲହାକ କରିବାକୁ— ପରିବା ଇତ୍ୟାଦି କିଣି ଆଣିବାକୁ । ମସଲା ବାଟିଦେବାକୁ ତେଲେଙ୍ଗାଣୀ ସ୍ତ୍ରୀଲୋକଟିଏ ଆସେ, ବାସନ ମାଜେ, ଘର ଓଳା ପୋଛା ଓ ଲୁଗା କଚାକଚି କରିଦିଏ । ତା'ର କାମ ଖାଲି ହେଲା ଘରର ସମସ୍ତଙ୍କ ପସନ୍ଦ ମୁତାବକ ରାନ୍ଧିବା । ତାକୁ ଏଇତକ କାମ କିଛି ବାଧେ ନାହିଁ । ଖୁସି ମନରେ ରୋଷେଇ ଘରକୁ ପଶିଲା ପ୍ରିୟା ।

ଏମିତି ସ୍ୱଚ୍ଛଳ ଘରଟିଏ ଦେଖି ବାପା ମାଆ ତା'ର ଖୁସିହୋଇଯାଇଥିଲେ । ଶ୍ୱଶୁର ସୁପରିଟେଣ୍ଡିଂ ଇଂଜିନିୟର୍ ଥିଲେ । ଇଏ ଗୋଟିଏ ପୁଅ— ବଡ଼, ତଳେ ଦୁଇଭଉଣୀ,

ଶାଶୁଙ୍କୁ ନେଇ ଏତକ ମାତ୍ର ସଂସାର । ବେଶି ଝଂଝାଳ ଦାୟିତ୍ୱ ନାହିଁ । ଶଶୁରଙ୍କ ଚାକିରି ଆହୁରି ଦୁଇବର୍ଷ ଅଛି । ବଡ଼ ନଣନ୍ଦଙ୍କ ବାହାଘର କେବେଠାରୁ ହୋଇଯାଇଛି । ସାନଙ୍କର ବୋଧହୁଏ ଏଇବର୍ଷ ଶେଷଆଡ଼କୁ ହେବ । କ'ଣ ଘରେ ସମସ୍ତେ କଥାବାର୍ତ୍ତା ହେଉଥିଲେ –ଅଳ୍ପ କିଛି କାନରେ ପଡ଼ିଥିଲା ତା'ର । ଏମିତି ପରିବାର ତାଙ୍କ ଝିଅକୁ ବୋହୂ କରି ନେଉଛନ୍ତି ବୋଲି ଭାରି ଖୁସିହୋଇଯାଇଥିଲେ ତା'ର ବାପା ମାଆ । ସିଏ ହୋମ୍ ସାଇନ୍ସରେ ଏମ୍.ଏ. ପରୀକ୍ଷା ଦେଉ ନ ଦେଉଣୁ ପ୍ରସ୍ତାବ ଆସିଥିଲା । ରେଜଲ୍ଟ ବାହାରିବା ପରେ ପରେ ବାହାଘର ହେଲା । ଶାଶୁ, ଶଶୁର ଅନେକ ଥର ଆସିଥିଲେ ଓ କେବଳ ସୁନାନାକୀ ଝିଅଟିକୁ ବୋହୂ କରିନେବୁ ବୋଲି ଅଡ଼ିବସିଥିଲେ– ଆଉ କିଛି ଦରକାର ନାହିଁ । ନିଜର ସୁନ୍ଦର ଚେହେରା ଯୋଗୁ ସାମାନ୍ୟ ଗର୍ବ ମଧ୍ୟ ଆସିଥିଲା ପ୍ରିୟାର । ଇଏ ତ ଚାରି ପାଞ୍ଚଥର ଆସିଥିବେ । ଜମାରୁ ରାଜି ହେଉ ନ ଥିଲା ପ୍ରିୟା ତାଙ୍କ ଆଗକୁ ଯିବାକୁ, କିନ୍ତୁ ମାଆ ଜବରଦସ୍ତି ପଠାଉଥିଲା । କିଛି ନା କିଛି ଉପହାର ତା' ପାଇଁ ଆଣୁଥିଲେ ଇଏ । କହୁଥିଲେ– ପ୍ରିୟା, ତୁମେ କେବଳ ମୋର ଦରକାର । ଏଇମାତ୍ର ଗୋଟିଏ ଶାଢ଼ି ପିନ୍ଧି ତୁମେ ଆମ ଘରକୁ ଆସିବ । ଭାରି ଭଲଲାଗୁଥିଲା ଏତକ କଥା ତାକୁ । ଏତେ ଗୁରୁତ୍ୱ ଯେ ତା'ର ପ୍ରାପ୍ୟ ଏକଥା ତାକୁ ବିହ୍ୱଳ, ଚକିତ କରିଦେଉଥିଲା । ତା'ର ଅଧ୍ୟାପକ ପିତା ତିନି ଭାଇ ଭଉଣୀଙ୍କୁ ଭଲରେ ବଢ଼ାଇଥିଲେ । ବିଳାସ ସାମଗ୍ରୀ ସହ ତା'ର ପରିଚୟ ନଥିଲା ସତ । କିନ୍ତୁ ଅଭାବ କ'ଣ ସେ ଜାଣିନଥିଲା । କିନ୍ତୁ କାଳେ ଅଧିକ ଯୌତୁକ ଦେବାକୁ ପଡ଼ିବ, ଏଇ ଭାବନାରେ ଶଙ୍କିତ ହେଉଥିଲେ ତା'ର ବାପା । ଶାଶୁ, ଶଶୁରଙ୍କ କଥାବାର୍ତ୍ତା ସାହସ ଓ ଆଶ୍ୱାସନା ଦେଇଥିଲା ତାଙ୍କୁ । ଶାଶୁ କହିଥିଲେ– କେବଳ ଭଲଲୁଗା କେତେଖଣ୍ଡ ଝିଅ ସାଥିରେ ଦେବେ ସମୁଦୀ, ବନ୍ଧୁବାନ୍ଧବଙ୍କୁ ବେଭାର ଦେବା । ଲିଷ୍ଟ ଆସିଥିଲା ଛୋଟ ବଡ଼ ହୋଇ ଶହେ ତେର ଜଣଙ୍କର ନାମ । ତା'ର ବାପା ହତୋତ୍ସାହ ହୋଇନଥିଲେ– ବଡ଼ଘର କଥା ତ । ଆଉ କୌଣସି ଜିନିଷ ଦେବାକୁ ପଡୁନଥିବାରୁ ବରଂ ସେ ଦ୍ୱିଗୁଣ ଉତ୍ସାହରେ ଶାଢ଼ି, ପ୍ୟାଣ୍ଟ୍, ସାର୍ଟ କନା, ସାଲଓ୍ୱାର ପଞ୍ଜାବୀ ଇତ୍ୟାଦି କିଣିବାରେ ଲାଗିଲେ । ସେ ମଧ୍ୟ ଅନେକଥର ବାପାଙ୍କ ପଛରେ ସ୍କୁଟରରେ ବସି ରଙ୍ଗ ବେରଙ୍ଗ ଲୁଗାପଟାର ମାର୍କେଟିଂ କରିଥିଲା । କିଣିଲାବେଳେ ଟିକିଏ କୁଣ୍ଠିତ ମଧ୍ୟ ହେଉଥିଲା ପ୍ରିୟା । ଏତେ ଧନୀ ପରିବାର – ଯଦି ଲୁଗାପଟା ପସନ୍ଦ ନ ହୁଏ ? ସିଏ ତ ନିଜେ ଅତି ସାଧାରଣ ଲୁଗା ପିନ୍ଧେ – ବଜାରରେ ବାହାରୁଥିବା ଅନେକ ଢଙ୍ଗର ଲୁଗାପଟା ବିଷୟରେ ତା'କୁ ଜଣାହିଁ ନ ଥାଏ । ଶେଷକୁ ବଡ଼ ଟ୍ରଙ୍କ୍‌ରେ ସବୁତକ ଯେତେବେଳେ ପ୍ୟାକ୍ ହେଲା, ପ୍ରିୟା ଆଖିବୁଜି ମିନିଟିଏ ମଙ୍ଗଳା ମାଆଙ୍କୁ ମନେପକାଇଲା – ମାଆ, ଯେମିତି ଏସବୁ ସେଠାରେ ପସନ୍ଦ ହେଉ । ଆଖି ଖୋଲିଲାବେଳେ ଦେଖିଥିଲା ଘର କୋଣରେ ଥିବା ଠାକୁର ଖଟୁଲିଙ୍କ ଆଗରେ ବୋଉ

ମୁଣ୍ଡିଆ ମାରୁଛି । ବୋଉ ବି କ'ଣ ଏଇ ଗୁହାରି କରୁଥିଲା କି ଜଗନ୍ନାଥଙ୍କ ଆଗରେ ? ହଠାତ୍ ଚମକ ଖେଳିଯାଇଥିଲା ପ୍ରିୟା ଭିତରେ ।

ଶଶୁରଙ୍କ ଘରର ଉପର ମହଲାରେ ରୁମ୍ ପରେ ରୁମ୍ ଟପି ତା'କୁ ଆଗେଇ ନିଆ ହୋଇଥିଲା ଗୋଟିଏ ଅପେକ୍ଷାକୃତ ବଡ଼ ରୁମ୍‌କୁ । ତା'ର ସ୍ୱାମୀ ମଧ୍ୟ ତା' ପଛେ ପଛେ ସେଇ ରୁମ୍‌ରେ ପଶିଲେ । ସାଥୀରେ ତା'ର ନଣନ୍ଦମାନେ ଓ ଶାଶୁ ।

''ଇଏ କି ବକ୍‌ସ ଆଣିଛ ? ଏମିତି ବକ୍‌ସ କ'ଣ ମୋ ଭଉଣୀମାନେ ବ୍ୟବହାର କରିବେ ? ଭଲ ଜିନିଷ ମିଳିଲା ନାହିଁ ?'' ତା'ର ସ୍ୱାମୀ ବିରକ୍ତ ହୋଇ କହିଉଠିଲେ । ବିବାହ ପରେ ତା' ଉଦ୍ଦେଶ୍ୟରେ ଇଏ ତାଙ୍କର ପ୍ରଥମ ସଂଭାଷଣ ଥିଲା । ଟିକିଏ ଅବାକ୍ ହୋଇ ସାମାନ୍ୟ ମୁଣ୍ଡ ଟେକିଥିଲା ପ୍ରିୟା । ମୁହଁ ଅଳ୍ପ ବୁଲାଇ ବକ୍‌ସ ଦୁଇଟିକୁ ଚାହିଁଲା । କୌଣସି ତ୍ରୁଟି ଦେଖିପାରୁ ନ ଥିବାରୁ ତାକୁ ଆହୁରି ନ୍ୟୂନ ଲାଗିଲା । ବୋଧହୁଏ ଠିକ୍ ହୋଇନାହିଁ, ସଂକୋଚରେ ଆଖି ତଳକୁ କରିନେଲା ପ୍ରିୟା ।

''ମୋ ମାଆପାଇଁ ବକ୍‌ସ କାହିଁ ? ତାଙ୍କପାଇଁ କେମିତି ଆଣିନାହଁ ? ସାଥିରେ ଦିଆଯାଏ— ଏତକ ଜଣାନାହିଁ ତୁମ ଘର ଲୋକଙ୍କୁ ? ମା, ମୁଁ କହୁନଥିଲି ଏସବୁ ଆଭିଜାତ୍ୟ ନଥିବା କଥା ବୋଲି ?''

ପୁନଶ୍ଚ ବିରକ୍ତ କଣ୍ଠ ଶୁଭିଲା ତା' ସ୍ୱାମୀଙ୍କର । ଏଥର ଆହୁରି ଅବାକ୍ ହେଲା ପ୍ରିୟା । କିନ୍ତୁ ମୁହଁ ଉଠାଇ ପାରିଲା ନାହିଁ । ସାମାନ୍ୟ ତଳକୁ ହୋଇଥିବା ମୁହଁ ତା'ର ଆହୁରି ପୋତି ହୋଇଗଲା । ଏଇ ସମୟରେ ପଶିଆସିଥିଲେ ତା'ର ଶଶୁରଘରର ଓ ଏବେଠାରୁ ତା'ର ନିଜ ଘରର ଆତ୍ମୀୟସ୍ୱଜନ ମହିଳାମାନେ – ବୋହୂ ମୁହଁ ଦେଖିବାପାଇଁ । କିଏ କେତେ କ'ଣ କହୁଥିଲେ; କ'ଣ କ'ଣ ଉପହାର ଦେଉ ବି ଥିଲେ । ତା'ର ବଡ଼ ନଣନ୍ଦ ପରଖି କରି ବ୍ୟାଗ୍‌ରେ ରଖୁଥିଲେ— ତା'ର କିଛି ଖିଆଲ ନାହିଁ । କାହିଁକି କେଜାଣି ବହୁତ ପୂର୍ବରୁ ଘଟିସାରିଥିବା କୌଣସି ବିଷାଦିତ ଘଟଣା ବାରମ୍ବାର ମନେପଡୁଥିଲା ତା'ର ।

ଆରେ, ଏସବୁ କଥା ଏବେ ମନେପକାଉଛି କାହିଁକି ସେ ? ଇଏ ତ ବହୁତ ଦିନ ତଳର କଥା । ଘରକରିଥିଲେ ତ ଏମିତି କେତେ ଛୋଟ ବଡ଼ କଥା ଭୁଲିଯିବାକୁ ହୁଏ । ଆଜି ତା'ପାଇଁ ଗୋଟିଏ ଖୁସିର ଦିନ । ପୁଣି ଟିକିଏ ହସିପକାଇଲା ପ୍ରିୟା ଓ ରୋଷାଇ ଘରକୁ ପଶିଲା ।

ଆଇଁଷ ସିଏ ଖାଏ ନାହିଁ ପିଲା ଦିନରୁ । ଏଠି କିନ୍ତୁ ସୋମବାର ଛଡ଼ା ଅନ୍ୟ ସବୁବାର ମାଛ ବା ମାଂସ ନ ହେଲେ ନ ଚଳେ । ଘରର ସମସ୍ତେ ଥରେ ଥରେ ତା'କୁ କହିଥିଲେ ଖାଇବାପାଇଁ । ଶାଶୂ କହିଥିଲେ— ଯେଉଁ ଘରକୁ ଯିବ ସେ ଘରର ଆଚାର ବ୍ୟବହାର ନେଇ ଚଳିବ ନା, ଏସବୁ କ'ଣ ? ସ୍ୱାମୀ ତ ଏକରକମ ବାଧ୍ୟ କରିଥିଲେ । ସେ କୌଣସି ପ୍ରକାର ଟିକେ ଟିକେ ଖାଉଥିଲା, କିନ୍ତୁ ପ୍ରାୟ ତା'ର ବାନ୍ତିହୋଇଯାଉଥିଲା । ପରେ ପରେ

ପୁଭଲି ପେଟରେ ରହିବା ପରେ କେହି ଆଉ ବାଧକରି ନ ଥିଲେ । ତେବେ ଆଜି ମାଛ ତରକାରିଟା ନିଶ୍ଚିତ ଭଲହୋଇଥିବ— ବହୁତ ଯତ୍ନରେ ରାନ୍ଧିଛି ସେ । ସମୀର ଲଞ୍ଚ୍ ଖୁସିରେ ଖାଉଥିଲା ପରି ଲାଗିଥିଲା ପ୍ରିୟାକୁ । ଶଶୁରଙ୍କ ପାଖକୁ ହଟ୍‌କେଶ୍‌ରେ ଖାଇବା ଚାଲିଗଲାଣି । ଶାଶୂ କିଟିପାର୍ଟିରେ ଯାଇଛନ୍ତି ଡେରିରେ ଫେରିବେ । ରୁବି ତ ଚାରିଟାବେଳେ ୟୁନିଭରସିଟିରୁ ଫେରି ଖାଆନ୍ତି । ପ୍ରିୟା ଅପେକ୍ଷା କରୁଥିଲା କେତେବେଳେ ସମୀର ଖାଇକରି ଉଠିବେ ଓ ରେଷ୍ଟ୍ ନେବାକୁ ବେଡ୍‌ରୁମ୍‌ରେ ପଶିବେ । ସେତେବେଳେ ହିଁ କଥାଟି କହିବ ସେ ।

''ଗୋଟିଏ ଖୁସି ଖବର କହିବାକୁ ଅଛି ତୁମକୁ ।'' ପ୍ରିୟା ଖଟ ପାଖକୁ ଲାଗିଆସିଲା ।

''କି ଖୁସି ଖବର ମ ? ଶୁଣ, ପଅରଦିନ ଅଭିଜିତ୍ ଓ ତା' ସ୍ତ୍ରୀ ଆସିଥିଲାବେଳେ ତୁମେ ଏମିତି କ'ଣ ବେଶଭୂଷା ହୋଇଥିଲ ?''

''କ'ଣ ହେଲା କି ? ମୁଁ ତ ନୂଆ ସିଲ୍‌କ ଶାଢ଼ିଟେ ପିନ୍ଧିଥିଲି । ମଇଳାମଇଳି ଘରେ ପିନ୍ଧିବାକୁ ମାଆ ମନାକରିଛନ୍ତି । ସଂଧ୍ୟାବେଳେ ସିଲ୍‌କ ଶାଢ଼ି ବଦଳାଇବାକୁ କହିଛନ୍ତି – କେତେବେଳେ କିଏ ପଶିଆସିବ ଘରକୁ.... ''

''ଶାଢ଼ି କିଏ ଦେଖୁଛି ?'' ସମୀରଙ୍କର ଅସହିଷ୍ଣୁ କଣ୍ଠ ପ୍ରିୟାର କଥା କାଟି ଉଚ୍ଚାରିତ ହେଲା, ''ଆଉ ବ୍ଲାଉଜ୍ ? ବ୍ଲାଉଜ୍ କଥା ଭାବିଛ ? ଡାହାଣ କାନ୍ଧରୁ ବ୍ଲାଉଜ୍ ଖସିଯାଇ, ବ୍ରା'ର ଷ୍ଟ୍ରାପ୍ ଦିଶୁଥିଲା । ସେଆଡ଼କୁ ନଜର ଥିଲା କି ମହାରାଣୀଙ୍କର ?''

ହଠାତ୍ ବଡ଼ ସଙ୍କୁଚିତ ଲାଗିଲା ପ୍ରିୟାକୁ— ''ଦିଶୁଥିଲା କି ? ମୁଁ ତ ଜାଣିନାହିଁ !''

''ସେଇଆ ତ ମୁଁ କହୁଛି । ଜାଣିନାହଁ କ'ଣ ? ସେ ଛତରା ଅଭିଜିତ୍ ତ ବାରବାର ସେଇଆଡ଼କୁ ଖାଇଗଲା ଆଖିରେ ଅନାଉଥାଏ,..ସତେ ଯେମିତି ଶଳାଟା ବ୍ରେସିଅର ଦେଖିନାହିଁ କେବେ ! ମୁଁ ବି ଏତେ ଥର ଚେତେଇଦେଲି । ସବୁଆଡ଼କୁ ନଜର ଥିଲେ ସିନା ହେବ । ସେମିତି ବୋକୀଙ୍କ ପରି ଗପ କରୁଥାଅ ।'' ଟିକିଏ ରହିଗଲେ ସମୀର – ''ଅଭିଜିତ୍‌ର ସ୍ତ୍ରୀ ମିତାକୁ ଦେଖୁନାହଁ, କେମିତି ଟିପ୍‌ଟପ୍, କୋଉଠି ହେଲେ ଟିକିଏ ବାରିଦେବାକୁ ନାହିଁ ।''

ସଂକୋଚ ଓ ଅଭିମାନରେ ଭାରିହୋଇଗଲା ପ୍ରିୟା । ସମୀର ଯେତେବେଳେ ମୁଚୁକି ମୁଚୁକି ହସି ମିତାକୁ ତା' ଫିଗର୍ ନେଇ ଥଟ୍ଟା କରୁଥା'ନ୍ତି ଓ ମିତା ହସି ହସି ଗଡ଼ିଯାଉଥାଏ, ସେତେବେଳେ ତାକୁ ଚୁପ୍ ହୋଇ ଚାହିଁ ରହିଥିବାର ଦେଖି ସମୀର କହିଥିଲେ, ''ଚାହିଁଛ କ'ଣ ? ଯାଅ, କୋଲ୍ଡ଼ ଡ୍ରିଂକ୍ ଓ କିଛି ସ୍ନାକ୍‌ସ ଆଣିବାକୁ ନଟିଆକୁ କୁହ ।'' ଚୁପ୍‌ଚାପ୍ ସେଠାରୁ ଉଠିଯାଇଥିଲା ପ୍ରିୟା । କୋହରେ ରୁନ୍ଧିହୋଇଯାଇଥିଲା କଣ୍ଠ ତା'ର । କିନ୍ତୁ କାହିଁ ସେ କଥା ତ ସେ ସମୀରକୁ ପଚାରି ପାରିଲା ନାହିଁ ? କାହିଁକି ପାରେନାହିଁ ସେ ? ସମୀର ଏମିତି କିଛି ଆକ୍ଷେପ କରୁଥିଲାବେଳେ କାହିଁକି ମୁହଁ ବାନ୍ଧିହୋଇଯାଏ ତା'ର ?

ଥାଉ, କିଛି ଦରକାର ନାହିଁ, ଯା'ଙ୍କୁ ବଉଳର ଆସିବା କଥା କହିବା । ପ୍ରିୟା ଝିଅକୁ ଉଠାଇନେଇ ଶୁଆଇବାକୁ ଲାଗିଲା ।

ସବୁଦିନ ପରି ସଂଧ୍ୟା ନଇଁଆସିଲା । ସମୀର ଅଫିସ୍‌ରୁ ଫେରି କ୍ଲବ୍‌କୁ ତାସ୍ ଖେଳିବାକୁ ଚାଲିଗଲେଣି । ତା'ପରେ ପରେ ଶାଶୂ ଓ ଶଶୁର ଗାଡ଼ିନେଇ ବାହାରିଗଲେ, କେଉଁଠି ଡିନର୍ ଇନ୍‌ଭିଟେସନ୍ ଅଛି । ତା'କୁ କାହିଁକି କେଜାଣି ଏକୁଟିଆ ସମୟ ସବୁ ଖୁବ୍ ଭଲଲାଗେ । ସେ ପୁଉଲିଟିକୁ ଧରି ଖେଳେ ଓ ତା'କୁ ବ୍ୟାଟ୍, ର୍‌ୟାଟ୍, କ୍ୟାଟ୍ ଆଦି ଶିଖାଏ । କେବେ କେମିତି ବହିଟିଏ ଧରି ବସିପଡ଼େ । ଆଜି ତା'କୁ ସୁବିଧା ଅଛି, ସେ ବଉଳକୁ ଆଉଥରେ ଫୋନ୍ କରି ପଦେ ଦୁଇପଦ କଥା ହେବ । ବେଡ୍‌ରୁମ୍ ଆଡ଼କୁ ଯାଉ ଯାଉ ଅଟକିଗଲା ପ୍ରିୟା ।

''ନାଇଁ, ଆଜି ନୁହେଁ, କାଲି ସୁବିଧା ହେବ । ହଁ, ଫାଷ୍ଟ୍ ଶୋ । ତୁମେ ମଦନ ସାହୁ ଛକରେ ଗାଡ଼ି ରଖିଥିବ । ମୁଁ ରିକ୍‌ସାରେ ସେଇଠି ଓହ୍ଲାଇବି । ଶୁଣ, ଟିକିଏ ଆଗରୁ ଆସିବ । ସେଠି ଏକୁଟିଆ ଠିଆହେବା ବଡ଼ ବୋରିଂ... ।''

ପ୍ରିୟା ଭିତରକୁ ପଶିଗଲା । ରୁବି ଧଡ୍‌କରି ଫୋନ୍ ରଖିଦେଲେ । ମୁହଁ ଝାଳୁଆ ହୋଇଯାଇଥାଏ ତାଙ୍କର ।

''କ'ଣ କି ରୁବି ? କାହା ଫୋନ୍ ଥିଲା ?''

''ନାଇଁ ମ ଭାଉଜ, କାହାର ସେମିତି ନୁହେଁ ।''

''କାହାର ନୁହେଁ କ'ଣ ? ରୁହ, ଭାଇଙ୍କୁ କହୁଛି ଆଜି ।''

''କ'ଣ କହିବ ଭାଇଙ୍କୁ, ଯାଉନ କହିବ । ମୋର ଯେମିତି କିଛି ନାହିଁ ତୁମ ବିଷୟରେ କହିବାକୁ । ତୁମେ କହିକରି ଦେଖ ମୁଁ କ'ଣ କରୁଛି । ଚୁପ୍‌ଚାପ୍ ମଣିଷଙ୍କ ବେଶି ଗୁମର, ବୁଝିଲ ?''

ଚମକିପଡ଼ିଲା ପ୍ରିୟା । କ'ଣ ତା' ବିଷୟରେ ଜାଣିଛି ରୁବି ? କ'ଣ କ'ଣ ସେ ତା' ଭାଇଙ୍କୁ କହିଦେବ ବୋଲି କହୁଛି ? କ'ଣ ସବୁ ଭୁଲ ସେ କେବେ କେବେ କରିଥିଲା ? ସେଇମିତି ଠିଆହୋଇ ମନେପକାଇବାକୁ ଚେଷ୍ଟା କଲା ପ୍ରିୟା । ସେଦିନ ଚନ୍ଦ୍ରମାକୁ ତା'ର ପୁରୁଣା ଲୁଗାଟିଏ ସେ ଦେଇଦେଇଥିଲା, କେହି ଦେଖିନାହାନ୍ତି ଭାବି । ରୁବି କିନ୍ତୁ ଦେଖିଦେଇଥିଲେ ବୋଧହୁଏ । ବୋଉ ପାଖକୁ କେବେ କେମିତି ଫୋନ୍ କଲାବେଳେ ରୁବିଙ୍କ ହାତରେ ସେ ଧରାପଡ଼ିଛି । ସମୀରଙ୍କୁ କେବେ କେମିତି ମାଗି ବହୁତ ଦିନରୁ ସାଇତି ରଖିଥିବା ଟଙ୍କାରୁ ପାଞ୍ଚ ଶହ ସେ ସାନଭାଇକୁ ଗତ ପୂଜାରେ ପ୍ୟାଣ୍ଟ୍‌ସାର୍ଟ କରିବାପାଇଁ ଦେଉଥିଲାବେଳେ ରୁବି ସେ ଘରକୁ ପଶିଆସିଥିଲେ, ନଜାଣିଲାପରି କିଛି ଗୋଟାଏ ମାଗିନେଇ ଚାଲିଗଲେ । ଏଇମିତି କେତେ କ'ଣ ଛୋଟ ବଡ଼ କଥା ଗୋଟି ଗୋଟି କରି ମନେପଡ଼ିଗଲା ପ୍ରିୟାର ।

କିନ୍ତୁ ଡେରି ରାତିରେ ସାମାନ୍ୟ ମାତାଲ ହୋଇ ଫେରିଥିବା ସମୀରଙ୍କୁ କିଛି କହିବାର ସ୍ପୃହାହିଁ ନଥିଲା ପ୍ରିୟାର ।

ରୁବି ବୋଧହୁଏ ଜାଣିଥିଲେ ତାଙ୍କର ଏଇ ଶାନ୍ତଶିଷ୍ଟ ଭାଉଜ ଏସବୁ ନେଇ ଚର୍ଚ୍ଚା କରିବାର ସ୍ପର୍ଦ୍ଧା କରିବେ ନାହିଁ ।

ରବିବାର ସକାଳୁ ସମସ୍ତେ ଡେରିରେ ଉଠନ୍ତି । ଅଳସ, ଆନନ୍ଦ, କର୍ମହୀନ ସକାଳ ଇଏ ସମସ୍ତଙ୍କପାଇଁ । ପ୍ରିୟା କିନ୍ତୁ ତା'ର ଚଞ୍ଚଳ ଉଠିବାରେ ବ୍ୟତିକ୍ରମ କରେ ନାହିଁ । ଛୁଟିଦିନ ହୋଇଥିବାରୁ ସ୍ୱତନ୍ତ୍ର ଜଳଖିଆ ତିଆରି କରିବାକୁ ସେ ଇଚ୍ଛା କରିଥାଏ ପ୍ରାୟ । ଦୁଇ ତିନି ପ୍ରକାର ତିଆରି କରେ– ପ୍ରାୟ ସମସ୍ତଙ୍କର ପ୍ରିୟ ଖାଦ୍ୟ । ଆଜି ସକାଳୁ କାହିଁକି ସେଇସବୁ ଜଳଖିଆ ତିଆରି କରିବାକୁ ଇଚ୍ଛା ହେଲାନାହିଁ ତା'ର । ପ୍ରେସର୍ କୁକର୍‌ରେ ମଟର ତରକାରି ବସାଇଦେଇ ସେ ନଟିଆକୁ ପଠାଇଦେଲା ପାଖ ଗୁଡ଼ିଆ ଦୋକାନରୁ ଗରମ ବରା, ପିଆଜି ଓ ଜଲେବି ଆଣିବାପାଇଁ । ଘରଖର୍ଚ୍ଚପାଇଁ ପଇସା ଓ ହିସାବ ଶାଶୂ ରଖନ୍ତି, ସେଥିପାଇଁ ବାକିରେ ଆଣିବାକୁ କହିଦେଲା । ସମସ୍ତେ ଉଠିଲାବେଳକୁ ସେ ଡାଇନିଂ ଟେବୁଲ୍ ସଜାଇଦେଇଥିଲା । ପ୍ରଥମ କ୍ୟାସେରୋଲ୍ ଖୋଲି ଜଲେବି ଦେଖିଲେ ଶାଶୂ ଓ ମୁହଁର ରେଖା ଟିକିଏ କଠିନ ହୋଇଗଲା ତାଙ୍କର । ଦ୍ୱିତୀୟ ବଡ଼ କ୍ୟାସେରୋଲ୍‌ରେ ବରା ଓ ପିଆଜି ଦେଖି ରୀତିମତ ବିରକ୍ତ ହୋଇଗଲେ ।

"ଏସବୁ ଆସିଲା କୁଆଡୁ ? ନିଜେ ତ ତିଆରି କରିନାହଁ ବୋଧେ ?"

ପ୍ରିୟା ନିରୁତ୍ତର ରହିଲା ।

"ଦୋକାନରୁ ମଗେଇଦେଲ ? ଜାଣନାହିଁ କି ବାଜେ ତେଲରେ କରୁଛନ୍ତି ଏସବୁ ? ଘରୁ ଏତେ ପଇସା ଦିଆହୋଇ ସେ କୋଲେଷ୍ଟରଲ୍ 'ସ୍ୱୀକାର' ଆସୁଛି କାହିଁକି ? ଖାଇବାକୁ ମନହେଲା ତ ଟିକିଏ ବିରି, ବୁଟ ରାତିରେ ବତୁରାଇ ଦେଇଥା'ନ୍ତ, ସକାଳୁ ମିକ୍‌ସିରେ ବାଟି ଦୁଇଟା ଛାଣିଦେଇଥା'ନ୍ତ । ବଜାର ଜିନିଷ ଖାଇବ କିଏ ?" କ୍ୟାସେରୋଲ୍‌ର ଖୋଳ ବନ୍ଦ କରିଦେଲେ ସେ ।

"ନଟିଆ, ଏସବୁ ଉଠା ଏଠୁ– ସକାଳୁ ସକାଳୁ ଯେତକ.... ଯାହା ଖାଇବୁ ଖାଆ, ଚନ୍ଦ୍ରମାକୁ ଦେ, ବାକିତକ ଡଷ୍ଟବିନ୍‌ରେ ପକେଇଦେ ।" ମୁହଁବୁଲାଇ ଚାହିଁଲେ ପ୍ରିୟାଆଡ଼େ, "ହଁ, ତୁମେ ଯାହା ଖାଇବ ରଖ ଏଥିରୁ । ଆମମାନଙ୍କ ପାଇଁ କିଛି ଉପମା କରିଦିଅ ଚଞ୍ଚଳ । ଭୋକ ହେଲାଣି ସମସ୍ତଙ୍କୁ ।"

ରବିବାର ଅନ୍ୟମାନଙ୍କୁ କାହିଁକି ଏତେ ଆନନ୍ଦ ଦିଏ ସେ ଜାଣିପାରେନାହିଁ । ତା' ପାଇଁ କିନ୍ତୁ ଏଇ ଦିନଟି ଅନ୍ୟଦିନମାନଙ୍କଠାରୁ ଲମ୍ବା । ଅନ୍ୟ ସବୁଦିନର ଅଖଣ୍ଡ ନିଜସ୍ୱ ନିରବ ସମୟ ତା'ର ଏଇଦିନ ବାରମ୍ବାର ଅନୁପ୍ରବେଶରେ ବିଭାଜିତ ହୁଏ । ତା'କୁ ବ୍ୟସ୍ତ ଲାଗେ, ତ୍ରସ୍ତ ମଧ୍ୟ ଲାଗେ । କେମିତି ରୋଷେଇ ସାରି ସେ ପୁଉଲି ପାଖକୁ

ଚାଲିଯିବ, ସେଇ ସୁଯୋଗ ଅପେକ୍ଷାରେ ଥାଏ । ବେଡ୍‌ରୁମ୍‌ରେ ପୁତ୍ତଳିକୁ ନେଇ ଦୁଇ ତିନି ଘଣ୍ଟା ରହିଯାଏ ସିଏ, ପୁତ୍ତଳିକୁ ଖେଳାଇବା, ଖୁଆଇବା ଇତ୍ୟାଦିରେ ବ୍ୟସ୍ତ ରହେ । କେବେ କେମିତି ପୂରା ପରିବାର ସହ ସେ କେଉଁ ବନ୍ଧୁଘରକୁ ବା କେଉଁ ବାହାଘର ଭୋଜିରେ ଯାଏ । ଅନେକ ସମୟରେ ଶଶୁରଙ୍କ ବନ୍ଧୁବାନ୍ଧବଙ୍କୁ ଡିନରପାଇଁ ନିମନ୍ତ୍ରଣ କରାଯାଇଥାଏ । ସେଥିରେ ମଧ୍ୟ ବ୍ୟସ୍ତ ରହି ସମୟ କଟିଯାଏ ପ୍ରିୟାର ।

ସୋମବାର ଦିନ ଦଶଟା– ଯିଏ ଯୁଆଡ଼େ କାମରେ ସକାଳୁ ଗଲେଣି । ପୁତ୍ତଳି ମଧ୍ୟ ବୋତଲେ ଦୁଧପିଇ ଶୋଇଯାଇଛି । ବେଡ୍‌ରୁମ୍ ଝରକା ଭଲକରି ଖୋଲି ପରଦା ଆଡ଼େଇଦେଲା ପ୍ରିୟା । ଏକୁଟିଆବେଳେ ସେ ଏଇଠି ବସିପଡ଼େ, ବେଡ୍‌ରୁମ୍ ଝରକାରୁ ତା' ପୃଥିବୀକୁ ନିରେଖୁଥାଏ – ପଚିଶ ଗଜ ଦୂରର ଲୁହାଗେଟ୍ ଭିତରର ଲନ୍, ବିଭିନ୍ନ ଜାତିର ଫୁଲ ଗଛରେ ଭରା ବଗିଚା । ଦିନ ପରେ ଦିନ ଏଇତକ ଦେଖି ସେ ପ୍ରାୟ ମନେରଖିଦେଇଥାଏ, କୋଉ କୋଣରେ ବେଗନ୍‌ଭାଲିଆ, କୋଉଠି ଗ୍ଲାଡିଓଲି, କେଉଁଠି କସ୍‌ମସ୍ ଇତ୍ୟାଦି । କେଉଁ ଗଛରେ ନୂଆ ପତ୍ର କଅଁଳିଲା ଓ କେଉଁଠି କଢ଼ଟିଏ ବାହାରିଲା, କେଉଁଠି ଫୁଲଟି ଫୁଟିବ ଫୁଟିବ ହେଉଛି । ବଗିଚା ଭିତରକୁ ଯିବା ଦରକାର ହୁଏ ନାହିଁ ତା'ର । ବଗିଚାକୁ ଘେରିଥିବା ଆଠ ଫୁଟର ପାଚେରି ଓ ଅଳ୍ପ ରଙ୍ଗଛଡ଼ା ଲୁହାଗେଟ୍‌ର ଆରପଟକୁ ଚାହିଁବା ମଧ୍ୟ ଦରକାର ହୁଏନାହିଁ ତା'ର । ଏଇ ବେଡ୍‌ରୁମ୍‌ର ଝରକାରୁ ଦିଶୁଥିବା ତାଙ୍କ ଘରର ସୀମା ମଧ୍ୟରେ ଥିବା ବଗିଚାଟିର ଦୃଶ୍ୟ କେବଳ ତା'ପାଇଁ ଯଥେଷ୍ଟ । ଅଥଚ ସେ ଲୁହାଗେଟ୍‌ରେ ସମାନ୍ତରାଳ ଓ ଲମ୍ବ ଭାବରେ କେତେଗୁଡ଼ିଏ ଛଡ଼ ଲାଗିଛି ଓ କେଉଁଠି କେଉଁଠି ରଙ୍ଗ ଛାଡ଼ିଯାଇଛି, ଆଖିବୁଜି ମଧ୍ୟ କହିଦେଇ ପାରିବ ପ୍ରିୟା ।

ଆଜି ତା'ର ବଗିଚାର ଫୁଲ ପତ୍ରରେ ମନ ନାହିଁ । ଖଣ୍ଡ ଖଣ୍ଡ ହୋଇ ସ୍ମୃତି ଭାସି ବୁଲୁଛି ବଉଳର ଓ ତା'ର । ସ୍କୁଲରେ ପଢ଼ିବାବେଳେ, କଲେଜରେ ଏକାଠି କଟାଇଥିବା ଦିନ, ଆଦ୍ୟ ଯୌବନର ପରସ୍ପରକୁ ବିଶ୍ୱାସକରି କହିଥିବା ଯେତେକ ଫାଜିଲ୍ ଓ ହାସ୍ୟାସ୍ପଦ କଥାସବୁ ମନେପଡ଼ିଯାଉଛି । ସରୁ ହସଟିଏ ଲାଖିରହିଛି ପ୍ରିୟା ଓଠରେ ଆଜି ଦିନସାରା ।

କଲିଂବେଲ୍‌କୁ ଯେମିତି ଅପେକ୍ଷା କରିଥିଲା ପ୍ରିୟା !

''ମାଇଁ ଡାର୍ଲିଂ, ହ୍ୱାଟ୍ ଏ ସରପ୍ରାଇଜ୍ ! ତୁ ପୁଣି ଝିଅର ମାଆ ହୋଇଯାଇଛୁ ।'' ତା'ଠାରୁ ଅପେକ୍ଷାକୃତ ଲମ୍ବା ବଉଳ ଜୋର୍‌ରେ କୁଣ୍ଢାଇପକାଇଲା ତା'କୁ ଓ ସାମାନ୍ୟ ଟେକି ପକାଇଲା ମଧ୍ୟ– ପାଦ ମାଟିରୁ ଦୁଇ ଆଙ୍ଗୁଳି ଛାଡ଼ିଗଲା ପ୍ରିୟାର ବୋଧହୁଏ ।

''ରହ, ରହ, ଧୀରେ–ଧୀରେ କହ'' ଆପେ ପାଟି ପାଖକୁ ଆଙ୍ଗୁଳି ଚାଲିଗଲା ତା'ର ।

''ହ୍ୱାଇ, ବଟ୍ ହ୍ୱାଇ ? ଓଃ ମାଇଁ ଡିଅର୍ ।'' ଆଉଥରେ କୁଣ୍ଢାଇ ପକାଇଲା ତନୁଶ୍ରୀ ପ୍ରିୟାକୁ ।

''ନାଇଁ କିଛି ନାଇଁ ଯେ, ହଉ କହ ।''

''ଓଃ !'' ହସି ହସି ବସିପଡ଼ିଲା ଡ୍ରଇଂରୁମ୍ ସୋଫାରେ ତନୁଶ୍ରୀ । ''କ'ଣ ଏଇଠି ଏମିତି ବସାଇବୁ ନା ଭିତରକୁ ଯିବା ? କେତେକଥା ଯେ ଗପିବାକୁ ଅଛି !''

''ଭିତରକୁ ଯାଆନ୍ତେ ଯେ ଘର ଭାରି ମଇଳା ହୋଇ ପଡ଼ିଛି ।'' କୁଣ୍ଠିତ ଭାବରେ କହିଲା ପ୍ରିୟା ।

''ଠିକ୍ ଅଛି । ଆଉ କହ ତୋ ଖବର କ'ଣ ?''

''ମୋ ଖବର ତ ଏମିତି, ଦେଖୁଛୁ ଯେମିତି । ବରଂ ତୋ କଥା କହ ଶୁଣିବାକୁ ଭାରି ଇଚ୍ଛା ହେଉଛି ।'' ଉତ୍ସୁକତାର ସହ କହିଲା ପ୍ରିୟା ।

''ମୋ କଥା ଆଉ କ'ଣ ? ପାଠ - ପାଠ - ପାଠ, ଖାଲି ପଢ଼ା । ତୁ ତ କେତେ କଥା ଏକ୍ସପେରିଏନ୍ସ କଲୁଣି, ନୁହେଁ ?'' ଟିକିଏ ଦୁଷ୍ଟାମିର ହସହସି ଚାହିଁଲା ପ୍ରିୟାକୁ ତନୁଶ୍ରୀ ।

''ତୁ ଟିକିଏ ବି ବଦଳି ନାହୁଁ, ଅଧିକ ସଫା ଯାହା ହୋଇଯାଇଛୁ । ହେଲେ, କହ ନା ତୋ ହିମାଚଳ ପ୍ରଦେଶ ବାବୁଙ୍କ କଥା । ମାଉସୀ କେବେ ଡେଟ୍ ଠିକ୍ କଲେ ବାହାଘର ପାଇଁ ? ଆଉ ସବୁ କହ ତୁମ ବିଷୟରେ– ଜାଣିବାକୁ ଭାରି ଇଚ୍ଛା ହେଉଛି ।''

''ରାଜ କିରଣ୍ ତ – ହଁ'' ହସିଦେଲା ତନୁଶ୍ରୀ– ''ଭାରି ମନ ଥିଲା ତା'ର ମୋ ସହ ଆସିବାକୁ – ମୁଁ ମନାକଲି– କହିଲି ଏକାଥରେ ରିସେପ୍ସନ୍‌କୁ– କିଏ ମୋର ତା'କୁ ଏବେ ପିଠିରେ ପକାଇ ବୁଲିବ– ମୁଁ ଏତେଦିନ ପରେ ଆସିଛି । ମୋ ସହ ପି.ଏଚ୍‌ଡି. କରୁଥିଲା । ତିନି ବର୍ଷ ହେଲା ଜାଣେ ତା'କୁ । ଠିକ୍ ତ ଲାଗୁଛି । ଗତ ବର୍ଷେ ହେଲା ଏକାଠି ରହିଲୁଣି । ଭାରି ଅକ୍‌ୱାର୍ଡ୍ ଲାଗୁଥିଲା – କେମିତି ସେ ପଡ଼ିବ କେଜାଣି ? କିନ୍ତୁ ହି ହାଜ୍ କମ୍ ଆଉଟ୍ ଟୁ ବି ୱାଣ୍ଡରଫୁଲ୍ । ମୁଁ ତା'କୁ କହିଲି – ପ୍ରେମ ପ୍ରେମ କଥା ଛାଡ଼ । ସେକଥା ତ ବଡ଼ ସହଜ । ଘର କାମରେ ମୋତେ ହେଲ୍‌ପ କର– ତେବେ ଜଣାପଡ଼ିବ କ'ଣ କରିପାରିବ ତ ! ରୁଟିନ୍ ଏମିତି ଆମର– ଆଜି ମୁଁ ରାନ୍ଧିଲେ ଡିସ୍ ସେ କରିବ, ପରଦିନ ସେ ରାନ୍ଧିବ ଡିସ୍ ମୁଁ ଧୋଇଦେବି ।'' ଜୋର୍‌ରେ ହସିଉଠିଲା ତନୁଶ୍ରୀ । ''କ'ଣ କରିବି– ସଂସାର ତ କରିବାକୁ ହେବ । ଫଟୋ ଆଣିଛି ତା'ର । ଘରେ ରହିଗଲା । ତୋତେ କିନ୍ତୁ ଘରକୁ ଆସିବାକୁ ପଡ଼ିବ ଦେଖିବାପାଇଁ । ନହେଲେ ମୁଁ ରାଗିବି ଜାଣିଥା ।''

''ଯାଆନ୍ତି ଯେ....'' କିଛି ଶବ୍ଦକୁ କାନ ଡେରିଲା ପରି କହିଲା ପ୍ରିୟା ।

ସତକୁ ସତ ବାହାରୁ ପଶିଆସିଲେ ପ୍ରିୟାର ଶାଶୂ ଓ ଶଶୁର । କାନିକୁ ମୁଣ୍ଡ ଉପରେ ଗୁଡ଼ାଇଆଣି ଠିଆହୋଇଗଲା ପ୍ରିୟା ।

''ଇଏ ମାଆ, ତନୁଶ୍ରୀ । ଏବେ ଆମେରିକାରୁ ଆସିଛି ଚାରିବର୍ଷ ପରେ । ମୋର ପିଲାଦିନର ସାଙ୍ଗ ।''

''ଓଃ ! ଆମେରିକାରୁ ଆସିଛନ୍ତି । ଆମେରିକା ଭାରି ସୁନ୍ଦର ଜାଗା । ଆମର ବହୁତ ରିଲେସନ୍ ଅଛନ୍ତି ସେଠି । ଡାକୁଛନ୍ତି ସବୁବେଳେ ଯେ ଯାଇହେଉଛି କୋଉଠୁ ? ଏମିତି ବସେଇ ରଖିଛ ନା କିଛି ଖାଇବାକୁ ଦେଲଣି ?'' ଶାଶୂ ତା'ର ଅଟକିଯାଇ କହିଲେ ।

''ଆଣ୍ଟି, ପ୍ରିୟା ମୋ ଘରକୁ ଯିବ– ଦିନକପାଇଁ । ବହୁତ ଦିନରୁ ମନଖୋଲି କଥାବାର୍ତ୍ତା ହୋଇନାହୁଁ । ମୁଁ ଶନିବାର ଆସି ନିଜେ ନେଇଯିବି ଓ ରବିବାର ସଂଧ୍ୟାରେ ଛାଡ଼ିଯିବି । ହଁ, ତୋ କୁନି ଝିଅ କୁଆଡ଼େ ଗଲା ?'' ଛୋଟିଆ ଡଲ୍‌ଟିଏ ବାହାରକଲା ହ୍ୟାଣ୍ଡ୍‌ବ୍ୟାଗ୍‌ରୁ ତନୁଶ୍ରୀ ।

''ତାଙ୍କର ଯୁଆଡ଼େ ଇଚ୍ଛା ସେ ସିଆଡ଼େ ଯାଆନ୍ତି ଝିଅ, ମୁଁ କ'ଣ ତାଙ୍କୁ କେବେ ଅଟକାଇଛି ? ହଉ, ତୁମେମାନେ ଚା' ପିଅ ।''

ପ୍ରିୟାର ଶାଶୂ ଭିତରକୁ ଚାଲିଗଲେ । ସେ ସୋଫା ଉପରେ ବସିପଡ଼ିଲା ବେଳକୁ ପଚାରିଲା ତନୁଶ୍ରୀ– ''ବାଃ, ବଡ଼ ବ୍ରଡ୍ ମାଇଣ୍ଡେଡ୍ ଲୋକ ତ !''

ହଠାତ୍ କାହିଁକି କେଜାଣି ବଗିଚା ଆଗକୁ ଥିବା ଅଳ୍ପ ରଙ୍ଗ ଛାଡ଼ିଯାଇଥିବା ଲୁହାଗେଟ୍ ଗୋଟିଏ ସେକେଣ୍ଡପାଇଁ ନାଚିଗଲା ପ୍ରିୟାର ଆଖି ଆଗରେ ।

''ତୁ ବସ୍, ମୁଁ ଚା' ଆଣୁଛି । ନିମକି ତିଆରି କରିଛି ତୋ'ପାଇଁ, ତୁ ଭାରି ଭଲ ପାଉଥିଲୁ–'' କହି କହି ଭିତରକୁ ପଶିଗଲା ପ୍ରିୟା ।

ଚା' ପିଉ ପିଉ ହାତରେ କାଚ ପେପରୱେଟ୍‌ଟିଏ ନଚାଉଥିଲା ତନୁଶ୍ରୀ । ''ତୁ ଆ କେବେ ଆମେରିକା ତୋ ହଜ୍‌ବ୍ୟାଣ୍ଡ୍‌କୁ ନେଇ, ମୋ ପାଖରେ ରହିବୁ ।'' ତନୁଶ୍ରୀ ହାତରୁ ଗଡ଼ିଗଲା ପେପର୍‌ୱେଟ୍‌ଟି ତଳ ଚଟାଣରେ ଶବ୍ଦ କରି କରି.... ।

ମୀନା, ମୀନା, ମୀନା....

ଟିକିଏ କାନଡେରିଲା ପ୍ରିୟା, ଯେମିତି ଅଭ୍ୟାସବଶତଃ ।

ମୀନା, ମୀନା, ମୀନା.....

''ଇଏ କିଏ ରେ ? କାହା ପାଟି ଇଏ ? ତୋ ଝିଅର ତ ନୁହେଁ ?''

''ନାଇଁ, ଝିଅ ଶୋଇଛି । ଆ ଦେଖିବୁ ।'' ଭିତରକୁ ଟାଣିନେଲା ତନୁଶ୍ରୀକୁ ପ୍ରିୟା । ଡ୍ରଇଂରୁମ୍‌ର ପର୍ଦ୍ଦା ଆଡ଼େଇବା ମାତ୍ରେହିଁ ଦେଖାଗଲା ବାରଣ୍ଡାରେ ଉପର ଛାତରୁ ଲୁହାଚେନ୍‌ରେ ଝୁଲିଥିବା ପଞ୍ଜୁରିଟିଏ, ଭିତରେ ଚକ୍‌ଚକ୍ ସଫାସୁତୁରା ସବୁଜ ରଙ୍ଗର ଚିକ୍କଣ ଶୁଆଟିଏ !

''ଓ, କଥାକୁହା ଶୁଆ ! ବିଉଟିଫୁଲ୍ ।''

ମୀନା, ମୀନା, ମୀନା....

ଡେଣା ଫଡ଼ଫଡ଼ କରି ପଞ୍ଜୁରି ଭିତରେ ଏପଟ ସେପଟ ହେବାକୁ ଲାଗିଲା ଶୁଆଟି ଏମାନଙ୍କୁ ଦେଖି ।

''ଯେ ମୀନା କିଏ ?'' ତନୁଶ୍ରୀ ଚାହିଁଲା ପ୍ରିୟାକୁ ।

''କିଏ ଆଉ ? ମୁଁ ପରା ।''

''ତୁ, ପ୍ରିୟା ତୁ ? ତୁ କେମିତି ?''

''କେମିତି ଆଉ ?'' ସରୁ ହସଟେ ହସିଦେଲା ପ୍ରିୟା ।

ମୁଠା ମୁଠା ହୋଇ ଯେମିତି ବୁଣିହୋଇଗଲା ପିଲାଦିନର ଚପଳ, ଚଞ୍ଚଳ ଦୁଷ୍ଟାମିତକ କେଉଁଠୁ ଅନ୍ଧିସନ୍ଧିରୁ ବାହାରି ।

''ହଁ, କେମିତି କହ ?'' ତନୁଶ୍ରୀ ଆହୁରି ଆହୁରି ବିସ୍ମିତ ହେଉଥିଲା ।

''ତୁ ଜାଣୁ କ'ଣ ? ବାହାଘରବେଳେ ପରା 'ମୀନା' ନାଁ ଦିଆହୋଇଛି ମୋର । ଏମିତିରେ ପ୍ରିୟା ନାଁଟା ବଡ଼ ଅଡୁଆ ଲାଗୁଥିଲା ସମସ୍ତଙ୍କୁ – ବିଶେଷକରି ଶାଶୂ, ଶଶୁର କେମିତି ଡାକିଥା'ନ୍ତେ ପ୍ରିୟା ପ୍ରିୟା ବୋଲି ସବୁବେଳେ ।'' ଶାଢ଼ି କାନ୍ଧ ଉପରେ ଗୁଡ଼ାଇ ଆଣୁ ଆଣୁ କାନିର କଣରେ ଗଣ୍ଠିଟିଏ ପକାଉଥିଲା ପ୍ରିୟା ।

ମୁଠା ମୁଠା ହୋଇ ବୁଣିଯାଇଥିବା କୋଉ କାଳର ବୋଳ ଲାଗିଯାଇଥିବା ସେଇ ପୁରୁଣା ଜିନିଷତକ ଯେମିତି ଆଉଥରେ ଗଣ୍ଠି ପକାଇ ବାନ୍ଧିଦେଉଥିଲା ପ୍ରିୟା ପୁଣି ସେଇ ଅନ୍ଧିସନ୍ଧିକୁ ସବୁକାଳପାଇଁ ପଠାଇଦେବାକୁ ।

''ଝିଅକୁ ଦେଖିବୁ ପରା ? ରହ ତା'କୁ ଉଠାଇ ଆଣୁଛି ।'' ଚାଲିଯାଉଥିଲା ପ୍ରିୟା ।

''ନାଇଁ ନାଇଁ ଥାଉ, ଉଠାନା ।''

''ତେବେ ଆ ଭିତରକୁ, ଟିକିଏ ଦେଖିଦେବୁ ତ–''

''ନାଇଁ ଥାଉ, ଆଉ କେବେ । ଏଇ ଡଲ୍‌ଟି ତା'କୁ ଦେଇଦେବୁ ।'' ବାହାରକୁ ପାଦ ବଢ଼ାଇଲା ତନୁଶ୍ରୀ ଅନ୍ୟମନସ୍କ ଭାବରେ ।

''ଚାଲ୍, ତୋତେ ଗେଟ୍ ପର୍ଯ୍ୟନ୍ତ ଛାଡ଼ିଦେଇ ଆସିବି ।'' ପଛକୁ ଥରେ ମୁହଁ ବୁଲାଇ ଭିତରକୁ ଚାହିଁଦେଇ ତନୁଶ୍ରୀଆଡ଼କୁ ଆସିଲା ପ୍ରିୟା ।

ସେଇ ଅଳ୍ପ ରଙ୍ଗଛଡ଼ା ଲୁହାଗେଟ୍‌କୁ ଖୋଲିଦେଇ ତନୁଶ୍ରୀକୁ ବାଟ ଛାଡ଼ିଦେଲା ପ୍ରିୟା ।

''ବାଏ, ବଉଳ । ଆସିବୁ ଆଉଥରେ । ତୁ ଫୋନ୍ କରିବୁ ନାହିଁ, ମୁଁ କରିବି ।''

''ବାଏ'' ତନୁଶ୍ରୀ ମୁହଁବୁଲାଇ ପାଦବଢ଼ାଇ ସାରିଥିଲା ଆଗକୁ ।

ଅଳ୍ପ ରଙ୍ଗ ଛାଡ଼ିଯାଇଥିବା ଲୁହାଗେଟ୍‌କୁ ବନ୍ଦ କରି ଭିତରପଟୁ ତା'କୁ ଚାହିଁ ରହିଥିଲା ପ୍ରିୟା ।

ଅନ୍ଧିସନ୍ଧିକୁ ପଠାଇଦେଇଥିବା ସେଇ ପୁରୁଣା ଚଞ୍ଚଳିଆ ଜିନିଷତକ ଯେମିତି ସରୁ ପାଦଚଲା ରାସ୍ତା ଦେଇ ସବୁଦିନପାଇଁ ତା' ଆଖି ଆଗରୁ ଅଦୃଶ୍ୟ ହେବାକୁ ଯାଉଥିଲା ।

□□□

# ଭିନ୍ନ କିଛି ବାସ୍ତବତା

ସାମାନ୍ୟ ବିବ୍ରତ ବୋଧକଲେ, ଦୁଇ ଭ୍ରୂଲତା ମଝିରୁ ସିଧାଭାବରେ ଉଠି କେଶରାଶି ଭିତରେ ଅଦୃଶ୍ୟ ହୋଇଗଲାପରି ଯେଉଁ ଶିରାଟି ତା'ର କପାଳ ଉପରେ ଫୁଟିଉଠେ, ତା' କୁଆଡ଼େ ଅନନ୍ୟ ବୁଦ୍ଧିମତ୍ତାର ଲକ୍ଷଣ । କିଛି ଅନ୍ୟମନସ୍କତାସହ ମଝିଆଙ୍ଗୁଠିର ନଖ କାମୁଡୁ କାମୁଡୁ ଆଖି ଦୁଇଟି ତା'ର ଅଧା ବୁଜିହୋଇଆସେ, ସେ କୁଆଡ଼େ ଏଇ ଜଗତରୁ ଆଉ କୋଉଠିକୁ ଚାଲିଯାଏ, ଆଖିର ତଳ ଉପର ପତା ଦୁଇଟି ସତେ ଯେମିତି ମିଶିଯାଉଥା'ନ୍ତି – ଭାରି ଗୋଟାଏ ଭାବୁକ ଭାବୁକ ଲାଗେ ସିଏ ! ପ୍ରତିଥର କଥା ଆରମ୍ଭ କରିବା ଆଗରୁ ଈଷତ୍ ଗୋଲାପୀ ତା'ର ଓଠ ଦୁଇଟି ଧୀରେ ଧୀରେ ଥରିଉଠନ୍ତି– ଓ ! ତା'ର କମ୍ପନ ଥରେ ଦେଖିଛି ଯିଏ, କେବେହେଲେ ଭୁଲିପାରିବ ନାହିଁ କୁଆଡ଼େ ! ମୋଟାମୋଟି ତା'ର କଥାବାର୍ତ୍ତା, ଚାଲିଚଳଣରୁ କୁଆଡ଼େ ଏମିତି ବ୍ୟକ୍ତିତ୍ୱର ଆଭା ଫୁଟିଉଠେ ଯେ, କେହି ବି ତା'କୁ ମର୍ଯ୍ୟାଦା ନ ଦେଇ ରହିପାରିବନାହିଁ ।

ମିଛ, ମିଛ, ମିଛ– ମନକୁ ମନ ହସିପକାଇଲା ମଗ୍ନା । ଏସବୁ ଖାଲି ମନରଖା କଥା । ଏମିତି କିଛି ବୋଲି କିଛି ନାହିଁ ତା'ପାଖରେ । ଯଦି ସତରେ କିଛି ଥାଆନ୍ତା, ତେବେ ତା'କୁ କ'ଣ ଆଜିପର୍ଯ୍ୟନ୍ତ ଜଣା ନ ଥା'ନ୍ତା ନା କିଏ ହେଲେ ତା'କୁ ଏତକ ଜଣାଇ ନ ଥା'ନ୍ତେ ! ତା'କୁ ଖୁସି କରିବାପାଇଁ ନିଶ୍ଚୟ ଏତକ ଅତନୁର କୌଶଳ । କିନ୍ତୁ ଯାହା ବି ହେଉ ଶୁଣିବାକୁ କେତେ ଭଲଲାଗେ । ବ୍ୟକ୍ତିତ୍ୱ, ଭାବୁକତା, ମର୍ଯ୍ୟାଦା ଏତକ ଗୋଟିଏ ତା'ଭଳି ଅଠେଇଶ ବର୍ଷର ନାରୀ ପ୍ରତି କିଏ ଭଲା କାହିଁକି ପ୍ରୟୋଗ କରିବ ? ଏସବୁ ତ କୌଣସି ବଳିଷ୍ଠ ପୌରୁଷ ପ୍ରତି ଯୋଗ୍ୟ ବିଶେଷଣ ହୋଇପାରେ । ବୋଧହୁଏ ଏଇତକ ବିଶେଷଣ ଅତନୁ ପାଇଁହିଁ ପ୍ରଯୁଜ୍ୟ– ତା' ପାଇଁ ନୁହେଁ । କି ବୁଦ୍ଧିମତ୍ତା ବି ଦେଖାଇଛି ସେ ଏ ପର୍ଯ୍ୟନ୍ତ ! ଅତନୁ ଓ ତା'ର ସଂପର୍କ ବିଷୟ ନେଇ ସବୁଠାରୁ ଅନ୍ତରଙ୍ଗ ବାନ୍ଧବୀ ରୁବୀକୁ କିଛି କିଛି କହିଥିଲା ସେ । ରୁବୀ କହିଲା– "ତୁ ଗୋଟିଏ ମସ୍ତବଡ଼ ବୋକୀ ମଗ୍ନା । ବିବାହିତ ପୁରୁଷଟିକୁ ପ୍ରେମ କରି ଲାଭ କ'ଣ ? କ'ଣ ଭଲା ମିଳିବ ତୋତେ ସେଥିରୁ ? ନା ମିଳିବ ସାମାଜିକ ସ୍ୱୀକୃତି ନା ମିଳିବ ବାସ୍ତବିକ ସହଯୋଗ– ଖାଲି ଗୁଡ଼ାଏ ନିଜ ପର ଲୋକଙ୍କ ଭିତରେ ଅପବାଦ, ଦୁର୍ନାମହିଁ ପ୍ରାପ୍ୟ ହେବ ତୋର । ଏବେ ବି ସମୟ ଅଛି– ଅତନୁକୁ ଭୁଲିଯାଆ । ନିଜ ସହ ଘର ସଂସାର କରିପାରିଲା ପରି ମଣିଷଟିଏ ଖୋଜ– ଯାହା ହାତଧରି ମୁଣ୍ଡଟେକି ଚାଲିପାରିବୁ ।"

ମୁହଁ ତଳକୁ ପୋତି ଏତକ ଶୁଣିନେଲା ମଗ୍ନା । ଉତ୍ତର ଦେଲା ନାହିଁ — ଦେଇପାରିଲା ନାହିଁ । କ'ଣ ବା ଉତ୍ତର ଦେବ ସିଏ ? ଲାଭ, କ୍ଷତିର ବିଚାର ତ ସିଏ କରି ନ ଥିଲା । ଅତନୁ ସହ ପ୍ରଥମ ସାକ୍ଷାତ ହେଲାବଳେ ଭାବି ମଧ ପାରିନ ଥିଲା ସେ ଏଇ ଚଉତିରିଶ, ପଇଁତିରିଶ ବର୍ଷର ପଦସ୍ଥ ଅଫିସର ଜଣକୁ ସେ ଏମିତି ପ୍ରେମ କରିପାରିବ ଯେ ତା'କୁ ଲାଗିବ ଯେମିତି ପୃଥିବୀରେ ଆଉ କେଉଁଠି କିଛି ନାହିଁ ତା'ପାଇଁ । ପ୍ରକୃତରେ ଭଲ ପାଇବାକୁ କେମିତି ଗୋଟିଏ ଅଚିହ୍ନା, ଅଶୁଣା ଭାଷାକୋଷଗତ ଶବ୍ଦ ବୋଲି ଆଜିପର୍ଯ୍ୟନ୍ତ ଧରିଆସିଥିଲା ସିଏ— ଯାହାକୁ ସ୍ପର୍ଶ କରିହେବ ନାହିଁ, ଅନୁଭବ କରିହେବ ନାହିଁ; କିନ୍ତୁ ତା'କୁ ନେଇ ଅଯଥା ଗୁଡ଼ାଏ ଚର୍ଚ୍ଚା ଓ ବିସ୍ତୀର୍ଣ୍ଣତା — ବାସ୍ତବ ଜୀବନରେ ଯାହା କେବେହେଲେ ସମ୍ଭବ ହୁଏନାହିଁ । ଏମିତି ଏକ ସମ୍ୟକ୍ ବିଦ୍ରୂପାତ୍ମକ ଭାବ ତା'ର ଥିଲା 'ଭଲପାଇବା' ଶବ୍ଦ ପ୍ରତି । ଅଯଥା ଭାବପ୍ରବଣତାର ସ୍ରୋତ ଓ ଏକ ନିର୍ଦ୍ଦିଷ୍ଟ ବୟସର ଅହେତୁକ ନିୟାମକ ବୋଲି ଭାବି ମନଭିତରୁ ଏକପ୍ରକାର ଆଡ଼େଇ ଦେଇଥିଲା ଶବ୍ଦଟିକୁ ସେ । ଅଥଚ, ଏମିତି ପରିବର୍ତ୍ତନ ତା'ଭିତରେ ଆସିବାର ଥିଲା କି ? ଆଜିପର୍ଯ୍ୟନ୍ତ ସେ ଦେଖିଆସିଥିବା, ଭାବିଆସିଥିବା, ଭୋଗିଆସିଥିବା ପ୍ରତ୍ୟେକ ବସ୍ତୁ ବା ଭାବ ତା'କୁ ଅଲଗା ଅଲଗା ଲାଗୁଛି । ଲାଗୁଛି ଯେମିତି ଏସବୁ ଭିତରେ ଗୂଢ଼ ଭାବରେ, ଲୁକ୍କାୟିତ ଭାବରେ କିଛି ଅର୍ଥ ଥିଲା, କିଛି ନିର୍ଯ୍ୟାସ ଥିଲା, ଯାହା ସେସବୁର ପ୍ରକୃତାର୍ଥ ଓ ତା'କୁ ସେଭଳି ଗଭୀର ଭାବରେ ସେ ଉପଲବ୍ଧି କରିପାରୁ ନଥିଲା । କେବଳ ଉପରୁ ମାତ୍ର ସାଧାରଣ ଅର୍ଥରେ ଗ୍ରହଣ କରୁଥିଲା । କେମିତି ଏକ ସୁମଧୁର ସୁଗନ୍ଧି ଯେମିତି ଭାସିବୁଲୁଛି ତା'ର ଚତୁର୍ଦ୍ଦିଗରେ ! ସେ ସେଇ ବାସ୍ନାକୁ ଆଘ୍ରାଣ କରୁଛି— ଅତି ଆମୋଦକର ଅଥଚ ମୃଦୁ ସେଇ ବାସ୍ନା । କେଉଁ ଫୁଲର ସୁରଭି ସହ ତୁଳନା କରିବ ସେ ତା'କୁ ? ତା'ର ମନେପଡ଼ିବାପରି କୌଣସି ଫୁଲର ସୁଗନ୍ଧ ନୁହେଁ— କିନ୍ତୁ ଯେମିତି ଅତି ପରିଚିତ, ଅତି ସ୍ନିଗ୍ଧ ଓ ଅତି ଆତ୍ମୀୟ ଏଇ ସୁରଭି । କେଉଁଠୁ କେମିତି ଏଇ ବାସ୍ନା କେବେ ତା'ପାଖକୁ ଉଡ଼ିଆସିଥିଲା ଓ ହଜିଯାଇଥିଲା । ଏକ ଅଦ୍ଭୁତ ଆବେଶ ମଧ୍ୟରେ ବୁଡ଼ିରହୁଛି ମଗ୍ନା । ଏଇ ଆବେଶରୁ ଏକ ଅଦ୍ଭୁତ ପ୍ରେରଣା ମଧ ପାଉଛି ସେ । ସେଇ ପ୍ରେରଣା ବୋଧହୁଏ ବାଧ କରୁଛି ତା'କୁ ସମସ୍ତଙ୍କର ମଙ୍ଗଳ ମନାସିବାକୁ । କାହାକୁ କଷ୍ଟ ଦେଲାପରି ଶବ୍ଦଟିଏ ସେ ଆଉ ଉଚ୍ଚାରଣ କରିପାରୁନାହିଁ କି ଆଉ କାହାର କୌଣସି ପ୍ରକାର କଷ୍ଟ ଦେଖି ସେ ସହ୍ୟ କରିପାରୁନାହିଁ । ତା'କୁ ଆଶ୍ଚର୍ଯ୍ୟ ଲାଗୁଛି ଯେ ପୃଥିବୀରେ ଏତେ ମାଧୁର୍ଯ୍ୟ, ଏତେ ସୌନ୍ଦର୍ଯ୍ୟ ଓ ଏତେ ଉଲ୍ଲାସ ଥିଲା, ଅଥଚ ସେ କେତେ ଗତାନୁଗତିକ ଭାବରେ ଜୀବନ ଯାପନ କରିବାକୁ ବାଛିନେଇଥିଲା !

ହଁ, ଭଲପାଇବା ତା'କୁ ଭାବୁକତା, ଗଭୀରତା, ଆତ୍ମସଚେତନତା ଆଣିଦେଇଛି; ସମ୍ବେଦନଶୀଳ, ଦରଦୀ କରିପାରିଛି । କିନ୍ତୁ ରୁବୀପରି ବା ଅନେକ ପାର୍ଥିବ ଆଖିରେ

ପ୍ରକୃତରେ ତା'ର ଲାଭ ବା କ'ଣ ହୋଇଛି ? ପ୍ରକୃତପକ୍ଷେ ଲାଭ-କ୍ଷତିର ହିସାବ ଜୀବନର କେଉଁ ପର୍ଯ୍ୟାୟ ପର୍ଯ୍ୟନ୍ତ ସେ କରିପାରିଥା'ନ୍ତା ?

ଅଥଚ୍ କି ଆଶ୍ଚର୍ଯ୍ୟ ଯେ ଆଜିପର୍ଯ୍ୟନ୍ତ ସେ ତା'ର ବିତି ଚାଲିଥିବା ଜୀବନରେ କୌଣସି ଅପୂର୍ଣ୍ଣତା, ଅଭାବ ଲକ୍ଷ୍ୟ କରିପାରୁ ନଥିଲା । ବ୍ୟକ୍ତିତ୍ୱସଂପନ୍ନା, ବୁଦ୍ଧିମତୀ ଝିଅଟିଏ ବୋଲି ହୁଏତ ସମସ୍ତେ କହୁଥିଲେ ତା'କୁ । ପଢ଼ାପଢ଼ି କରୁଥିବା ଓ ଗମ୍ଭୀର ପ୍ରକୃତିର ଅର୍ଥନୀତି ଅଧ୍ୟାପିକା ଭାବରେ ହୁଏତ ତା'ର ଛାତ୍ରୀମାନେ ଜାଣିଥିଲେ ତା'କୁ । ରୁଚିସଂପନ୍ନା ଓ ପ୍ରକୃତ ବ୍ୟାବହାରିକ ଜ୍ଞାନ ଥିବା ନାରୀଟିଏ ବୋଲି ସଂଭ୍ରମ କରୁଥିଲେ ସହକର୍ମୀ, ସହକର୍ମିଣୀଗଣ । ବାହାହୋଇ ସଂସାର କରିବା ମୋର ଦରକାର ନାହିଁ ବୋଲି ଜିଦ୍ କରୁଥିବାରୁ ବାପା ମାଆ, ଭାଇ ଭାଉଜ ମଧ୍ୟ କିଛି ଆଉ କହୁନଥିଲେ ତା'କୁ । ଗୋଟିଏ ଝିଅ ବୋଲି ଏମିତିରେ ମଧ୍ୟ ତା'ର ମତାମତକୁ ଖାତିର କରୁଥିଲେ ସେମାନେ । ସେଥିପାଇଁ ବଦଳି ହେଲା ପରେ ଏଇ ଛୋଟ ସହରଟିର ମହିଳା କଲେଜ୍‌ରେ ଅଧ୍ୟାପିକା ଭାବରେ କାମ କରିବାପାଇଁ ଓ ଏକୁଟିଆ ଘରନେଇ ଜୀବନ ଆରମ୍ଭ କରିବାପାଇଁ ଜିଦ୍ କରିଥିଲା ସିଏ ।

ସେଦିନ ରିକ୍ସାଟିଏ ନେବାପାଇଁ କଲେଜ୍ ଗେଟ୍‌ରୁ ଚାଲିଚାଲି ରାସ୍ତା ଛକପର୍ଯ୍ୟନ୍ତ ଆସୁଥିଲା ସେ । ସାଙ୍ଗମାନେ ତା'କୁ ତାଗିଦା କରିଥା'ନ୍ତି ଏମିତି ସବୁବେଳେ ଅନ୍ୟମନସ୍କ ନ ହେବାପାଇଁ, ଅନ୍ତତଃ ରାସ୍ତାଉପରେ । ସଂଧ୍ୟା ହୋଇଆସିଲାଣି । ସେ ବୋଧହୁଏ ରାସ୍ତାର ଦୁଇପଟ ନଦେଖି ପାଦ ବଢ଼ାଇ ଦେଇଥିଲା । ଦୁଇ ତିନି ପାଦ ଯାଇଛି କି ନାହିଁ, ହର୍ଣ୍ଣ ସହ ଏକ ପ୍ରଚଣ୍ଡ ବ୍ରେକ୍ ଦେବାର ଶବ୍ଦ ହେଲା । ଧଡ଼୍‌କରି ହେଲା ଛାତି ତା'ର । ଆରେ, ଗାଡ଼ିଟା କେତେବେଳେ ବାଁ ପଟରୁ ଏତେ ପାଖରେ ଆସି ପହଞ୍ଚି ଯାଇଛି, ଅଥଚ ସେ ଜାଣିପାରି ନାହିଁ ! ଡ୍ରାଇଭର୍ ହୁଏତ ଏତେ ଜୋର୍‌ରେ ବ୍ରେକ୍ ଦେଇ ନ ଥିଲେ ନିଶ୍ଚୟ ଦୁର୍ଘଟଣା ଘଟିଥା'ନ୍ତା ଆଜି । ମୁହୂର୍ତ୍ତଟିଏ ମଧ୍ୟରେ ମଗ୍ନା ଛିଟିକିପଡ଼ି ରାସ୍ତାରେ ଲୋଟିଥା'ନ୍ତା ଓ ରକ୍ତର ବଳୟ ମଧ୍ୟରେ ଛଟପଟ ହେଉଥା'ନ୍ତା । ଲୋକବାକ ଗଦା ହୋଇଯାଇଥା'ନ୍ତେ । କିଏ ଜାଣେ ତା'କୁ ହସ୍‌ପିଟାଲ୍ ନେଇଥା'ନ୍ତେ କି ନାହିଁ— କିଏ ଜାଣେ କି ପ୍ରକାର ବିକଳାଙ୍ଗତା ଓ ଅକର୍ମଣ୍ୟତା ଭୋଗ କରିବାକୁ ପଡ଼ିଥାଆନ୍ତା ସାରା ଜୀବନପାଇଁ ତା'କୁ ! ଓଃ, ଈଶ୍ୱର ରକ୍ଷା କରିଦେଲେ ଆଜି । କିନ୍ତୁ କ'ଣ କୁହାଯିବ ତା'ର ଏଇ ଅନ୍ୟମନସ୍କପଣିଆକୁ ଆଉ ? ନିଜକୁ ନିଜେ ନିନ୍ଦୁଥିଲା ମଗ୍ନା । ଗାଡ଼ି ଭିତରୁ ଡ୍ରାଇଭର୍ ନୁହେଁ, ପଛସିଟ୍‌ରୁ ଭଦ୍ରଲୋକ ଜଣେ ବାହାରିଆସିଲେ । ବୋଧହୁଏ ଧଳାସାର୍ଟ ଓ ମାଟିଆ କଲର୍‌ର ପ୍ୟାଣ୍ଟ ପିନ୍ଧିଥା'ନ୍ତି ସେ, ମଗ୍ନା ଏତେ ଲକ୍ଷ୍ୟ କରିପାରିଲା ନାହିଁ । କିନ୍ତୁ ଆସନ୍ନ ସଂଧ୍ୟାକାଳରେ ଚଷମାତଳୁ ଅତନୁଙ୍କର ବ୍ୟସ୍ତ ବିବ୍ରତ ଦୃଷ୍ଟିକୁ ସେ ନିଶ୍ଚୟ ଲକ୍ଷ୍ୟକରିଥିଲା ।

''ସରି, ମ୍ୟାଡାମ୍, ଡ୍ରାଇଭର୍ ଚଳାଉଥିଲା ।''

''ନାଁ, ନାଁ, ଭୁଲ ମୋର । ମୁଁ ବାଁପଟ ରାସ୍ତାକୁ ଜମାରୁ ଚାହିଁ ନଥିଲି । ଖାଲି ରିକ୍ସାଟିଏ ଥିଲା ସେପଟେ ତ, ତେଣୁ ଚଞ୍ଚଳ ରାସ୍ତାପାରି ହୋଇ ଯିବି ବୋଲି ଭାବିଥିଲି ।'' ଶୀଘ୍ର ଶୀଘ୍ର ଅପ୍ରତିଭ ଭାବରେ କହିପକାଇଲା ମଗ୍ନା ।

''ଘରକୁ ଫେରୁଥିଲେ ବୋଧହୁଏ ? ଇଫ୍ ୟୁ ଡୋଣ୍ଟ୍ ମାଇଣ୍ଡ୍, ମୁଁ ଛାଡ଼ିଦେବି କି ?'' ଅତନୁ ଅଫର୍ କରିଥିଲେ ।

''ନାଇଁ, ନାଇଁ, ଏଇ ପାଖରେ ତ ଘର । ଗୋଟେ କିଲୋମିଟର୍ ଅତି ବେଶୀରେ ହେବ । ମୁଁ ରିକ୍ସା ନେଇନେବି ।'' ମଗ୍ନା ଆହୁରି ତରତର ହୋଇ କହିପକାଇଥିଲା ।

''ଆସନ୍ତୁ ନା, ମୁଁ ବି ତ ସେଇ ରାସ୍ତାରେ ଯିବି । ଆପଣଙ୍କୁ ଡ୍ରପ୍ କରିଦେବା କିଛି କଷ୍ଟକର କଥା ହେବ ନାହିଁ । ବାଇ ଦି ୱେ, ଆଇ ଆମ୍ ଅତନୁ ମହାନ୍ତି ।'' ଅତନୁଙ୍କ ସ୍ୱରରେ ବାଧ୍ୟବାଧକତା ନ ଥିଲା; କିନ୍ତୁ କେମିତି ଗୋଟାଏ ବନ୍ଧୁତ୍ୱପୂର୍ଣ୍ଣ ଅନୁରୋଧ ଥିଲା । ଏଡ଼ାଇ ଦେଲା ନାହିଁ ତା'କୁ ମଗ୍ନା । ଗୋଟିଏ କିଲୋମିଟର୍ ରାସ୍ତା ଭିତରେ ସେମାନେ ସାମାନ୍ୟ ପରିଚୟର ଆଦାନ ପ୍ରଦାନ କରିନେଇଥିଲେ । ଅତନୁ ମଧ୍ୟ ତା'ରି ପରି ନୂଆକରି ଏଇ ଛୋଟ ସହରକୁ ବଦଳି ହୋଇ ଆସିଥିଲେ, ଯଦିଓ ତା'ଠାରୁ ପାଞ୍ଚ ମାସ ପୂର୍ବରୁ ସେ ଏଠାକୁ ଆସିଥିଲେ । ଅତନୁଙ୍କର ଘର ଓ ଅଫିସ୍ ଅଞ୍ଚଳ ସେ ଜାଣିପାରିଲା, ଯଦିଓ ଏଇ ସହରର ରାସ୍ତାଘାଟ ବିଷୟରେ ସେ ସଂପୂର୍ଣ୍ଣ ଅଜ୍ଞ ଥିଲା । ଖାଲି ତା'ର ଫ୍ଲାଟ୍‌ରୁ ମାର୍କେଟ୍ ଓ ମାର୍କେଟ୍‌ରୁ କଲେଜ୍ ପର୍ଯ୍ୟନ୍ତହିଁ ତା'ର ପରିଚିତି ସୀମିତ ଥିଲା । ଥ୍ୟାଙ୍କ୍ ୟୁ, ନମସ୍କାର— କହି ସେ ଓହ୍ଲାଇ ଯାଇଥିଲା ଓ ଅତନୁକୁ ଘରକୁ ଡାକିବାର ଆବଶ୍ୟକତା ଜମାରୁ ଅନୁଭବ କରିନଥିଲା ।

ଦ୍ୱିତୀୟଥର ସେମାନଙ୍କର ସାକ୍ଷାତ ହୋଇଥିଲା କଲେଜ୍‌ର ବାର୍ଷିକୋତ୍ସବରେ । ସମଗ୍ର ପ୍ରୋଗ୍ରାମ୍‌ର ପରିଚାଳନା ଦାୟିତ୍ୱ ଥିଲା ମଗ୍ନା ଉପରେ । ଅତନୁଙ୍କୁ ମୁଖ୍ୟ ଅତିଥି ଭାବରେ ନିମନ୍ତ୍ରଣ କରାଯାଇଥିଲା । ଏହି ନିମନ୍ତ୍ରଣ ବିଷୟରେ ସେ ଜ୍ଞାତ ଥିଲା ଓ ସହଜ ଭାବରେ ଏଥିପାଇଁ ଖୁସି ମଧ୍ୟ ହୋଇଥିଲା । ଉତ୍ସବ ସଂଧ୍ୟାରେ ସେମାନେ ଅନେକ ସମୟ ଧରି ଷ୍ଟେଜ୍ ଉପରେ ଓ ଅଡ଼ିଏନ୍‌ସରେ ପାଖାପାଖି ବସିଥିଲେ ଓ ପରସ୍ପରକୁ ମତ ଆଦାନ ପ୍ରଦାନପାଇଁ ସୁଯୋଗ ଦେଇଥିଲେ । ଯା'ପରେ ଅନେକଥର ସେମାନେ ଫୋନ୍‌ରେ କଥା ହୋଇଥିଲେ ।

ଅତନୁ ଯେଉଁଦିନ ପ୍ରଥମ ଥର ପାଇଁ ତା' ଘରକୁ ଆସିଥିଲେ— ଓଃ — ସେଇ ଦିନର କେତୋଟି ମୁହୂର୍ତ୍ତକୁ କ'ଣ ସେ କେବେହେଲେ ଭୁଲିପାରିବ ? କେମିତି ବାଦଲଘେରା ସଂଧ୍ୟା ଥିଲା ସେଦିନ । ଏଇ ବର୍ଷିଯିବ ଯେପରି ଅପେକ୍ଷା କରୁଥିଲା ଆକାଶ । ଅନେକ ସମୟ ସେ ଓ ଅତନୁ ଚୁପ୍‌ଚାପ୍ ବସିଥିଲେ । ଏ ଭିତରେ ଦ୍ୱିତୀୟ କପ୍ କଫି ମାଗିକରି ପିଇଥିଲେ ଅତନୁ ।

''ଏମିତି ଗୋଟିଏ ଛୋଟ ସହରକୁ ପୋଷ୍ଟିଂ ହେଲା କେମିତି ଆପଣଙ୍କର ?''

'' ନ ହୋଇଥିଲେ ମୋର ତୁମ ସହ ଦେଖାହୋଇଥା'ନ୍ତା କେମିତି ?'' ଅତନୁ କ'ଣ ସତରେ ଏକଥା କହିଥିଲେ ? ତାଙ୍କୁ ମୁହଁ ଉଠାଇ ଚାହିଁପାରି ନଥିଲା ମଗ୍ନା । ଦୃଷ୍ଟି ତଳକୁ କରି ସେମିତି ବସିରହିଥିଲା ସେ ।

ସେମାନେ ବିତାଉଥିବା ଅମୂଲ୍ୟ ମୁହୂର୍ତ୍ତଗୁଡ଼ିକର ପର୍ଯ୍ୟାୟ ବୋଧହୁଏ ତାଙ୍କପାଇଁ ଆଉ ଗୋପନୀୟ ଓ ବ୍ୟକ୍ତିଗତ ହୋଇ ରହିପାରି ନଥିଲା । ପ୍ରାୟ ଗତାନୁଗତିକ ଓ କୌଣସି ଆକସ୍ମିକ ସ୍ପନ୍ଦନ ନଥିବା ଛୋଟ ସହରଟିପାଇଁ ଏହା ଅସାମାନ୍ୟ ଚର୍ଚ୍ଚାର ବିଷୟ ହୋଇପଡ଼ିଥିଲା । ସେଦିନ ଷ୍ଟାଫ୍ କମନ୍‌ରୁମ୍ ଭିତରକୁ ପଶୁଁ ପଶୁ ଉମା ଅପାଙ୍କ ସ୍ୱର ଶୁଣିପାରିଲା ମଗ୍ନା— ''ଏଇଟା ଦିଲ୍ଲୀ କି କଲିକତା ନୁହେଁ ମ— ସେଇଠି ସିନା କଫି ହାଉସ୍‌ରେ ଯଥେଚ୍ଛାଚାର ଚାଲେ । ୟା ସ୍ୱାମୀ ତା'ସ୍ତ୍ରୀ ସହିତ ସମୟ ବିତାଉଥାଏ । ହେଲେ ସ୍ୱପ୍ନବଳୟ ଭଳି ଛୋଟିଆ ହୋଟେଲ୍ ଭିତରେ ବି ଆଜିକାଲି ଏସବୁ ଆରମ୍ଭ ହେଲାଣି । ଏଥିରୁ ଆମ ଷ୍ଟୁଡେଣ୍ଟ୍‌ମାନେ କ'ଣ ଶିଖିବେ ଭଗବାନ ଜାଣନ୍ତି । ଏଇ ଝିଅମାନଙ୍କ ବାପମାଆ ପୁଣି ଆମ ଉପରେ ତାଙ୍କ ଚରିତ୍ର ଗଢ଼ିବାର ଦାୟିତ୍ୱ ଦେଇଛନ୍ତି ! ଛି ! ଛି ! ଛି !''

କାନ, ମୁହଁ ଲାଲ୍‌ହୋଇଗଲା ମଗ୍ନାର । ବସିବ କ'ଣ ସେ, ବ୍ୟାଗ୍ ବହିତକ ଉଠାଇ ଘଣ୍ଟାଆଡ଼କୁ ଚାହିଁ କୌଣସିମତେ କମନ୍‌ରୁମ୍‌ରୁ ବାହାରିଆସିଲା । ତରତର ହୋଇ ଲାଇବ୍ରେରୀ ଭିତରର ସବୁଠାରୁ କଣକିଆ ସିଟ୍‌ରେ ବସିପଡ଼ିଲା ଓ ଗିଲାସେ ପାଣି ଢକ୍ ଢକ୍ କରି ପିଇପକାଇଲା । ଦୁଇ ଆଖିରୁ ତା'ର ଗରମ ଲୁହ ଦୁଇବୁନ୍ଦା ଝରିଆସିଲା । ସେଇ ରେଷ୍ଟୁରାଣ୍ଟରେ ଏଇ କେତେଦିନ ତଳେ ବୋଧହୁଏ ଦୁଇଥର ଅତନୁ ଓ ସେ କଫି ପିଇଥିଲେ । ହେ ଭଗବାନ୍ ! କାହିଁକି ସେ ଲୋକ ଦେଖିବାଭଳି ଜାଗାକୁ ଯାଉଥିଲା ?

କିନ୍ତୁ ସେମାନେ ଘରେ ଏକାଠି ସମୟ କଟାଇବା ବି ତ ଧୀରେ ଧୀରେ ଚକ୍ଷୁଶୂଳ ହୋଇଥା'ନ୍ତା ସମସ୍ତଙ୍କର । ନିଜ ମର୍ଯ୍ୟାଦାକୁ ଜଗି ଚଳୁଥିବା, ସମସ୍ତଙ୍କଠାରୁ ଖାତିର ପାଉଥିବା ମଗ୍ନା ଏମିତି କି ଅମର୍ଯ୍ୟାଦାକର କଥାଟିଏ କରିପକାଇଲା ? ଅତନୁକୁ ପ୍ରେମ କରିବା କ'ଣ ତା'ର ଦୁଶ୍ଚରିତ୍ରତାର ପ୍ରମାଣ କି ଗୋଟାଏ କିଛି ଅତି ଅମର୍ଯ୍ୟାଦାକର ଘଟଣା – ଏଇଥିପାଇଁ ଯେ ଅତନୁ ବିବାହିତ ! କିନ୍ତୁ କାହିଁ, ସେ ତ କେବେହେଲେ ଥରେ ଏକଥା ଭାବିପାରିନାହିଁ ।

ପୃଥିବୀରେ ଏତେ ଘୃଣା, ଦୁଃଖ, ଈର୍ଷା, ହିଂସା ଭରିରହିଥିଲାବେଳେ, ଅହରହ ଜଣେ ଅନ୍ୟର କ୍ଷତି କରିବାକୁ ଚେଷ୍ଟା କରୁଥିଲାବେଳେ, ସାଧାରଣ ଲୋକମାନଙ୍କର କ'ଣ ଅସୁବିଧା ହୋଇଯାଏ ଯଦି ସେମାନେ ଜାଣିପାରନ୍ତି ଯେ ଜଣେ ସ୍ତ୍ରୀ ଓ ଜଣେ ପୁରୁଷ ପରସ୍ପରକୁ ଭଲପାଉଛନ୍ତି ? ମଣିଷ ମଣିଷକୁ ହାଣିଦେବା, ମାରିଦେବା, ବିଭିନ୍ନ

ପ୍ରକାର ଶତ୍ରୁତା କରିବା, କ୍ଷତି କରିବାକୁ ଯଦି ସାଧାରଣ ସାମାଜିକ ଜୀବନର ବୈଚିତ୍ର୍ୟମୟ ସତ୍ୟ ବୋଲି ଧରିନିଆଯାଉଛି, ତେବେ ଗୋଟିଏ ମଣିଷ ଅନ୍ୟକୁ ଭଲପାଉଥିବା ଘଟଣାଟି କାହିଁକି ଅଧୈର୍ଯ୍ୟ, ଅସହ୍ୟ କରିଦିଏ ଅନ୍ୟମାନଙ୍କୁ ? କାହିଁକି ସମସ୍ତଙ୍କର ସଂବେଦନାର ଦ୍ୱାର ଅବରୁଦ୍ଧ ହୋଇଯାଏ ସେମାନଙ୍କ ପାଇଁ ? ଏକ ଆବଦ୍ଧ ଅଭିମାନ ଅସ୍ଥିର କରିଦେଉଥିଲା ମଗ୍ନାକୁ ।

"କ'ଣ ହୋଇଛି ତୁମର ? ବଡ଼ ଉଦାସ ଲାଗୁଛି ଯେ ଆଜି"– ମଗ୍ନାର କପାଳ ଉପରକୁ ଖସିଆସିଥିବା ଚୁନାଚୁନା କେଶକୁ ଆଙ୍ଗୁଠିରେ ଉଠାଇ ଦେଉ ଦେଉ ପଚାରିଲେ ଅତନୁ ।

"ଜାଣ, ମୋତେ ବେଳେ ବେଳେ କ'ଣ ଲାଗେ ?"

ଅତନୁଙ୍କ ଆଖିକୁ ଚାହିଁ ତାଙ୍କଠାରୁ ସାମାନ୍ୟ ଦୂରେଇ ବସିଯାଇ କହିଲା ମଗ୍ନା– "ଇଚ୍ଛା ହୁଏ, ତୁମେ ଏମିତି ଥାଆନ୍ତ ପାଖରେ ସବୁବେଳେ । ନନ୍‌ଷ୍ଟିକ୍ ପ୍ୟାନ୍‌ରେ ଦୁଇଖଣ୍ଡ ବଦଳରେ ଭର୍ତ୍ତିହୋଇ ଖେଳାଇ ହୋଇଥିବା ମାଛଖଣ୍ଡସବୁ ମୁଁ ଭାଜୁଥା'ନ୍ତି । ତୁମେ ପଛଆଡୁ ଆସି ଦୁଇ ହାତରେ ମୋତେ ବେଢ଼ାଇନିଅନ୍ତ, ପଚାରନ୍ତ ମାଛଭଜା କୋଉଯାଏ ଗଲା ବୋଲି । କଟା ପିଆଜ, ଲଙ୍କା ଓ ଟମାଟୋସସ୍ ସହ ଗରମ ଗରମ ମାଛଭଜା ପ୍ଲେଟ୍‌ରେ ଆଣି, ତୁମକୁ ଟାଣି ଟାଣି ଡାଇନିଂ ଟେବୁଲ୍‌ରେ ବସାନ୍ତି । ତମେ ଖାଉ ଖାଉ ମୁଁ ପଚାରୁଥାଆନ୍ତି ଅନର୍ସର ଫୋର୍ଥ ପେପର୍ ଏକ୍‌ସଟ୍ରା ପଢ଼ାଇବାକୁ ପ୍ରିନ୍‌ସିପାଲ୍ କହୁଛନ୍ତି, ଏଇ ଅଧିକା ବର୍ଡନ୍‌ଟା ନେବି ନା ତାଙ୍କୁ ଭଦ୍ରାମିର ସହ ମନାକରିଦେବି । ତୁମେ ଟିକିଏ ଭାବି ଭାବି କିଛି ଉତ୍ତର ଦେଉଥା'ନ୍ତ । ନହେଲେ ତୁମକୁ ଝାରସୁଗୁଡ଼ା ପୋଷ୍ଟିଂ ବେଳର କିଛି ମନେରହିବା ପରି ମଜା ମଜା କଥା କହିବାକୁ କହିଥା'ନ୍ତି । ଏମିତି ଘଣ୍ଟାଏ ଦୁଇଘଣ୍ଟା ନୁହେଁ, ଅଖଣ୍ଡ ସମୟ ଥାଆନ୍ତା ଆମ ହାତରେ । ଦିନ ଯାଇ ରାତି ଆସୁଥା'ନ୍ତା, ତା'ପରେ ଦିନ– ଏମିତି ଅନେକ ଦିନ ଆମର ଏକତ୍ରିତ ଅନୁଭବରେ ବିତିଯାଆନ୍ତା । ପୂର୍ଣ୍ଣିମା ସଂଧ୍ୟାରେ ଆମେ ଛାତ ଉପରେ ବସିଥାଆନ୍ତେ – ତୁମ ହାତରେ କଫିକପ୍ ଓ ମୁଁ ମେଲାଇ ରଖିଥାଆନ୍ତି ରମାକାନ୍ତ ରଥଙ୍କ ଶ୍ରୀରାଧା – କେଇ ଧାଡ଼ି ତୁମକୁ ପଢ଼ି ଶୁଣାଉଥାଆନ୍ତି – ସଖୀ ଜଣେ ପଚାରିଲା ତୁମକୁ କାହିଁକି ଏତେ ଭଲପାଏ ବୋଲି...... ସପ୍ତାହର କାମ ଶେଷରେ କେବେ କେମିତି ଆମେ ହୁଏତ ଅପେକ୍ଷାକୃତ ନିର୍ଜନ ବେଳାଭୂଇଁରେ ଲହଡ଼ି ଗଣୁଥାଆନ୍ତେ ବା କେଉଁ ପ୍ରତ୍ୟକ୍ଷା ଦେବୀଙ୍କ ମନ୍ଦିରରେ ଆଳତି ବେଳାରେ ଦୀପ ଜଳାଇ ପରସ୍ପରର ମଙ୍ଗଳ ମନାସୁଥାଆନ୍ତେ । ଅବିଚ୍ଛିନ୍ନ, ଅବିଶ୍ରାନ୍ତ ସମୟର ସ୍ୱତ୍ୱ ଥାଆନ୍ତା ଆମ ପାଖରେ । କିନ୍ତୁ କାହିଁ, କେଉଁଠି ଥାଅ ତୁମେ ? ଥାଅ କି ପାଖରେ ? ଏଇ ସବୁତକ ଅନୁଭବ ଖାଲି ମୁଁ ଏକା ଏକା ନିଜ ଭିତରେହିଁ ରଖେ । ଏକ ରୁଦ୍ଧ, ଅବ୍ୟକ୍ତ ଇଚ୍ଛା ମୋତେ ଭାଙ୍ଗି ଚୂରି ବାହାରି ଆସିବାକୁ ଚେଷ୍ଟାକରେ– ବ୍ୟାପିଯିବାକୁ ଚେଷ୍ଟାକରେ

ସଚରାଚର, ମୋ ଚତୁର୍ଦ୍ଦିଗରେ । ପ୍ରକୃତରେ କିନ୍ତୁ ସେତେବେଳେ ଧୂ ଧୂ ଖରାବେଳ ହୋଇଥାଏ, ଝାଞ୍ଜିପବନ ପିଟୁଥାଏ ଓ ଅସହ୍ୟ ଗରମରେ ବତୁରି ଯାଇଥିବା ଏଇ ଛୋଟ ଦୁଇ ରୁମ୍‌ର ଫ୍ଲାଟ୍‌ଟି ମୋର ନିଃସଂଗତାକୁ ଆହୁରି ତୀକ୍ଷ୍ଣ କରିଦେଉଥାଏ । ଯେତେ ନ ଚାହିଁଲେ ବି ସେଇ ବାସ୍ତବତାକୁ ମୋତେ ଫେରିଆସିବାକୁ ହେଉଥାଏ ଯେ ଏସବୁ ମୋ ପାଇଁ ସଂଭବ ନୁହେଁ — ଅନ୍ତତଃ ଏ ଜନ୍ମରେ ।'' ମଗ୍ନାର ଦୁଇ ବଡ଼ ବଡ଼ ଆଖିରେ ଲୁହ ଟଳମଳ କରୁଥିଲା ।

''ଏମିତି କୁହନାହିଁ ମଗ୍ନା । ବଡ଼ କଷ୍ଟହେଉଛି ଶୁଣିବାକୁ ମୋତେ । ଏତେ କଷ୍ଟ ମୁଁ ଦେଉଛି ତୁମକୁ ସତରେ ! ସବୁବେଳେ ମୁଁ ତୁମ ପାଖେପାଖେହିଁ ଅଛି । ଅନେକ ମଣିଷଙ୍କ ଗହଣରେ ଥିବା ଲୋକଟିଏ ମଧ୍ୟ ଏକୁଟିଆ ହୋଇଯାଇଥାଏ । ଏମିତି କୋଳାହଳ ଭର୍ତ୍ତି ଘରଟିଏ ମଧ୍ୟ ନିର୍ଜନ ବିସ୍ତୀର୍ଣ୍ଣ ମରୁଭୂମି ପାଲଟିଯାଏ । ତା'ମଧ୍ୟରେ ପଥିକଟିଏ ଦିଗହରା ହୋଇ ଛଟପଟ ହେଉଥାଏ । ନା, ସେ ଉହଉହ ତାତିଲା ବାଲିରେ ପାଦପକାଇ ଚାଲିହୁଏ ନା ଗୋଡ଼ ଦୁଇଟି ଉପରକୁ ଉଠାଇ ରହିଯାଇହୁଏ । ଏଇ ଏକାକୀତ୍ୱର ଅଭିଶାପ ମୁଁ ମଧ୍ୟ ଭୋଗୁଛି ମଗ୍ନା । ତୁମ ପାଖରେ ଆସି ଠିଆହୋଇପାରୁନାହିଁ ବୋଲି କେତେ ଗ୍ଲାନି ହୁଏ ମୋର । ଇଚ୍ଛାହୁଏ, ସବୁ ଅର୍ଗଳକୁ ଭାଙ୍ଗି, ସବୁ ନିୟମକୁ ଉଲ୍ଲଂଘନ କରି ତୁମ ହାତଧରି ରାଜରାସ୍ତାରେ ଚାଲନ୍ତି ।'' ସାରାଦେହ ସାମାନ୍ୟ ଥରୁଥାଏ ଅତନୁଙ୍କର ।

''ମୋତେ କିନ୍ତୁ ଅନେକ ସମୟରେ କ'ଣ ଦିଶିଯାଏ, ଜାଣ ? — ମୁଁ ଥୁରୁଥୁରୁ ବୁଢ଼ା ହୋଇଯାଇଛି । ମୁହଁ ଏକଦମ୍ ପତଳା, ଲୋଳିତଚର୍ମ ଚାରିକଡ଼ରୁ ଝୁଲିପଡ଼ିଛି । ହାତ, ଗୋଡ଼ରେ ହାଡ଼ଠାରୁ ମାଂସ, ଚର୍ମ ଅଲଗା ହୋଇ ଓହଳି ରହିଛି । ମୁଣ୍ଡରେ କାଁଭାଁ ବାଳ — ତା' ପୁଣି ଧଳା । ଥରେ ଦୁଇଥର କ୍ୟାଟାରାକ୍ଟ ଅପରେସନ୍ ହୋଇଥିବା ଦୁଇଆଖିରେ ବହଳ ପେଚୁଆ ଦୃଷ୍ଟି । ମୋ ଖଟ ପାଖରେ ପଡ଼ିଥିବା ଲମ୍ବା ଷ୍ଟୁଲ୍ ଉପରେ ଅନ୍‌ବ୍ରେକେବଲ୍ ବଡ଼ ବାଟିରେ ଚକଟା ହୋଇଥିବା କିଛି ଅର୍ଦ୍ଧ-ତରଳ ଖାଦ୍ୟ ଗୋଟିଏ ବଡ଼ ଷ୍ଟିଲ୍ ଚାମଚ ସହିତ ରଖାଯାଇଛି । ମୁଁ ଚାମଚଟିକୁ କୌଣସିମତେ ଅଧାଭର୍ତ୍ତିକରି ଥୁରୁଥୁରୁ ହାତରେ ପାଟି ପାଖକୁ ନେଉଛି କିନ୍ତୁ ଜମାରୁ ପାଟି ଭିତରେ ଭର୍ତ୍ତି କରିପାରୁନାହିଁ । ଚାମଚ କେତେବେଳେ ନାକରେ ତ କେତେବେଳେ ଓଠରେ ବାଜିଯାଉଛି । ତୁମେ ଚାଲି ଯାଉ ଯାଉ କବାଟ ପାଖରୁ ଫେରିଚାହୁଁଛ— ଚଞ୍ଚଳ ଆସି ମୋ ହାତରୁ ଚାମଚ ନେଇ ଧୈର୍ଯ୍ୟର ସହ ମୋତେ ଖୁଆଇଦେଉଛ— ଗିନାରୁ ସବୁତକ ଅର୍ଦ୍ଧତରଳ ଜିନିଷ ସରିବା ପର୍ଯ୍ୟନ୍ତ । କିନ୍ତୁ ବଡ଼ ଆଶ୍ଚର୍ଯ୍ୟ ଯେ ତୁମେ ଜମାରୁ ବୁଢ଼ୀ ହୋଇନାହଁ । ଏଇଭଳି ନରମ ପତଳା ଶାଢ଼ିଟିଏ ପିନ୍ଧି ମୋ ପାଖରେ ଛିଡ଼ାହୋଇଛ । ମୋତେ ଆଜି ବିଭୋର କରିଦେଉଥିବା ତୁମ ଦେହର ମୃଦୁ ମହକ ସେତେବେଳେ ମଧ୍ୟ ଘରସାରା ଖେଳିଯାଉଛି । ଯେତେଥର ଏଇ ଦୃଶ୍ୟ ମୋ ଆଖିରେ ନାଚିଯାଇଛି, ଥରେ ହେଲେ ବି ତୁମେ ଅଲଗା

ପ୍ରକାର ଦିଶିନାହିଁ । ତେବେ ହଁ, ଅଧିକ ଧୀରସ୍ଥିର ଦିଶିଛ– ଦିଶିଛ ଏକଦମ୍ ମୋର ବୋଲି ।'' ବିଷଣ୍ଣ ଭାବରେ ହସିଲେ ଅତନୁ ।

''ହୁଁ, ତୁମେ ଥୁରୁଥୁରୁ ବୁଢ଼ା ହୋଇଯାଇଛ, ଆଉ ମୁଁ ଯେମିତି ସେମିତି ଅଛି ! ଆଚ୍ଛା କଥା ତ ।'' ସେଇ ବିଷଣ୍ଣ ହସର ପ୍ରତ୍ୟୁତ୍ତରରେ ସେଇଭଳି ଚେନାଏ ହସ ତା' ଓଠ ଧାରରେ ଖେଳିଗଲା ।

''ତୁମେ ମୋ'ଠାରୁ ବୟସରେ ଛୋଟ ନା ନାହିଁ ?'' ଲଘୁ ହୋଇଯାଇଥିଲା ମୁହୂର୍ତ୍ତ କେତୋଟି ଅତନୁଙ୍କର ଏଇ କଥାରେ ।

ଏଇ ଛୋଟ ସହରରେ ଘଟିଚାଲିଥିବା ଏଇ ଦୁର୍ବିସହ ଅଘଟଣଟିର ବିକିରଣ କ'ଣ ଖାଲି ସେଇଠି ଆବଦ୍ଧ ହୋଇ ରହନ୍ତା ? କେତେ ଯୋଜନ, କେତେ କ୍ରୋଶ ଯେ ତାହା ଅତିକ୍ରମ କରିଗଲା କେଜାଣି; କିନ୍ତୁ ମଗ୍ନାର ବାପା-ମାଆ ଓ ଭାଇ-ଭାଉଜଙ୍କୁ ମଧ୍ୟ ଏହାର ଅସହ୍ୟ ପ୍ରଭାବରୁ ମୁକ୍ତି ମିଳିଲାନାହିଁ । ଶୁଣିବା ଦିନରୁ ବାପା ଉଦାସ ଭାବରେ ଅନ୍ୟମନସ୍କ ହୋଇ ବାହାର ବାରଣ୍ଡାରେ ଅଧିକ ସମୟ ବସିରହିଲେ । ମାଆ ତାଙ୍କ ଠାକୁରଘର ଖଟୁଲିପାଖରେ ଆଉ ଅଧିକ ଦୁଇ ତିନି ଘଣ୍ଟା କଟାଇବାରେ ଲାଗିଲେ– ଅନ୍ତତଃ ଏକୁଟିଆ ତ ବସି ଲୁହ ଗଡ଼ାଇ ପାରିଲେ । ଭାଉଜ ଦରକାରଠାରୁ ଅଧିକ କାଛ ବାଡ଼ସହ ବୁଝି ନ ହେଉଥିଲାପରି କଥାବାର୍ତ୍ତା କରିବାକୁ ଲାଗିଲେ । ଭାଇଙ୍କୁ ହଠାତ୍ ଅଫିସ୍‌ରେ ମୁଣ୍ଡ ତଳକୁପୋତି ଯିବା ଆସିବା କରିବାକୁ ପଡ଼ିଲା । ଏଇ ଅଘଟଣଟିର କୁପ୍ରଭାବ ଖାଲି ଏମିତି ସାଧାରଣ ନଥିଲା । ସେଇ ଛୋଟ ଖୁସିବାସିଆ ମଧ୍ୟବିତ୍ତ ପରିବାରକୁ ତାହା ରୀତିମତ ଦୋହଲାଇ ଦେଇଥିଲା ।

ସକାଳୁ ସକାଳୁ କଲିଂବେଲ୍ ବାଜିବାରୁ ତରତର ହୋଇ ହାଉସ୍‌କୋଟ୍ ଗଳାଇ କବାଟ ଖୋଲି ମଗ୍ନା ଅବାକ୍ ହୋଇଯାଇଥିଲା । ଏକାଥରକେ ବାପା-ମାଆ, ଭାଇ ଓ ଭାଉଜ । ଖୁସି ହେବ ନା ଆଶ୍ଚର୍ଯ୍ୟ ହେବ ନା କିଛି ଆଶଙ୍କା କରିବ, ବୁଝିପାରୁ ନଥିଲା ସେ । ବେଶ୍ କିଛି ସମୟ ଧରି ସେ ଏକପାଖିଆ ଅଦାଲତର ସମ୍ମୁଖୀନ ହେଲା । ଅଧିକାଂଶ ସମୟ ଚୁପ୍ ରହିଯିବାକୁହିଁ ସ୍ଥିର କଲା । ଏପର୍ଯ୍ୟନ୍ତ ନୀରବ ହୋଇ ବସିଥିବା ଭାଉଜଙ୍କର ରାୟ ମଧ୍ୟ ଶୁଣିବାକୁ ହେଲା – ''ଆମେ ସବୁ ଭାବୁଥିଲୁ ବାହାସାହା ହୋଇ ଘରସଂସାର କରିବେ ବୋଲି । ଅନ୍ୟର ଘର ଭାଙ୍ଗିବା ଯାହାର ନୀତି ସେ ନିଜ ଘର କ'ଣ ତିଆରି କରିପାରିବ ?''

ଅଗ୍ନି ବର୍ଷିଗଲା ଯେମିତି ମଗ୍ନା ଉପରେ ବା ସେ ପାଦ ପକାଇ ଠିଆହୋଇଥିବା ସିମେଣ୍ଟ୍ ଚଟାଣଟି ଯେମିତି ଥରିଗଲା କେଇ ମୁହୂର୍ତ୍ତପାଇଁ । ଆଉ ସେଇଠି ଠିଆହୋଇ ରହିବା ସଂଭବ ନଥିଲା ତା'ପାଇଁ । ଜୋର୍‌କରି ବାଥ-ରୁମ୍‌ର କବାଟ ବନ୍ଦକରି ଲୁଗାପଟା ନ ଓହ୍ଲାଇ ଶାୱାର୍ ତଳେ ଛିଡ଼ାହୋଇପଡ଼ିଲା ସେ । ଅନ୍ତତଃ ଏଇ ଶୀତଳ ଝରଝର

ପାଣିର ଧାରା ଯଦି ଏଇ ଜ୍ୱଳନରୁ ରକ୍ଷା କରିପାରିବ ତା'କୁ ! ଅନ୍ୟର ଘର ଭାଙ୍ଗିବା – କେମିତି ଭାଉଜ କହିପାରିଲେ ଏ କଥା ! କି ପ୍ରକାର ଘର ବସାଇଥାଆନ୍ତା ସେ ? ବାପା-ମାଆ ବାଛି ଦେଇଥିବା ପୁରୁଷଟିକୁ ବାହାହୋଇ, ଦୁଇ ତିନୋଟି ପିଲା ଜନ୍ମକରି ଅଣ୍ଟିବା ନ ଅଣ୍ଟିବା, ବୁଝିବା ନ ବୁଝିବା, ଘୃଣା-ଶ୍ରଦ୍ଧା, ବିଶ୍ୱାସ-ଅବିଶ୍ୱାସ ଭିତରେ ଜିଆପରି ଘୁଷୁରୁଥିବା ଜୀବନକୁ ସେ ଛାଡ଼ିଦେଇ ଆସିଛି– ଚାହିଁ ନାହିଁ । ଏଇ ବ୍ୟତିକ୍ରମକୁ ଆସ୍ପର୍ଦ୍ଧା ବୋଲି ବୁଝୁଛନ୍ତି ସମସ୍ତେ । ଅତନୁଙ୍କ ପତ୍ନୀଙ୍କୁ ନେଇ କୌଣସି ଅସ୍ୱାଭାବିକ ପରିସ୍ଥିତି ସେ କେବେହେଲେ କଳ୍ପନା କରିନାହିଁ । ଅଥଚ୍..... ଏମିତି ଅପମାନଠାରୁ ମରିଯିବା ଭଲ । ଖୁବ୍ ଜୋର୍‌ରେ କାନ୍ଦିବାକୁ ଇଚ୍ଛା ହେଉଥିଲା ମଗ୍ନାର ।

ଉପରୁ ପଡୁଥିବା ଝରଝର ଜଳଧାରା ତା'କୁ ଧୀରେ ଧୀରେ ଶାନ୍ତ କରିଦେଉଥିଲା । ବାଁପଟ କାନ୍ଥରେ ଲମ୍ବିଥିବା ନାଲି ପିମ୍ପୁଡ଼ିଧାରକୁ ମଗ୍‌ରେ ପାଣିଦେଇ ଭସାଇ ଦେଉ ଦେଉ ସେ ରହିଗଲା– ନିରେଖି କରି ଦେଖିଲା– ମନ୍ଦାଏ ଛୋଟ ଛୋଟ ପିମ୍ପୁଡ଼ି କ'ଣ ଗୋଟିଏ ଅପେକ୍ଷାକୃତ ବଡ଼ ଜିନିଷକୁ ବୋହି ଚାଲିଛନ୍ତି – ଚିନିର ଦାନାଟିଏ ବୋଧହୁଏ । ଦାନାଟି ଟିକିଏ ଖସିପଡୁଛି, ପୁଣି ସେମାନେ କ୍ରମାଗତ ଭାବରେ ତଳକୁ ଓହ୍ଲାଇଯାଉଛନ୍ତି ଓ ଦାନାଟିକୁ ପୁଣି ଉଠାଇବାକୁ ଚେଷ୍ଟାକରୁଛନ୍ତି– ପୁଣି ତା' ଖସିପଡୁଛି– ଏମିତି ପ୍ରକ୍ରିୟାଟି ଚାଲୁରହିଛି । ଲକ୍ଷ୍ୟକରି ଦେଖିବା ଭିତରେ ପ୍ରାୟ ପନ୍ଦର ମିନିଟ୍ ବୋଧହୁଏ ବିତିଗଲାଣି । ମାଆ କବାଟ ବାଡ଼ଉଛନ୍ତି – "ଆଲୋ ମାନା, ଖାଇବାକୁ ଆସ– ପୋଡ଼ପିଠା ଆଣିଥିଲି ତୋ'ପାଇଁ । କଥାଛଳରେ କେମିତି ଭୁଲିଗଲି ଦେଖ !" ତରତର ହୋଇ ନିଜକୁ ପୋଛିପକାଇଲା ମଗ୍ନା । ସାମନା ଦର୍ପଣରେ ସେ ଅଧିକ ସ୍ନିଗ୍‌ଧ ଦିଶୁଛି – ଅଧିକ ସିକ୍ତ ମଧ ଦିଶୁଛି ।

କବାଟଖୋଲି ବାହାରିଆସି ସିଧା ସମସ୍ତଙ୍କ ପାଖରେ ଡାଇନିଂ ଚେୟାର୍‌ରେ ବସିପଡ଼ିଲା ମଗ୍ନା । ପୋଡ଼ପିଠାରୁ ଖଣ୍ଡେ ପାଟିରେ ନେଇ ଧୀରେ ଧୀରେ ଖାଇବାକୁ ଆରମ୍ଭ କଲା ସେ – "ମାଆ, ପୋଡ଼ପିଠା ଭାରି ଭଲହେଇଛି, ଠିକ୍ ଆଗଦିନମାନଙ୍କ ପରି– ଯେତେବେଳେ ମୁଁ ନୂଆ ଜାମାପିନ୍ଧି ରଜ କରୁଥିଲି ।" ବହିଯାଇଥିବା ଝଡ଼ର କୌଣସି ଆଭାସ ନଥିଲା ତା'ଠାରେ ।

ସମସ୍ତେ ମୁହଁବୁଲାଇ ଚାହିଁଲେ ତା'କୁ । ଖାଲି ତା'ର ଉଜ୍ଜ୍ୱଳିଉଠୁଥିବା ମୁହଁକୁ ନୁହେଁ, ଆହୁରି ଯେମିତି କିଛି ଦେଖୁଥିଲେ ସେମାନେ ।

□□□

# ଅସ୍ତକାଳ

''ବୁଢ଼ା ଯିବା ଆଗରୁ ତୁମ ପାଖକୁ ଆସିଥିଲା ପରା, କିଛିଦିନ ତଳେ— ?'' ବାମହାତ ଦୁଇ ଆଙ୍ଗୁଠି ମଝିରେ ନିଜର ଟ୍ରିପ୍‌ଲ ଫାଇଭ୍ ସିଗାରେଟ୍ କେସ୍‌ରୁ ସିଗାରେଟ୍‌ଟିଏ ଆଣି ଦୁଇ ଓଠ ମଝିରେ ଚାପିରଖି ଡାହାଣ ହାତରେ ସ୍ୱର୍ଣ୍ଣରଙ୍ଗର ଲାଇଟର୍‌କୁ ଜଳାଇଲେ ନବୀନ୍ କପୁର୍ । ଥରେ ଶୋଷିନେଇ ଉପରକୁ ମୁହଁକରି ଦୁଇଆଖି ଅଧାବୁଜିଆଣି ଧୂମକୁଣ୍ଡଳୀଟିଏ ଛାଡ଼ିଦେଲେ ସେ । ତା'ସହିତ ମୁହଁ ବଙ୍କାଇ ନିଜର ପ୍ରଶ୍ନ ଦୋହରାଇଲେ ଡାହାଣପଟ ସୋଫାରେ ଗୋଡ଼ଲମ୍ବାଇ ବସିଥିବା ଅନିନ୍ଦ୍ୟ ବୋଷଙ୍କୁ । ''ହଁ, ତୁମରି ପାଖକୁ ତ କାଲି ଯାଇଥିଲେ ।'' ଏଥର ତାଙ୍କର ତୀର୍ଯ୍ୟକ କଟାକ୍ଷପାତ, ଅର୍ଥପୂର୍ଣ୍ଣ ଆଖି ଅଧାବୁଜିଆଣିବା ଓ ଚାପା ହସଟିଏ ଜବରଦସ୍ତି ଦୁଇ ଓଠ ପଛରେ ଦବାଇକରି ରଖିବା ଅନିନ୍ଦ୍ୟ ବୋଷଙ୍କୁ ଓ ବସିଥିବା ଅନ୍ୟ ଦୁଇଜଣଙ୍କୁ ମଧ୍ୟ ଜାଣିଶୁଣି କରିଲା ପରି ଲାଗିଲା । ଏଇ ମନ୍ତବ୍ୟରେ ବାଉନ ବର୍ଷର ଅନିନ୍ଦ୍ୟ ବୋଷଙ୍କର ମୁହଁ ଯଦି ସାମାନ୍ୟ ନାଲି ପଡ଼ିଗଲା — ତାହା ତାଙ୍କର ଅନ୍ୟ ତିନିଜଣ ବନ୍ଧୁଙ୍କପାଇଁ ଅସ୍ୱୃହଣୀୟ ନଥିଲା । ବୋଧହୁଏ, ସେମାନେ ସେତିକି ଆଶା କରୁଥିଲେ ଓ ଭିତରେ ଭିତରେ ସାମାନ୍ୟ ଉପଭୋଗ ମଧ୍ୟ କରୁଥିଲେ ।

ଅନିନ୍ଦ୍ୟ ବୋଷ କିନ୍ତୁ ଯଥାଶୀଘ୍ର ନିଜକୁ ସଂଭାଳି ନେଇଥିଲେ । ମୁଖଭଙ୍ଗୀ ସାମାନ୍ୟ କଠୋର କରି ଓ ସ୍ୱରକୁ ଯଥାସମ୍ଭବ ଗମ୍ଭୀର କରି ସେ ପାଲଟା ଉତ୍ତର ଦେଇଥିଲେ— ''ଆସିଥିଲା ତ ଆସିଥିଲା, କ'ଣ ହୋଇଗଲା ସେଇଠୁ ? ତା'ର ଗୁପ୍ତଧନ କୋଉଠି ପୋତି ରଖିଛି ସେଇ ଖବର ଦେବାକୁ ଆସିଥିଲା ପରା, ଯାହା ତୁମମାନଙ୍କୁ ନ ଜଣାଇ ମୋତେ ତା'ର ସଂଧାନ ଦେଇ ଯାଇଛି ।'' ଏତକ କହିବା ଶେଷ କଲା ବେଳକୁ ତାଙ୍କର ଖର ନିଃଶ୍ୱାସ ପ୍ରଶ୍ୱାସ ଚାଲିଥିଲା ।

''ନାଇଁ, ନାଇଁ, ସେମିତି କାହିଁକି କହୁଛ ? କଥା କ'ଣ କି, ଆଜିକାଲି ବୁଢ଼ା କାହାରି ପାଖକୁ ଯାଉନଥିଲା କି ନିଜ ଘରେ ମଧ୍ୟ କାହାକୁ ଦେଖାକରୁନଥିଲା । ତେବେ ତୁମ ଆଡ଼କୁ ସେ ଦୁଇ ତିନିଥର ଯିବା ଆସିବା କରିବା କିଏ କିଏ ଦେଖିଛନ୍ତି ତ ସେଇଥିପାଇଁ କହୁଥିଲି ।''

ନବୀନ୍ କପୁର୍ ପାଟିରୁ ସିଗାରେଟ୍ କାଢ଼ି ଏତକ ସାଲିସ୍ କରିବା ଢଙ୍ଗରେ ଅନିନ୍ଦ୍ୟ ବୋଷକୁ କହିଲେ । ଗ୍ରହଣଯୋଗ୍ୟ କଥାତକ କହିପାରିଥିବା ଭଙ୍ଗୀରେ ଅନ୍ୟ ବନ୍ଧୁମାନଙ୍କଠାରୁ ସମର୍ଥନ ଆଶାରେ ଚାହିଁରହିଲେ ।

''ପ୍ରକୃତ କଥା ହେଲା ବୁଢ଼ା ଆଠ ନଅ ମାସ ଧରି ମୋତେ ଦେଖାକରିବା ମଧ୍ଯ ଛାଡ଼ିଦେଇଥିଲା । ପୂର୍ବରୁ ପ୍ରାୟ ସପ୍ତାହକେ ଥରେ ହେଲେ ଆସୁଥିଲା । ତା'ର କୌଣସି କୋର୍ଟ ତାରିଖ ନେଇ କି ଖାଲି ସେମିତି ମଧ୍ଯ । ମଝିରେ ମଝିରେ ବିଦେଶୀ ସ୍କଚ୍ ପିଇବାକୁ ମଧ୍ଯ ଆମନ୍ତ୍ରଣ କରୁଥିଲା । କିନ୍ତୁ ଗତ କିଛିଦିନ ହେବ ତା'ର ଦେଖାଦର୍ଶନହିଁ ନଥିଲା । ମୁଁ ହାଲ୍‌ଚାଲ୍ ପଚାରିବାପାଇଁ ଥରଟେ ଯାଇଥିଲି– ବୁଢ଼ା କେମିତି ଗୋଟାଏ ଉଦାସ ଲାଗୁଥିଲା, ଲାଗୁଥିଲା ଯେମିତି ସବୁଆଡୁ ନାଡ଼ି ଛିଡ଼େଇ ବସିଛି– କିଛି ଘଟଣ ବା ଅଘଟଣକୁ ଅପେକ୍ଷାକରି ରହିଛି । ଏମିତି ତ ତା'ପାଇଁ ସବୁକିଛି ଛିଡ଼ିଯାଇଥିଲା କେବେଠାରୁ । କିନ୍ତୁ ଏଥର ସେ ଭାରି ଅଦ୍ଭୁତ ଲାଗୁଥିଲା । ଦୁଃଖିତ ନିଶ୍ଚୟ ଦିଶୁନଥିଲା । କିଛି ଗୋଟାଏ ନିଶ୍ଚିତ ପ୍ରାକ୍-ପ୍ରସ୍ତୁତି ପରର ପ୍ରଶାନ୍ତି ତା'ମୁହଁରେ ଖେଳିବୁଲୁଥିଲା ଯେମିତି ! କୌଣସି ଲିଟିଗେସନ୍ ବିଷୟରେ ପଦଟିଏ ବି କଥା କହିନାହିଁ ସିଏ । ବୁଢ଼ାକୁ କେହି କେବେ କୃପଣ କହିବା ମୁଁ ଶୁଣି ନାହିଁ – ମୋତେ ନିଜକୁ ମଧ୍ଯ କସ୍ମିନ୍‌କାଳେ ସେ ସେମିତି ଲାଗିନାହିଁ । ବୁଢ଼ା ନିଶ୍ଚୟ ନିଜକୁ ନେଇ ସଂଯତ ଥିଲା । ତା'ର ଡ୍ରଇଂରୁମ୍ ବା ଅତିବେଶୀ ହେଲେ ଡାଇନିଂରୁମ୍ ପର୍ଯ୍ୟନ୍ତ ଡିନର୍ ଇତ୍ୟାଦିରେ ଲୋକ ଦେଖିଥିବେ ।'' ଏତକ କହୁ କହୁ ବିଶିଷ୍ଟ ଆଇନଜ୍ଞ ଅମରେନ୍ଦ୍ର ପ୍ରସାଦଙ୍କର ଦୃଷ୍ଟି ଚାଲିଗଲା ଅନିନ୍ଦ୍ୟ ବୋଷଙ୍କ ଆଡ଼କୁ । ଅନିନ୍ଦ୍ୟ ବୋଷ ସେତେବେଳକୁ ନିଜ ପାନୀୟ ଗ୍ଲାସ୍‌ରେ ଚୁମୁକ୍ ଦେଇସାରି ଧ୍ଯାନ କରିବା ଢଙ୍ଗରେ ସିଧା ଆଗକୁ ଚାହିଁଥା'ନ୍ତି – ଅମରେନ୍ଦ୍ର ପ୍ରସାଦଙ୍କର କଥା ଶୁଣିବାକୁ ଉତ୍‌କର୍ଣ୍ଣ ଥାଆନ୍ତି ନିଶ୍ଚୟ ।

''କିନ୍ତୁ ସେଦିନ ବୁଢ଼ା ଯେମିତି ଅଲଗା ମୁଡ୍‌ରେ ଥିଲା । ତା'ର ବେଡ୍‌ରୁମ୍‌ର ଡାହାଣ ପଟକୁ ଲାଗି ବିଦେଶୀ ପାନୀୟର ସେଲାର୍ ଥିଲା । ବାର୍ ଟେବୁଲ୍‌ର ଭିତରପଟକୁ ଯାଇ ସୌଖୀନ୍ କାଚ଼ ଆଲମିରାଟିକୁ ଖୋଲିଦେଲା ସେ । ସୁଇଚ୍ ଟିପିଦେବାରୁ ଝଲମଲ କରିଉଠିଲା କ୍ରିଷ୍ଟାଲ୍ ପାନପତ୍ରଗୁଡ଼ିକ ଓ ଛୋଟବଡ଼ ଅନେକ ବୋତଲ ।''

''ଆପ୍ ଖୁଦ୍ ଚୁନ୍ ଲିଜିଏ''– ଆନ୍ତରିକ ବନ୍ଧୁତ୍ୱପୂର୍ଣ୍ଣ ଲାଗୁଥିଲା ତା'ର ସ୍ୱର । ମୁଁ ଟିକିଏ ଆଶ୍ଚର୍ଯ୍ୟ ହୋଇଥିଲି । ଦୀର୍ଘଶ୍ୱାସ ପକାଇଲେ ଅମରେନ୍ଦ୍ର ପ୍ରସାଦ ।

''ହଁ, ମଲାବେଳକୁ ଟିକିଏ ଲୋକଟା ବଦଳିଯାଆନ୍ତା ନାହିଁ କି ? ଏମିତି ତ ସମସ୍ତଙ୍କର ହୁଏ ।'' ସିଦ୍ଧାନ୍ତ ଦେଲାପରି ସ୍ୱରରେ ଉତ୍ତରଦେଲେ ଚନ୍ଦ୍ରପ୍ରକାଶ । ଏପର୍ଯ୍ୟନ୍ତ ନୀରବ ରହିଥିଲେ ସେ । ଅନ୍ୟ ତିନି ବନ୍ଧୁଙ୍କପରି ସେ ହୁଏତ ମୋହନ ସିଂଙ୍କ ସହ ଏତେ ଘନିଷ୍ଠ ନଥିଲେ, କିନ୍ତୁ ଅନେକାଂଶରେ ପରିଚିତ ଥିଲେ ନିଶ୍ଚୟ ।

କିଛି ସମୟପାଇଁ ନୀରବ ହୋଇଗଲେ ସେମାନେ । ମୋହନ ସିଂଙ୍କୁ ସେମାନେ ସମସ୍ତେ ଦୀର୍ଘ ବର୍ଷ ଧରି ଦେଖିଆସିଛନ୍ତି । ବିଭିନ୍ନ ପ୍ରକାରରେ ବୁଝିବାକୁ ମଧ୍ଯ ଚେଷ୍ଟା କରିଛନ୍ତି, କିନ୍ତୁ ସଂପୂର୍ଣ୍ଣ ଭାବରେ ତାଙ୍କୁ ଖାପଖୁଆଇ ପାରିନାହାନ୍ତି । ଏତିକି ସମସ୍ତେ

ନିଃସନ୍ଦେହରେ କୁହନ୍ତି ଯେ ଲୋକଟା ଅତ୍ୟନ୍ତ ପରିଶ୍ରମୀ । ଶୁଣାଯାଏ, କୁଆଡ଼େ ଫଟା କାମିଜ ପିନ୍ଧି, କାନ୍ଧରେ ଗୋଟିଏ ମାତ୍ର ବୁଜୁଲା ପକାଇ ଫୁରୁଫୁରୁ କେଶ ଓ ଦାଢ଼ିବଲବଲ ହୋଇ ମୋହନ ସିଂ ଯୁବାବସ୍ଥାରେ କାଳିମାଟି ଷ୍ଟେସନ୍‌ରେ ଦିନେ ଭୋର୍ ଭୋର୍ ଟ୍ରେନ୍‌ରୁ ଓହ୍ଲାଇଥିଲେ । ଅନେକ ସମୟଧରି ପ୍ଲାଟ୍‌ଫର୍ମରେ ଠିଆହୋଇ ଉଦ୍ଦେଶ୍ୟହୀନ ଭାବରେ ଚାରିଆଡ଼କୁ ଚାହିଁଥିଲେ, ପାଖ ବେଞ୍ଚରେ ବସି ବୁଜୁଲାରୁ ଶାଳପତ୍ର ଖଣ୍ଡିଏ ଓ ଠୁଙ୍ଗାଟିଏ ବାହାର କରିଥିଲେ, କିଛି ଗହମ ଛତୁରେ ଲୁଣ ଗୋଳାଇ ଖାଇଥିଲେ ଓ ନଳରୁ ପେଟଭରି ପାଣିପିଇ ସେଇ ବେଞ୍ଚ ଉପରେ ଜାକିଜୁକି ହୋଇ ଶୋଇପଡ଼ିଥିଲେ । ଏମିତି ଅନେକ ଦିନ ସେ ରେଲଓ୍ୱେ ପ୍ଲାଟ୍‌ଫର୍ମରେହିଁ ବିତାଇ ଦେଇଥିଲେ । ଦେଖାଗଲା, କିଛିଦିନ ପରେ ସେ କପଡ଼ା ଫେରିବାଲାର କାମ ଆରମ୍ଭ କରିଦେଇଛନ୍ତି । ସମସ୍ତଙ୍କୁ ଆଚମ୍ବିତ କରି ତାଙ୍କର ଅଧ୍ୟବସାୟ ଓ ବ୍ୟବସାୟ ବଢ଼ିବାକୁ ଲାଗିଲା । ଚାହୁଁ ଚାହୁଁ କୋଡ଼ିଏ ବର୍ଷ ଭିତରେ ଏତେବଡ଼ ଲୁହାତାର କମ୍ପାନୀର ମାଲିକ ହୋଇପାରିଲେ । ଅବଶ୍ୟ ତାଙ୍କ ପ୍ରଥମ ଜୀବନର କଥାସବୁ ଯା' ତା'ଠାରୁ ଶୁଣିବା କଥା । କିଏ ଏକଥା ଦେଖିଥିଲା ବୋଲି କହିବା ମନେହେଉନାହିଁ । ମୋହନ ସିଂ ନିଜ ବିଷୟରେ କିଛି କାହାକୁ କହିଥିବା ସମ୍ଭବ ନୁହେଁ ।

କଥାଟିରେ କିଛି ସତ୍ୟତା ମଧ୍ୟ ଥାଇପାରେ । ମୋହନ ସିଂ ସତକୁସତ ଘର ଘର ବୁଲି ଲୁଗାବିକାଳୀ ଫେରିବାଲାର ବ୍ୟବସାୟହିଁ ଆରମ୍ଭ କରିଥିଲେ । ସେତେବେଳକୁ ତାଙ୍କୁ କୋଡ଼ିଏ ବର୍ଷ ବୟସ । ନିଜର ପ୍ରଚଣ୍ଡ ପରିଶ୍ରମ ଓ ମନୋଯୋଗର ସହାୟତାରେ ଦଶବର୍ଷ ଭିତରେ ସେ ସକ୍ଷମ କନ୍‌ଷ୍ଟ୍ରକ୍‌ସନ୍ କମ୍ପାନୀଟିଏ ଠିଆକରିପାରିଥିଲେ । ଏ ଭିତରେ ସୁଦୃଶ୍ୟ ଅଟ୍ଟାଳିକାଟିଏ ତାଙ୍କର ତିଆରି ହୋଇସାରିଥିଲା ଓ ଦୁଇ ତିନୋଟି ଗାଡ଼ି ମଧ୍ୟ କିଣାହୋଇସାରିଥିଲା । ଏଇ ସମୟରେ ମୋହନ ସିଂ ହୁଏତ ନିଜର ସଂସାର ବାନ୍ଧିବାକୁ ମନସ୍ଥ କରିଥିଲେ । କହିବା ବାହୁଲ୍ୟ, ବିବାହଯୋଗ୍ୟା ଝିଅମାନଙ୍କର ଅତ୍ୟନ୍ତ ସ୍ୱଚ୍ଛଳ ପିତାମାତାଙ୍କର ଭିଡ଼ ଜମିଯାଇଥିଲା ତାଙ୍କ ପାଖରେ । ତେବେ ମୋହନ ସିଂ ଏହାର ସୁଯୋଗନେଇ ସେମାନଙ୍କର ଅତ୍ୟାଧୁନିକା ଝିଅମାନଙ୍କର ସାନ୍ନିଧ୍ୟକୁ ଅପବ୍ୟବହାର କରିବା ଜଣାଯାଇନାହିଁ । ନିଜର ବିବାହକୁ ସେ ଅତି ବାସ୍ତବିକ ଢଙ୍ଗରେ ଗ୍ରହଣ କରିଥିଲେ । ସହରର ଅନ୍ୟତମ ବିତ୍ତବଶାଳୀ ବ୍ୟକ୍ତି ରାଜେଶ୍ୱର ସିଂଙ୍କର ଆଧୁନିକା, ସୁନ୍ଦରୀ, ଉଚ୍ଚଶିକ୍ଷିତା କନ୍ୟା ମେନକାଙ୍କୁ ସେ ନିଜର ଜୀବନସାଥୀରୂପେ ବାଛିଥିଲେ । ମେନକା ଓ ମୋହନ ସିଂ ସେତେବେଳକୁ ସହରର ବିତ୍ତବଶାଳୀ ଓ ବୁଦ୍ଧିଜୀବୀ ମହଲରେ ଯଥେଷ୍ଟ ଜଣାଶୁଣା ହୋଇସାରିଥିଲେ । ଏଇ ବିବାହ ସେଇସବୁ ସ୍ତରରେ ମିଶ୍ରିତ ପ୍ରତିକ୍ରିୟା ସୃଷ୍ଟି କରିଥିଲା । କେହି କେହି ମେନକାଙ୍କ ସୌଭାଗ୍ୟକୁ ଈର୍ଷା କରୁଥିଲେ ଓ କେହି କେହି ଦୁଃଖ ମଧ୍ୟ କରୁଥିଲେ ଯେ ମୋହନ ସିଂଙ୍କ ପରି ନୀରସ, ଅର୍ଥାସକ୍ତ ମଣିଷକୁ ମେନକାଙ୍କ ପରି ଜୀବନୋନ୍ମୁଖୀ, ଚଞ୍ଚଳା ନାରୀଟିକୁ ବିବାହ

କରିବାକୁ ପଡ଼ିଲା । ସମୟକ୍ରମେ ସେମାନଙ୍କର ତିନୋଟି ସନ୍ତାନ ହୋଇଥିଲେ – ଦୁଇଟି ପୁଅ ଓ ଗୋଟିଏ ଝିଅ । ସେମାନଙ୍କର ସମସ୍ତ ପ୍ରକାର ଶିକ୍ଷାର ଉତ୍ତମ ବ୍ୟବସ୍ଥା ମଧ୍ୟ ମୋହନ ସିଂ କରିଥିଲେ । ତାଙ୍କ ବ୍ୟବସାୟରେ ଅତିଶୀଘ୍ର ଅତ୍ୟନ୍ତ ଉନ୍ନତି ହେବାକୁ ଲାଗିଥିଲା । ବ୍ୟବସାୟ ଓ ଶିଳ୍ପକ୍ଷେତ୍ରରେ ସେ ଜଣାଶୁଣା ନାମ ହୋଇସାରିଥିଲେ । ପୁଅ ଦୁଇଜଣ ଆମେରିକାରେ ପଢୁଥିଲେ ଓ ଝିଅ ବମ୍ବେର ଏକ ନାମଜାଦା ରେସିଡେନ୍‌ସିଆଲ୍ ସ୍କୁଲରେ ନାମ ଲେଖାଇଥିଲା । ମୋହନ ସିଂଙ୍କର ବୈଷୟିକ ଉନ୍ନତି ହୋଇଚାଲିଥିବା ସମୟରେ ମେନକା ସିଂ କେବଳ ତାଙ୍କର ପତ୍ନୀତ୍ୱର ପରିଚିତି ନେଇ ବସିରହି ନଥିଲେ । ଏ ମଧ୍ୟରେ ଅନେକ ଅନୁଷ୍ଠାନ ସହିତ ସେ ସଂପୃକ୍ତ ହୋଇସାରିଥିଲେ । ତାଙ୍କର ଦୁଃସାହସିକ ପ୍ରଣୟ ଜନିତ କାରବାର ମଧ୍ୟ ସାଧାରଣ ମହଲରେ ଚର୍ଚ୍ଚାର ବିଷୟ ହୋଇପଡ଼ିଥିଲା ।

ଏକଥା ମଧ୍ୟ ଚର୍ଚ୍ଚା ହେଉଥିଲା ଯେ ମେନକା ସିଂ, ଅନିନ୍ଦ୍ୟ ବୋଷଙ୍କ ସହ ଏକାଧିକବାର ବିଦେଶ ଭ୍ରମଣରେ ଯାଇଥିଲେ ଓ ଦେଶର ବଡ଼ ବଡ଼ ସହରରେ ପଞ୍ଚତାରକା ହୋଟେଲମାନଙ୍କରେ ରହୁଥିଲେ । ଏହା ଗୁଜବ ବା ସତ୍ୟଥିଲା ଜାଣିବା କଷ୍ଟକର । କିନ୍ତୁ ସେମାନଙ୍କର ଯେ ବନ୍ଧୁତା ଥିଲା, ଏହା ପ୍ରାୟ ସମସ୍ତେ ଜାଣିଥିଲେ । ଏହାକୁ ହୁଏତ କିଏ କେଉଁ ପ୍ରକାର ରୂପ ଦେଉଥିଲେ । ତେବେ ଏଇ ଚର୍ଚ୍ଚାର ଅନିନ୍ଦ୍ୟ ବୋଷଙ୍କୁ ଟିକିଏ ଗର୍ବିତ ମଧ୍ୟ କରିଥିଲା । ମେନକା ସିଂ ତାଙ୍କର ସାନପୁଅ ଭରତଙ୍କ ପାଖକୁ ବମ୍ବେ ଯାଇ ବସବାସ ଆରମ୍ଭ କଲାପରେ, ଅନିନ୍ଦ୍ୟ ବୋଷଙ୍କ ବନ୍ଧୁମାନେ ସମୟ ସମୟରେ ଏଇ ବିଷୟ ତାଙ୍କୁ ଶ୍ଳେଷର ସହ ଦୋହରାଇ ଦେଉଥିଲେ । ଆଜି ଏଇ ଆସରରେ ମଧ୍ୟ ନବୀନ୍ କାପୁର୍ ବୋଧହୁଏ ସେହି ପ୍ରଚାରକୁ ଇଙ୍ଗିତ କରିବାକୁ ଚେଷ୍ଟା କରୁଥିଲେ ଓ ତାହା ଅନିନ୍ଦ୍ୟ ବୋଷଙ୍କୁ ଯଥେଷ୍ଟ ଅପ୍ରତିଭ କରିଥିଲା ।

ମୋହନ ସିଂଙ୍କ ବଡ଼ପୁଅ ଅଜିତ୍ ସିଂ ଆମେରିକାରୁ ଇଂଜିନିଅରିଂ ପାସ୍ କରି ଆସିବା ବେଳକୁ ସେ ଛୋଟଧରଣର ଲୌହ ଇସ୍ପାତ୍ କାରଖାନାଟିଏର ମାଲିକ ହୋଇଯାଇଥିଲେ । ଏଇ କାରଖାନାଟି ପ୍ରଥମେ ଜଣେ ଫରାସୀ ଶିଳ୍ପପତିଙ୍କର ଥିଲା । ଦେଶ ସ୍ୱାଧୀନ ହେବା ପରେ ଭାରତର ଏଇ ଛୋଟ ସହରଟିରେ ଏକୁଟିଆ ଉତ୍ପାଦନ ଓ ବିକ୍ରୟ କରିବା ସେହି ବିଦେଶୀ ନାଗରିକଙ୍କ ପକ୍ଷେ କଷ୍ଟକର ହୋଇପଡ଼ିଥିଲା । ତେଣୁ ଅନେକ ବର୍ଷଧରି ଫାକ୍‌ଟରୀଟି ତାଲାବନ୍ଦ ହୋଇ ରହିଥିଲା । ଫାକ୍‌ଟରୀର ଲୁହାକବାଟରେ କଳଙ୍କି ଲାଗିଯାଇଥିଲା ଓ ପାଚେରି ଉପରକୁ ଉଠିଥିବା ବଡ଼ ବଡ଼ ବୁଦା ଓ ଘାସ ବାହାରକୁ ଦିଶୁଥିଲା । ଏଇ ଫାକ୍‌ଟରୀଟିର ଭବିଷ୍ୟତ ବିଷୟରେ ସମସ୍ତେ ସନ୍ଦିହାନ ଥିଲେ । ବିଦେଶୀ ଶିଳ୍ପପତି ଜଣକ ଛଟେଇ ହୋଇଥିବା କର୍ମଚାରୀ ଓ ଶ୍ରମିକମାନଙ୍କୁ ମଧ୍ୟ ଥଇଥାନ କରିନଥିଲେ । ସେ ଏହାପରେ ଭାରତ ଛାଡ଼ିଦେଇଥିବାରୁ ତାଙ୍କର କର୍ମଚାରୀମାନେ

କୌଣସି ପ୍ରକାର ଦାବି, ଅଭିଯୋଗ ବା ଧାରଣା ଇତ୍ୟାଦି କରିବାର ସୁଯୋଗ ପାଇ ନ ଥିଲେ । ମୋହନ ସିଂ ଇତ୍ୟବସରରେ ସେହି ପୁରୁଣା କଳଙ୍କିଲଗା ଅପେକ୍ଷାକୃତ ଆଶାହୀନ ଫାକ୍ଟରୀଟିକୁ କିଣିନେଲେ । ତାଙ୍କ ଆଇନ ପରାମର୍ଶଦାତା ଅମରେନ୍ଦ୍ର ପ୍ରସାଦ କୁହନ୍ତି ଯେ ସେ ବହୁଭାବରେ ମୋହନ ସିଂଙ୍କୁ ଏ ପ୍ରକାର ଦୁଃସାହସିକ ନିଷ୍ପତ୍ତି ନେବାରୁ ନିବର୍ତ୍ତାଇଥିଲେ । କିନ୍ତୁ ମୋହନ ସିଂଙ୍କର ଏଇ ସିଦ୍ଧାନ୍ତ ଅଟଳ ଥିଲା । ସେ ଅନେକବାର ଫ୍ରାନ୍ସ ଯାତ୍ରାକରି ଫରାସୀ ଶିଳ୍ପପତିଙ୍କୁ ଭେଟୁଥିଲେ ଓ ଶେଷରେ ଫାକ୍ଟରୀଟିକୁ କିଣିପକାଇଥିଲେ । ଅନେକଙ୍କ କହିବା ଅନୁଯାୟୀ ହୁଏ'ତ ଅତି କମ୍ ମୂଲ୍ୟରେ କାରଖାନାଟି ତାଙ୍କୁ ମିଳିଯାଇଥିଲା । ଏହାପରେ ପ୍ରାୟ ଦୁଇବର୍ଷ ସେ ଅତ୍ୟନ୍ତ ପରିଶ୍ରମକରି କାରଖାନାଟିକୁ ସଜାଡ଼ିଥିଲେ । ପୁରୁଣା, ନୂଆ କର୍ମଚାରୀମାନଙ୍କୁ ଓ ଶ୍ରମିକମାନଙ୍କୁ ନିଜେ ପରୀକ୍ଷାକରି ନିଯୁକ୍ତି ଦେଇଥିଲେ ।

ଶେଷରେ ଅତ୍ୟନ୍ତ ପ୍ରତୀକ୍ଷିତ ମୋହନ ସିଂଙ୍କର ପ୍ରଥମ କାରଖାନାର ଶୁଭ ଉତ୍ପାଦନର ପ୍ରଥମ ଦିବସର ଶୁଭ ମୁହୂର୍ତ୍ତଟି ଆସିଲା । ରାଜ୍ୟର ଶିଳ୍ପ ଉପମନ୍ତ୍ରୀ ଶୁଭ ଉଦ୍‌ଘାଟନ କରିବାକୁ ଆମନ୍ତ୍ରିତ ହୋଇଥିଲେ । ଅତ୍ୟନ୍ତ ଆଡ଼ମ୍ବରପୂର୍ଣ୍ଣ ମନୋଜ୍ଞ ସାଜସଜ୍ଜାରେ ଉତ୍ସବଟି ଆରମ୍ଭ ହୋଇଥିଲା । ବ୍ଲାଷ୍ଟ୍‌ଫର୍ଣ୍ଣେସ୍‌ରେ ପ୍ରଥମ ଲୁହାଖଣ୍ଡଟି ତରଳାଇ ତା'କୁ ଏକ ନିର୍ଦ୍ଦିଷ୍ଟ ଆକାରର ଲୌହଦ୍ରବ୍ୟ ତିଆରିକରି ପ୍ରଦର୍ଶିତ କରିବାର ଦାୟିତ୍ୱ ନ୍ୟସ୍ତ ହୋଇଥିଲା ମୋହନ ସିଂଙ୍କ ଜ୍ୟେଷ୍ଠପୁତ୍ର ଅଜିତ୍ ସିଂଙ୍କ ଉପରେ । ଅଜିତ୍ ସିଂ ସେଇମାତ୍ର ଆମେରିକାରୁ ଇଂଜିନିଅରିଂରେ ଡିଗ୍ରୀ ପାଇ ପ୍ରତ୍ୟାବର୍ତ୍ତନ କରିଥାଆନ୍ତି । ଉତ୍ସୁକ, ଆଗ୍ରହୀ ଜନସମାବେଶ ସମ୍ମୁଖରେ ମୋହନ ସିଂଙ୍କ ସୁପୁତ୍ର ସୌମ୍ୟଦର୍ଶନ ଅଜିତ୍ ସିଂ ନିଜର କର୍ମ-କୌଶଳର ପରିଚୟ ଦେବାକୁ ଆଗେଇ ଆସିଥିଲେ । ସୁଚାରୁରୂପେ ସେ ଦୂରତ୍ୱ ବଜାୟ ରଖି ଲୌହଖଣ୍ଡକୁ ତରଳାଇ ନିର୍ଦ୍ଦିଷ୍ଟ ଆକାରର ଦଣ୍ଡ ପ୍ରସ୍ତୁତିପାଇଁ ବ୍ଲାଷ୍ଟ୍‌ଫର୍ଣ୍ଣେସ୍ ଭିତରକୁ ଆଗେଇଦେଲେ । କିନ୍ତୁ ଅତ୍ୟନ୍ତ ଦୁର୍ଭାଗ୍ୟ ଓ ବିସ୍ମୟର ବିଷୟ ସେ'ଦଣ୍ଡଟି ଛିଟିକିପଡ଼ି ବାହାରିଆସିଲା ଓ ଟକ୍‌ଟକ୍ ଲାଲ ଜ୍ୱଳନ୍ତ ଉତପ୍ତ ଲୌହଦଣ୍ଡଟି ନିମିଷକ ମଧ୍ୟରେ ଅଜିତ୍ ସିଂଙ୍କର ବକ୍ଷ ବିଦ୍ଧ କଲା । ହତଚକିତ ସମବେତ ଜନତା ସମ୍ମୁଖରେ ଯାଦୁକରୀ ପରି ଅଜିତ୍ ସିଂ ତଳେପଡ଼ି ଛଟପଟ ହେଉଥିଲେ । କେହି କିଛି ବୁଝିପାରିବା ପୂର୍ବରୁ ତାଙ୍କର ପ୍ରାଣପକ୍ଷୀ ଶରୀର ତ୍ୟାଗ କରିସାରିଥିଲା । ଏକ ଅସମ୍ଭବ କାରୁଣ୍ୟ କେବଳ ସେହି ସଭା ନୁହେଁ, ପୂରାପୂରି ସହରଟିକୁ ଅନେକଦିନଯାଏ ଆଚ୍ଛନ୍ନ କରି ରଖିଥିଲା । ଏଇଟିକୁ ଏକ ଅଭୂତପୂର୍ବ ଅଶୁଭ ଶକୁନ ବୋଲି ଅଧିକାଂଶ ମତ ଦେଇଥିଲେ । ମୋହନ ସିଂ ଏହି କାରଖାନାଟିକୁ ବିକ୍ରି କରିଦେବା ଉଚିତ ବା ବନ୍ଦ କରିଦେବା ଉଚିତ ବୋଲି ଶୁଭାନୁଧ୍ୟାୟୀ ବନ୍ଧୁମାନେ ପରାମର୍ଶ ଦେଇଥିଲେ । ମୋହନ ସିଂ କିନ୍ତୁ ସେଇ ପରାମର୍ଶକୁ କେତେଦୂର ପର୍ଯ୍ୟନ୍ତ ଗ୍ରହଣ କଲେ ତାହା ଜଣାପଡ଼ିଲା

ନାହିଁ । ଉଦ୍‌ଘାଟନ ଉତ୍ସବ ପାଳିତ ହୋଇ ନ ପାରିଥିଲେ ମଧ୍ୟ, ତା'ପରଦିନଠାରୁ ଉତ୍ପାଦନ କରିବା ପୂର୍ବରୁ ମଧ୍ୟ ମୋହନ ସିଂ ନିଜେ କାର୍ଯ୍ୟାଳୟକୁ ଆସି କାରଖାନା କାର୍ଯ୍ୟ ତଦାରଖ କରୁଥିଲେ । ଏହାଦ୍ୱାରା ମୋହନ ସିଂ ଯେ ଅତ୍ୟନ୍ତ ପ୍ରଫେସନାଲ୍ ଓ ବିଷୟୀ ତାହା ତାଙ୍କର ବନ୍ଧୁ ମହଲରେ ଅତ୍ୟନ୍ତ ଦୃଢ଼ଭାବରେ ପ୍ରତିପାଦିତ ହୋଇଥିଲା ।

ମୋହନ ସିଂ ଏଇ ଘଟଣା ପରେ କୌଣସି ଉଲ୍ଲେଖନୀୟ ଦୁର୍ଯୋଗର ସମ୍ମୁଖୀନ ହୋଇଥିବାର ଜଣାପଡ଼ିନାହିଁ । ବରଂ ତାଙ୍କର ଶିଳ୍ପ ଓ ବ୍ୟବସାୟ ଅତି ଦ୍ରୁତଗତିରେ ଉନ୍ନତି କରିବାକୁ ଆରମ୍ଭ କରିଥିଲା । ଦଶବର୍ଷ ଭିତରେ ସେ ଛୋଟବଡ଼ ସାତୋଟି ଶିଳ୍ପ ପ୍ରତିଷ୍ଠାନର ମାଲିକ ହୋଇଥିଲେ ଓ ନିଜକୁ ମଧ୍ୟମ ଧରଣର ଶିଳ୍ପପତିରୂପେ ପ୍ରତିଷ୍ଠିତ କରିପାରିଥିଲେ ।

ମୋହନ ସିଂ ମଧ୍ୟମ ସ୍ୱାସ୍ଥ୍ୟ, ମଧ୍ୟମ ଉଚ୍ଚତାବିଶିଷ୍ଟ ଗୌରବର୍ଣ୍ଣ ଥିଲେ । ତାଙ୍କ ଚେହେରାର ବୈଶିଷ୍ଟ୍ୟ ଥିଲା ତାଙ୍କର ନାକ; ମୁହଁକୁ ଚାହିଁବା ମାତ୍ରକେ ତାଙ୍କର ନାକଟି ବାରିହୋଇ ପଡ଼ିବ । ଏମିତିରେ ଧାରୁଆ ପତଳା ମୁହଁ । ଅସମ୍ଭବ ଧରଣର ଶାନ୍ତ ଥିଲା ତାଙ୍କର ସ୍ୱଭାବ । ଅତି ଅଳ୍ପ କଥା କହୁଥିଲେ ସେ ଓ ବୋଧହୁଏ ସେଇଥିପାଇଁ ତାଙ୍କ ସହ କଥାହେଉଥିବା କୌଣସି ବ୍ୟକ୍ତି ଅତି ଉତ୍ସାହ ବା ଉତ୍ତେଜନା ଦେଖାଇପାରୁ ନ ଥିଲେ । ସେ ମଧ୍ୟ ଅତି ଧୀର ସ୍ଥିର, ନିସ୍ପୃହ ଭାବରେ କଥା ଶୁଣୁଥିଲେ । ଅଧିକାଂଶ ସମୟରେ ସେ ନୀଳରଙ୍ଗର ବ୍ଲେଜର୍ ପିନ୍ଧୁଥିଲେ ଓ ବାଁ ହାତ ପାପୁଲିଟି ତାଙ୍କର ପ୍ରାୟ କୋଟ୍ ପକେଟ୍ ଭିତରେ ରହୁଥିଲା ।

ମୋହନ ସିଂଙ୍କର ମୃତ୍ୟୁ ଆକସ୍ମିକ ବା ଅସ୍ୱାଭାବିକ ନଥିଲା । ପଞ୍ଚସ୍ତରୀ ବର୍ଷ ବୟସରେ ଯଦିଓ ସେ ହୃଦ୍‌ରୋଗରେ ମୃତ୍ୟୁବରଣ କରିଥିଲେ, ସେତେବେଳେ ପର୍ଯ୍ୟନ୍ତ ସେ ହୁଏତ ସଫଳ ଭାବରେ ନିଜ ଜୀବନ ବଞ୍ଚିସାରିଥିଲେ । କିନ୍ତୁ ଜ୍ଞାତିପରିଜନ ଓ ବନ୍ଧୁମାନଙ୍କୁ ଏହା ଏକ ଆକସ୍ମିକ ଘଟଣାପରି ଲାଗୁଥିଲା । ଏ ଭିତରେ ତାଙ୍କର ପତ୍ନୀ ମେନକା ସିଂ, ପୁତ୍ର ଭରତ ସିଂ ଓ ଏକମାତ୍ର କନ୍ୟା ରୋହିଣୀସହ ନିଜ ପତିଗୃହରେ ପହଞ୍ଚି ସାରିଥିଲେ । ଶୁଦ୍ଧିକ୍ରିୟାରେ ଯୋଗଦାନ ପ୍ରତି ଆଗ୍ରହ ଯୋଗୁ ବା ସଂପତ୍ତି ଆବଣ୍ଟନର ଦ୍ରଷ୍ଟା ହେବାର ଉତ୍ସୁକତା ହେତୁ, ଆହୁରି କେତେକ ଜ୍ଞାତି ପରିଜନଙ୍କର ମଧ୍ୟ ସମାଗମ ହୋଇସାରିଥିଲା । ଆଇନଜ୍ଞ ଅମରେନ୍ଦ୍ର ପ୍ରସାଦଙ୍କୁ କିନ୍ତୁ ଏମାନେ ସମସ୍ତେ ବାରମ୍ବାର ଫୋନ୍‌କରି ବ୍ୟତିବ୍ୟସ୍ତ କରୁଥିଲେ । କୌଣସି ଆଇନସମ୍ବନ୍ଧୀୟ କାଗଜପତ୍ର ବା ଉଇଲ୍ ଇତ୍ୟାଦିର ସାକ୍ଷୀ ହେବାର ଦାୟିତ୍ୱ ନିଶ୍ଚୟ ତାଙ୍କ ଉପରେ ନ୍ୟସ୍ତ ଥିଲା । ଅମରେନ୍ଦ୍ର ପ୍ରସାଦ ସେମାନଙ୍କୁ କୌଣସି ସନ୍ତୋଷଜନକ ଉତ୍ତର ଦେଇପାରୁ ନଥିଲେ ଓ ଏଥିପାଇଁ ଅତ୍ୟନ୍ତ ଅସ୍ୱସ୍ତି ମଧ୍ୟ ଅନୁଭବ କରୁଥିଲେ । ପ୍ରକୃତ କଥାହେଲା ମୋହନ ସିଂଙ୍କର ହଠାତ୍ ଏମିତି ସ୍ୱର୍ଗବାସ ହୋଇଯିବ ବୋଲି ସେ ଭାବିନଥିଲେ ଓ ମୋହନ ସିଂ ମଧ୍ୟ ନିଜର

ସଂପତ୍ତି ବିଷୟରେ କୌଣସି ଅଭିଳାଷ ତାଙ୍କ ସମ୍ମୁଖରେ ପ୍ରକାଶ କରିନଥିଲେ । ଆଜି ସଂଧ୍ୟାର ଏହି ବନ୍ଧୁ ସମ୍ମିଳନର ପ୍ରକୃତ ଉଦ୍ଦେଶ୍ୟ ଥିଲା, ଅମରେନ୍ଦ୍ର ପ୍ରସାଦଙ୍କୁ ଏ ଦିଗରେ କୌଣସି ପ୍ରକାର ସହଯୋଗ କରିବା । ଅମରେନ୍ଦ୍ର ପ୍ରସାଦ ଧୀରେ ଧୀରେ ବିବ୍ରତ ଦିଶୁଥିଲେ । କିଛି ସମାଧାନ ନ ପାଇପାରିବାର ବିଫଳତା ତାଙ୍କୁ ଅସ୍ଥିର କରିବାକୁ ଆରମ୍ଭ କରିଥିଲା ।

''ହଁ, ତେବେ କିଛିହେଲେ ବୁଢ଼ା କହିନାହିଁ ?''

ପୁନଶ୍ଚ ନୀରବତା ଭଙ୍ଗକରି ଅନିନ୍ଦ୍ୟ ବୋଷଙ୍କ ପ୍ରତି ଉଚ୍ଚାରଣ କଲେ ଅମରେନ୍ଦ୍ର ପ୍ରସାଦ ।

ଏଥର ଅନିନ୍ଦ୍ୟ ବୋଷ ଟିକିଏ ବିରକ୍ତ ହେଲାଭଳିଆ ଦିଶିଲେ । ''କ'ଣ ସବୁ ଇଆଡୁ ସିଆଡୁ କଥା କହୁଥିଲା ବୁଢ଼ା ଦିନେ, ଯେମିତି ଲୋକଙ୍କ ମୁଣ୍ଡ ଖରାପ ହୁଏ । ଚାରିପାଞ୍ଚ ଥର ଆସି ଖାଲି ପଚାରୁଥିଲା, ତା' ଫ୍ୟାମିଲି ଆଲବମ୍‌ଟା ଆମଘରେ ରହିଯାଇଛି କି । ମେନକାଙ୍କ ସହ ମୋ ସ୍ତ୍ରୀ ଅନୀତାଙ୍କର ଭଲ ବନ୍ଧୁତା ଥିଲା ତ, ବୋଧହୁଏ ସେଇଥିପାଇଁ । ମୁଁ ବାରମ୍ବାର ମନାକରିଥିଲି । ବୁଢ଼ା ମନେରଖି ନଥିଲା ନା କ'ଣ ପୁଣିଥରେ ଆସି ସେଇ କଥା ପଚାରୁଥିଲା । ଥରେ ମୁଁ ଅନୀତାଙ୍କୁ ଡାକି ମଧ୍ୟ ତା'ଆଗରେ ପଚାରିଲି ଓ ଅନୀତା ସ୍ପଷ୍ଟ ମନାକଲେ ।''

ଅଳ୍ପ ସମୟପାଇଁ ପୁନର୍ବାର ନୀରବତା ବିରାଜମାନ କଲା । ''କାହାର ଫଟୋ ଖୋଜୁଥିଲା ? କିଛି କହିଥିଲା କି ?'' ଅମରେନ୍ଦ୍ର ପ୍ରସାଦ ଉତ୍ସୁକ ହୋଇଉଠିଲେ, କାଳେ ସାମାନ୍ୟ କିଛି ସୂରାକ ମିଳିଯିବ !

''ହଁ, ଥରେ ମୁଁ ପଚାରିଥିଲି । ବଡ଼ ଅଜବ ଥିଲା ବୁଢ଼ାର ଉତ୍ତର । ବୁଢ଼ା କହିଥିଲା ଗୋଟିଏ ବରଗଛର ଫଟୋ ସେ ରଖିଥିଲା ସେଇ ଆଲବମ୍‌ରେ– କୋଉ ଜାଗାର କେଜାଣି ସେ କହିଥିଲା, କିନ୍ତୁ ମୁଁ ମନେରଖିପାରିନାହିଁ । କେଉଁ ପାଞ୍ଚଶହ ବର୍ଷ ତଳର ବରଗଛର ଫଟୋ– କୁଆଡ଼େ ବୁଢ଼ା ସେଇ ଫ୍ୟାମିଲି ଆଲ୍‌ବମ୍‌ରେ ତା'କୁ କେଉଁଠି ଲଗାଇଥିଲା । ଏଇଟା ତା'ର ନିଶ୍ଚୟ ମତିଭ୍ରମର ଲକ୍ଷଣ । ନହେଲେ ବରଗଛର ଫଟୋ –ଫ୍ୟାମିଲି ଆଲ୍‌ବମ୍‌ରେ ଓ ସେ ପୁଣି ମୋତେ ବାରମ୍ବାର ମାଗୁଥିଲା । ଛାଡ଼ ସେସବୁ....'' ଅନିନ୍ଦ୍ୟ ବୋଷ ଦାୟିତ୍ୱମୁକ୍ତ ଲାଗୁଥିଲେ ।

''ତେବେ ଆଉ ଉପାୟ ନାହିଁ । ଯେହେତୁ ବୁଢ଼ାର ଲକର୍ ଚାବି ମିଳୁନାହିଁ, ଲକର୍ ଭାଙ୍ଗିବାକୁ ପଡ଼ିବ । ନିଶ୍ଚୟ କିଛି କାଗଜପତ୍ର ତା'ଭିତରେ ଥିବ ।'' ଅମରେନ୍ଦ୍ର ପ୍ରସାଦ ଦୀର୍ଘଶ୍ୱାସ ଛାଡ଼ିଲେ ।

ପରଦିନ ସମସ୍ତ ପରିବାର ଗହଣରେ ଲକର୍ ଭଙ୍ଗାଯାଇଥିଲା । ଏତେବଡ଼ ଲକର୍ । ଭିତର ଏକଦମ୍ ଶୂନ୍ୟ । ପ୍ରଚଣ୍ଡ ଭୋକରେ ଭୋଜିଖାଇବାକୁ ଅପେକ୍ଷା କରିଥିବା

ଲୋକଙ୍କ ଆଖିସାମନାରେ ପଲାଉ, ମାଂସ ତରକାରି ପୋଛାପୋଛି ହୋଇ ସରିଗଲେ ଯେମିତି ଏକ ବିକଳିଆ ନିରାଶା ଝୁଲୁଥାଏ ସମସ୍ତଙ୍କୁ ସେମିତି ଲାଗୁଥିଲା ! ମେନକା ସିଂ ଲୋକଦେଖାଣିଆ ଭାବରେ ଅଧୈର୍ଯ୍ୟ ହୋଇପଡ଼ିଥିଲେ । ନିରାଭରଣ, ନିରାଡମ୍ବର ଅବସ୍ଥାରେ ସେ ଲାଗୁଥିଲେ ଯେମିତି ଶ୍ରମକ୍ଳାନ୍ତ ଉତ୍ତୀର୍ଣ୍ଣ ବୟସର ଅଭିନେତ୍ରୀ ପରି !

ଏହାର ପରବର୍ତ୍ତୀ ପର୍ଯ୍ୟାୟରେ ଅତି ସାଧାରଣ ଜଣାଶୁଣା ସ୍ଥାନ; ଯଥା– ଆଲମାରି, ଫାଇଲ୍ କଭର୍ ଇତ୍ୟାଦି ହଠାତ୍ ବିଶେଷ ଧ୍ୟାନର ମର୍ଯ୍ୟାଦା ହାସଲକଲେ । ଏପର୍ଯ୍ୟନ୍ତ ମୋହନ ସିଂଙ୍କର ପରିବାରବର୍ଗ ଏସବୁକୁ ଅବଜ୍ଞା ତଥା ସହାନୁଭୂତିର ସହ ଆଡ଼େଇ ଦେଇଥିଲେ । ହଠାତ୍ ଗୁରୁତ୍ୱପୂର୍ଣ୍ଣ ହୋଇଉଠିଲେ ଏତକ ଓ ପରିବାରବର୍ଗ, ଭୃତ୍ୟ, ପରିଚାରିକା ଇତ୍ୟାଦି କେବେହେଲେ ସ୍ପର୍ଶ କରିନଥିବା ଏହି ସବୁ ଜିନିଷକୁ ଅତି ଆବେଗ ଓ ଉତ୍ସାହର ସହ ସାଉଁଳାଇବାକୁ ଲାଗିଲେ । ନା, ସେହି ଅତ୍ୟାବଶ୍ୟକ, ଅମୂଲ୍ୟ ସୂତ୍ରଟିର କୌଣସି ଚିହ୍ନବର୍ଣ୍ଣ ନଥିଲା । ହତାଶ, କ୍ଳାନ୍ତ ପ୍ରିୟ ପରିଜନ ଏଥର ଭଗ୍ନମନୋରଥ ହୋଇ କ୍ରିୟା-କର୍ମରେ ଯୋଗଦେଲେ । ଏହାପରେ ଏସବୁ କର୍ମରେ ଆଉ ସେହି ଲୁକ୍କାୟିତ ରହସ୍ୟମୟତାର ଛାପ ରହିଲା ନାହିଁ । କର୍ମ ସବୁ ଅତି ସାର୍ବଜନୀନ ଭାବରେ, ଗତାନୁଗତିକ ଭାବରେ ଘଟିଚାଲିବାକୁ ଲାଗିଲା, କୌଣସି ଆଗ୍ରହ ଉତ୍ସାହକୁ ବାଦ୍‌ଦେଇ । ତେବେ ଅମରେନ୍ଦ୍ର ପ୍ରସାଦଙ୍କୁ ରୀତିମତ ଅନୁରୋଧ କରାଯାଉଥିଲା, ଉତ୍ତରାଧିକାରୀମାନଙ୍କୁ ଆଇନଗତ ଭାବରେ ଚିହ୍ନଟ କରିବାପାଇଁ । ସେସବୁ ବର୍ତ୍ତମାନ ଉତ୍ତରାଧିକାରୀମାନଙ୍କ ମଧ୍ୟରେ ହିନ୍ଦୁ ପରିବାରର ନିୟମାନୁଯାୟୀ ଆବଣ୍ଟିତ ହେବ ।

ଶ୍ରାଦ୍ଧକ୍ରିୟା ସରିବାଦିନ ବିରାଟ ଜନସମାବେଶ ହୋଇଥିଲା । ପତ୍ନୀ, ପୁତ୍ର, କନ୍ୟା ଶେଷଥରପାଇଁ ସମଗ୍ର ସହରଟିକୁ ଆପ୍ୟାୟିତ କରିବାକୁ ଚାହିଁଥିଲେ ବୋଧହୁଏ ! ସେମାନେ ଯେ କେହି ମୋହନ ସିଂଙ୍କ ପରେ ସେଠାରେ ବସବାସ କରିବେ, ଏହା କେହି ଭାବୁନଥିଲେ । ପୁତ୍ର ଭରତ ଚାହିଁଥିଲେ ପିତା ଅନ୍ତଃକାଳରେ ଶୟନ କରୁଥିବା ଡବଲ୍ ବେଡ୍‌ଟିକୁ ଆଣି ଲିଭିଂରୁମ୍‌ରେ ରଖାଯିବ । ତା'ଉପରେ ମନୁଷ୍ୟାକୃତି ବିରାଟ ତୈଳଚିତ୍ର ରଖାଯାଇ ପୁଷ୍ପମାଲ୍ୟ ଅର୍ପଣ କରାଯିବ । ହୋମ, ଧୂପ, କର୍ପୂରର ସୁଗନ୍ଧ ଭିତରେ ଖଟଟିକୁ କେତେକ ପରିଚାରକ ଟେକିକରି ଆଣିଥିଲେ । ତା'ଉପରେ ଡନ୍‌ଲପ୍ ଗଦିକୁ ସଜାଡୁ ସଜାଡୁ ବଡ଼ ମାଟିଆ ରଙ୍ଗର ଲଫାପାଟିଏ ପାଇ ଭରତ ସିଂଙ୍କୁ ଦେଲା ଘରର ସବୁଠାରୁ ପୁରୁଣା ଚାକର ପୂର୍ଣ୍ଣ । ଭରତ ସିଂ ତରବରରେ ଖୋଲିପକାଇଲେ ତାକୁ । ତାଙ୍କ ମୁଖଭଙ୍ଗୀରୁ ଲାଗୁଥିଲା ସେ ବିସ୍ମିତ ହେଉଛନ୍ତି, କେମିତି ଏଇଟିକୁ ଏପର୍ଯ୍ୟନ୍ତ ପାଇନଥିଲେ ବୋଲି । ମେନକା ସିଂ ଓ ରୋହିଣୀ ଏତକ ଲକ୍ଷ୍ୟ କରୁଥିଲେ ବୋଧହୁଏ, ମୁହୂର୍ତ୍ତକ ମଧ୍ୟରେ ସେମାନେ ଆସି ପାଖରେ ଠିଆହୋଇଗଲେ । ଭରତ ସିଂ ପଢ଼ିବାକୁ ଆରମ୍ଭ କଲେ ଏକ ଫର୍ଦ୍ଦର ଛୋଟିଆ ଡକୁମେଣ୍ଟଟିକୁ । ମୁହଁ ଝାଳେଇ ଆସୁଥିଲା ତାଙ୍କର ।

ତାଙ୍କ ମୁହଁରୁ କ'ଣ ଦେଖିଲେ କେଜାଣି, ମେନକା ସିଂ ଓ ରୋହିଣୀଙ୍କ କର୍ମକ୍ଲାନ୍ତ ମୁଖ ମଧ୍ୟ ମ୍ଳାନପଡ଼ିଆସିଲା । ନୀରବରେ କାଗଜଟିକୁ ଅମରେନ୍ଦ୍ର ପ୍ରସାଦଙ୍କୁ ବଢ଼ାଇଦେଲେ ଭରତ ଓ ପାଖ ଚେଆର୍‌ରେ ମୁଣ୍ଡପୋତି ବସିପଡ଼ିଲେ, ଯେମିତି ସମସ୍ତ ଶକ୍ତି ସରିଯାଇଛି ଶରୀରରୁ ତାଙ୍କର । ଅମରେନ୍ଦ୍ର ପ୍ରସାଦ ମଧ୍ୟ ପଢ଼ିଲା ପରେ ଚିନ୍ତାମଗ୍ନ ଦିଶିଲେ । ଏହା ପ୍ରକୃତରେ ମୋହନ ସିଂଙ୍କର ଉଇଲ୍ ଥିଲା । ଉଇଲ୍‌ଟିରେ କାନପୁର ଠିକଣାର ଜଣେ ଓକିଲ ସାକ୍ଷୀରୂପେ ଦସ୍ତଖତ କରିଥିଲେ । ଉଇଲ୍‌ଟିର ବିଷୟବସ୍ତୁ ଅନୁଯାୟୀ ମୋହନ ସିଂଙ୍କର ସମସ୍ତ ସ୍ଥାବର, ଅସ୍ଥାବର ସଂପତ୍ତି ସେ ଚରଣଜିତ୍ ସିଂ ଓ ତାଙ୍କ ପତ୍ନୀଙ୍କୁ ଦେଇଯାଇଛନ୍ତି । ଏଇ ଚରଣଜିତ୍ ସିଂଙ୍କର ଏକ ଠିକଣା ମଧ୍ୟ ସେ ଉଇଲ୍‌ରେ ଲେଖାଥିଲା । ପରିବାରର କୌଣସି ସଦସ୍ୟ ଏହି ନାମଧାରୀ ବ୍ୟକ୍ତିଙ୍କୁ ଜାଣିନଥିଲେ । ଉଇଲ୍‌ରେ ଲେଖାଯାଇଥିବା ଠିକଣା ପଢ଼ି ପରିବାରର ମୁଖ୍ୟ ସଦସ୍ୟଗଣ ଓ ଓକିଲ ଅମରେନ୍ଦ୍ର ପ୍ରସାଦ ଏକ ଜରାଜୀର୍ଣ୍ଣ ଝାଟିମାଟି କୁଡ଼ିଆ ନିକଟରେ ପହଞ୍ଚିଲେ । ସେଇ ଘରର ମୁଖ୍ୟ ଦୁଆରଟି ହାତମାରିବାକ୍ଷଣି ଭାଙ୍ଗିପଡ଼ିବା ପରି ଲାଗୁଥିଲା– ତାଲା ମଧ୍ୟ ପଡ଼ିନଥିଲା । ଅନେକବର୍ଷ ଧରି କୁଡ଼ିଆଟି ବ୍ୟବହୃତ ହୋଇନଥିଲା ପରି ଲାଗୁଥିଲା । ପାଖ ପଡ଼ୋଶୀଙ୍କଠାରୁ ଅନୁସଂଧାନରୁ ଯାହା ଜଣାପଡ଼ିଥିଲା, ଚରଣଜିତ୍ ସିଂ ଓ ତାଙ୍କ ପତ୍ନୀ ଗୋଟିଏ ବିକଳାଙ୍ଗ ପୁତ୍ରକୁ ନେଇ କିଛିବର୍ଷ ତଳ ପର୍ଯ୍ୟନ୍ତ ଏଠାରେ ରହୁଥିଲେ । କୁଆଡ଼େ ଚାଲିଯାଇଛନ୍ତି, ତାଙ୍କର କୌଣସି ଠିକଣାନାହିଁ । ଚରଣଜିତ୍ ସିଂ, ମୋହନ ସିଂଙ୍କର ଗାଁର ଲୋକ । ଏ ସହରରେ କପର୍ଦ୍ଦକଶୂନ୍ୟଭାବରେ ପ୍ରଥମେ ପାଦ ଦେଲାବେଳେ ମୋହନ ସିଂ ବୋଧହୁଏ ଚରଣଜିତ୍‌ଙ୍କ ପାଖରେ କିଛିବର୍ଷ ରହିଥିଲେ, ମୋହନ ସିଂଙ୍କ ଗ୍ରାମରୁ ମଧ୍ୟ ଚରଣଜିତ୍‌ଙ୍କର କୌଣସି ପତ୍ତା ମିଳିଲାନାହିଁ । ଏତେବଡ଼ ପୃଥିବୀରେ ଚରଣଜିତ୍ ସିଂ, ତାଙ୍କ ପତ୍ନୀ ଓ ବିକଳାଙ୍ଗ ପୁତ୍ର କେଉଁଠି ଅଛନ୍ତି, ଅଛନ୍ତି ତ କିପରି ଅଛନ୍ତି, ବଞ୍ଚିଛନ୍ତି କି ନାହିଁ, ତାହା କାହାରିକୁ ଜଣାନାହିଁ ।

ଏପରି ଏକ ଅପକର୍ମପାଇଁ ମୋହନ ସିଂଙ୍କୁ ନିନ୍ଦିବାରେ ଅତିଥି ଅଭ୍ୟାଗତମାନେ ମଧ୍ୟ ତାଙ୍କର ପରିବାରବର୍ଗ ସହ ଏକାତ୍ମ ହୋଇଥିଲେ । ଓଦା ବତୁରାଲୁଗା ପରି ଦିଶୁଥିଲା ମେନକା ସିଂଙ୍କ ମୁହଁ । ପାଗଳା ବୁଢ଼ାକୁ ଛାଡ଼ି ବନ୍ଧେ ଚାଲିଯିବା ଛଡ଼ା ତାଙ୍କର ଗତ୍ୟନ୍ତର ନ ଥିଲା ବୋଲି ସେ ବାରମ୍ବାର କହୁଥିବାର ଦେଖାଗଲା । ଭୋଜିମଣ୍ଡପ ଲାଗୁଥିଲା ଯେମିତି ହଠାତ୍ ଲୁଣ୍ଠନକାରୀଙ୍କ ଆକ୍ରମଣରେ ପଳାୟନ କରିଥିବା ରାଜପରିବାରର ପରିତ୍ୟକ୍ତ ଅନ୍ତଃପୁର ପରି ।

□□□

# ଶୀତଦିନିଆ ଛୁଟିରେ ତୁମେ

ଡିସେମ୍ବର ଦୁଇ ତାରିଖ ସକାଳ ।

ଦିଲ୍ଲୀପରି ହାଡ଼ଥରା ଶୀତ ନାହିଁ —ବରଂ ଆରାମ ଲାଗୁଛି । ପହଞ୍ଚୁ ପହଞ୍ଚୁ ଭାବିଲି ପବ୍ଲିକ୍ ବୁଥ୍‌ରୁ ତୁମକୁ ଫୋନ୍‌ଟେ କରେ । ତୁମେ ଶୋଇଥିବ । ଶୋଇଥିବାବେଳେ ତୁମେ ଅଦ୍ଭୁତ ନିରୀହ ଲାଗ— ଓଠ ଦୁଇଟି ସାମାନ୍ୟ ଖୋଲା ଓ ଆଖି ଅଧାବୁଜା । ମୋ ନିଦ ଭାଙ୍ଗିଗଲେ ମଧ୍ୟ ମୁଁ ସିଗାରେଟ୍ ଲଗାଏନାହିଁ — କାଳେ ଗନ୍ଧରେ ତୁମେ ଉଠିପଡ଼ିବ । ନା, ତୁମର ସକାଳୁଆ ଶାନ୍ତନିଦକୁ ଭାଙ୍ଗିଦେଇ ହେବନାହିଁ । ତା'ପରେ କି କଥା ବା କହିହେବ ? ଦାନ୍ତ ଘଷିସାରିଲି— ଗାଧୋଇ ସାରିଲିଭଳି କଥା ତ ଅନ୍ତତଃ ତୁମ ସହ କହିହେବ ନାହିଁ ।

ବରଂ ଥାଉ ପରେ ।

ଅଥଚ ଦେଖ— ଘରେ ପହଞ୍ଚିସାରିବା ପରେ ମୁହୂର୍ତ୍ତେ ଏକାନ୍ତ ପାଇପାରିଲି ନାହିଁ । କଥା କହିବାପାଇଁ ଟିକିଏ ଏକୁଟିଆ ସମୟ ତ ଦରକାର ! ଅନ୍ୟ ସମସ୍ତେ ଥିଲେ ବି ତୁମ କଥା ଭାବିବାକୁ କୌଣସି ଅସୁବିଧା ନାହିଁ । କିନ୍ତୁ କଥା କହିବା ଅଲଗା ।

''ଦିଲ୍ଲୀରେ କେତେ ଶୀତ ପଡ଼ିଛି ?''

''ହଁ, ସେମିତି । ଏବର୍ଷ ଏତେ ଅଧିକ ନୁହେଁ ।''

ତୁମେ ନରମ ରେଜେଇ ଭିତରେ ଘୋଡ଼ିହୋଇ ତକିଆ ଭିତରେ ମୁହଁଗୁଞ୍ଜି ଶୋଇଥିବ ଏବେ । ତୁମର ଏଇ ଶୋଇବା ଭଙ୍ଗୀ ମୋର ଅତି ପରିଚିତ; କାରଣ ଅଧିକାଂଶ ବେଳେ ତୁମେ ଏଇଭଳି ଶୁଅ— ଯେତେବେଳେ ଗଭୀର-ନିଦରେ ଶୋଇଥାଅ ।

''ଯା'ଦାନ୍ତ ଘଷିଦେ । ସେଇଠି ଟାୱେଲ୍ ଅଛି ।'' — ''ଗରମ ପାଣି ଦରକାର ନା ଦରକାର ନାହିଁ ।'' — ''ଉଁ, ହଁ.... ନାହିଁ, ଥାଉ, ଚଳିବ ।'' ସେଭିଂ ସେଟ୍‌ଟାପାଇଁ ଭୁଲିଯାଇଥିଲି, ଅରୁଣର ବ୍ୟବହାର କରିବାକୁ ପଡ଼ିଲା । ଭଲଲାଗୁନଥିଲା । ମୋତେ କେବେ ବି ଭଲଲାଗେ ନାହିଁ । ଚା' କପ୍ ଓ ପାଣି ଗ୍ଲାସ୍ ଡାଇନିଂ ଟେବୁଲ୍ ଉପରେ ରଖାହୋଇଗଲାଣି । ଚେଆର୍‌ରେ ନା ସୋଫାରେ ବସିବି ? ସକାଳର ଚା'କପ୍ ଧରି ତୁମେ ସୋଫାରେ ପ୍ରାୟ ବସିଯାଅ । ପାଦ ଦୁଇଟି ସୋଫା ଉପରକୁ ଟେକିନିଅ— କୋଳ ଭିତରେ ଦୁଇ ହାତରେ ଚା' କପ୍‌ଟି ଧରିଥାଅ— ମଝିରେ ମଝିରେ ଓଠରେ ଲଗାଅ । ଯେମିତି ଅତି ଆଦରର କଇଁଫୁଲିଆ ଛୋଟ ଛୁଆକୁ ନରମ ଭାବରେ ଚୁମୁଛ । ବେଳେ ବେଳେ ଈର୍ଷା ହୁଏ

ମୋର । ତା' କପ୍‌କୁ ନୁହେଁ– ତୁମର ସେହି ଅନ୍ତରଂଗ ଅନ୍ୟମନସ୍କ ଭାବକୁ – ସେତେବେଳେ ସେ ମୋର ବୋଲି ଲାଗନାହିଁ ତ !

ଏବେ ଗିଫ୍‌ଟ କାଢ଼ିବା ପର୍ବ–

''ସ୍ୱେଟର୍‌ଟା ମୋତେ ଛୋଟ ହେବନାହିଁ ତ ?''

''ପରଫ୍ୟୁମ୍‌ଟା ନିଶ୍ଚୟ ଭଲହୋଇଥିବ – ବିଦେଶୀ । ଥ୍ୟାଙ୍କ୍ ୟୁ ।''

''ସେଇଟା, ସେଇଟା କ'ଣ ?''

''କିଛି ନୁହେଁ । ତୋର ନୁହେଁ ।''

''ତେବେ ବି ଦେଖା ନା ଟିକେ ।''

''କିଛି ଦରକାର ନାହିଁ ।''

ଛୋଟ କାଚ ବାକ୍‌ସରେ ତୁମପାଇଁ ଛୋଟିଆ କିଛି । ତା'କୁ ତ ଦେଖାଇବାର ନୁହେଁ । ତୁମକୁ ଏବେ କହୁନାହିଁ । ଇଏ ହେଲା ସର୍‌ପ୍ରାଇଜ୍ ତୁମପାଇଁ ।

''ବୁବୁ, ସାନ ପିଉସା କାଲିଠାରୁ ଆସି ବସିଛନ୍ତି, କ'ଣ କହିବେ– ତାଙ୍କ ପୁଅ ବିଷୟରେ । ତାଙ୍କୁ ଆଗ ବିଦାକରିଦେ ।''

ଯେମିତି ଏତକ ମୋର ପ୍ରଥମ କର୍ତ୍ତବ୍ୟ ? ନା ମା' ଚାହୁଁନାହିଁ ସେ ଆଉ ରହନ୍ତୁ ବୋଲି – ବରଂ ଚଞ୍ଚଳ ବିଦାହୋଇଯାଆନ୍ତୁ – କେଜାଣି ? ଅଥଚ ତୁମ ସହ କଥା କହିହେଉ ନାହିଁ । ତୁମେ ତ ଜାଣିଛ ମୁଁ ଆଜି ଆସୁଛି ବୋଲି । ତୁମେ ଅପେକ୍ଷା କରୁଥିବ ବୋଧହୁଏ ମୋତେ ବା ମୋ ଫୋନ୍‌କୁ । କିନ୍ତୁ ତୁମେ ଫୋନ୍ କରିବନାହିଁ ଜାଣିଛି ।

ପିଉସାଙ୍କ ପରେ ବିକ୍ରମ ଆସିଲା । ବିକ୍ରମ ମୋ ସାଙ୍ଗେ ବି.ଏ. ପଢୁଥିଲା । ତା' କଥା ତୁମକୁ କେବେ କହିନାହିଁ – କହିବା ଦରକାର ପଡ଼ିନାହିଁ, ସେ ସେମିତି କିଛି ସାଙ୍ଗ ନଥିଲା । ତା'ର କିଛି ପ୍ରବ୍‌ଲେମ୍ ହେଉଛି ସେକ୍ରେଟେରିଏଟ୍‌ରେ । ମା' ତା'କୁ ଖାଇକରି ଯିବାକୁ ବାଧ୍ୟକଲେ । ମୋତେ ଚିଡ଼ିଲାଗୁଥିଲା ।

''କାହିଁକି ଡାକୁଥିଲୁ ମା' ? ଏବେ ଘଣ୍ଟାଏ ବୋର୍ କରିବ ।''

''କ'ଣ କରିବିରେ ? ତୁ ତ ପାଖରେ ରହୁନାହୁଁ । ଚାରି ପାଞ୍ଚ ଥର ଆସିଲାଣି । ଖବରଅନ୍ତର ପଚାରୁଛି । ବାପାଙ୍କୁ ସେଦିନ ଡାକ୍ତର ପାଖକୁ ନେଲା – ଯୋଗକୁ ଏଇଠି ଥିଲା ଯେଉଁଦିନ ବାଥ୍‌ରୁମ୍‌ରେ ବାପାଙ୍କର ଗୋଡ଼ ଖସିଗଲା ।'' ମୋର ଆଉ କିଛି କହିବାର ନଥିଲା ।

ଖାଇବା ପରେ ବି ସେ ଦୁଇଘଣ୍ଟା ବସିଲା । ପିଲାଦିନେ ଆମ ଦୁଇଜଣଙ୍କୁ ନେଇ ଯେତକ ମିଛ ଘଟିନଥିବା ଘଟଣାତକ ବଖାଣିଲା । କଥାକଥାକେ କହୁଥାଏ – ତୋର ତ ମନେନଥିବ । ମୁଁ ଭାବୁଥିଲି– ଶଳା ଡହରାଟୋକା, ଯିବ କେତେବେଳେ ।

‘‘ଦେଖ, ଚାଲିଯିବନି କୁଆଡ଼େ । ଛୁଆମାନେ ଆଜି ପାର୍କକୁ ଯିବେ । ଦିଲ୍ଲୀରେ ଫ୍ଲାଟ୍‌ରେ ରହି ରହି ହାତ ଗୋଡ଼ ରହିଗଲାଣି ତାଙ୍କର । ଆଜିକ ଯେମିତି ହେଲେ ଘରେ ରହିବ ।’’ ମୋ ସ୍ତ୍ରୀ ଜିନି କହୁଥିଲା ।

ଛୁଆମାନେ ତାଙ୍କ ହାତଗୋଡ଼ର ଦୁର୍ଦ୍ଦଶା କଥା ମୋତେ କୁହନ୍ତିନାହିଁ କାହିଁକି ? ତାଙ୍କର ଯଦି ହାତ ଗୋଡ଼ ରହିଯାଉଛି ତେବେ ମୋର ନ୍ୟାସନାଲ୍ ମ୍ୟୁଜିକ୍ ସେଟ୍‌ଠାରୁ ଆରମ୍ଭ କରି, ସୋନି ୱାକ୍‌ମାନ୍, ଜିନି ବାହାଘରବେଳେ ଆଣିଥିବା ଚଢ଼େଇବାଲା ଟେବୁଲ୍ କ୍ଲଥ୍, ମୁଁ ଜାପାନ୍ ଟୁର୍‌ରୁ ଆଣିଥିବା ମୁରୁକି ହସୁଥିବା ଜାପାନୀ ଖେଳନା– ମୁହଁଥିବା ଫୁଲଦାନୀ ଏସବୁ ଭାଙ୍ଗିଲା କେମିତି ? ଏକଥା ସତ ଯେ ପାର୍କରେ ଖେଳିବାକୁ ସୁଯୋଗ ପାଇଥିଲେ ମୋର ଉପରୋକ୍ତ ଜିନିଷଗୁଡ଼ିକ ତାଙ୍କ ପ୍ରତ୍ୟକ୍ଷ ଆକ୍ରୋଶରୁ ହୁଏତ ରକ୍ଷା ପାଇଯାଇଥାଆନ୍ତା ! କିନ୍ତୁ ମୁଁ ନୁହେଁ । ମୋତେ ତ ଇଚ୍ଛା ଅନିଚ୍ଛା ସତ୍ତ୍ୱେ ପାର୍କରେ ଘଣ୍ଟାଟିଏ ଅନ୍ତତଃ ଦେବାକୁ ପଡ଼ିଥାଆନ୍ତା । ତା’ପୁଣି ସବୁଦିନେ ନୁହେଁ । ମୋର ଅଫିସ୍‌ର ଲେଟ୍ ଆୱାର୍ ତା’ର ଶତ୍ରୁ ହୋଇ ଠିଆହୋଇଥାଆନ୍ତା । କ’ଣ ସବୁ କହିଗଲିଣି । ଛୁଆଙ୍କୁ ନେଇ ବୁଲିବାକୁ ଯିବାକୁ ମୋତେ ଭଲଲାଗେ ଯେ । ବିଳାସପୂର୍ଣ୍ଣ ଭାବରେ ଘଣ୍ଟାଟିଏ ଅନ୍ୟମନସ୍କ ହୋଇ ଯାହା ମନ ତା’ ଭାବିହୁଏ – ଅବଶ୍ୟ ମୁଣ୍ଡ ଉପରେ ମାଡ଼ିପଡୁଥିବାପରି କିଛି କାମ ନଥିଲେ । ଏବେ ସାରା ମୁଣ୍ଡକୁ ଆବୋରିବସିଛ ତୁମେ ।

ନା, ତୁମସହ ଆଜି ଆଉ ଦେଖା କରିହେବ ନାହିଁ । ମୁଁ ହିସାବ କରୁଥିଲି ତିରିଶ କିଲୋମିଟର ଯାଇ ଆସିବାକୁ କେତେ ସମୟ ଲାଗିବ– ତୁମସହ ବିତାଇବାପାଇଁ କେତେ ସମୟ ମିଳିବ । କାହିଁକି ହିସାବ କରେ କେଜାଣି ? କୋଉ ହିସାବ ଠିକ୍‌ଠାକ୍ ରୁହେ !

‘‘ସାନ ମଉସା ଆଜି ଖାଇବାକୁ ଡାକିଛନ୍ତି । ଗତଥର ଆଗେ ତାଙ୍କ ଘରକୁ ଯାଇପାରି ନଥିଲି– ଏଥର ଯିବାକୁ ହେବ ।’’ ଜିନି କହୁଥିଲା ।

ଦୁଇଦିନ ଯାଉ । ଏମାନଙ୍କର ସବୁ ଶଂଖୁଳାଶଂଖୁଳି ସରିଯାଉ, ତା’ପରେ ଯାଇ ଶାନ୍ତି । ବାଲ୍‌କନିରେ ଠିଆହୋଇ ଚା ପିଉ ପିଉ ହଠାତ୍ ଲାଗିଲା ଆଜି ସକାଳଟା ଭାରି ଖୁସିକରିଦେଲାପରି ହୋଇଛି– ନରମ ଆଉଁଷିଦେଲାପରି ଖରା, ବାଧୁ ନାହିଁ; ଅଥଚ ଉଷୁମ କରିଦେଉଛି । ବହୁତ ଦିନ ତଳେ ସାଙ୍ଗ କିଏ ଅଫର୍ କରିଥିବା ପାନୀୟର ଅନୁଭୂତି ମନେପଡ଼ିଲା । ନାଁ, ମନେପଡୁ ନାହିଁ । ମୁଁ ପ୍ରକୃତରେ ଜାଣି ଜାଣି ମନେରଖେ ନାହିଁ, କାଳେ ଦ୍ୱିତୀୟଥର ସେଇ ମାଦକତା ସିଏ ହରାଇ ବସିବ !

ଚିଡ଼ିଆଖାନା ଯିବାର ପ୍ରସ୍ତୁତି ଚାଲିଛି । ଏଇ ଆନନ୍ଦଟିକୁ ମୁଁ ସହ୍ୟ କରିପାରେନାହିଁ । ନିରୀହ, ବଣୁଆ ଜନ୍ତୁକୁ ସେମାନଙ୍କର ସୁବିସ୍ତୃତ ପୃଥିବୀ ଓ ଆକାଶରୁ ବଂଚିତ କରି କେତେ ଫୁଟରେ କେତେ ଫୁଟର ପଞ୍ଜୁରିର ବାଧବାଧକତାରେ ସ୍ୱେଚ୍ଛାଯୁକ୍ତ କରାଯିବାର ଯଥାର୍ଥତା ବୁଝିପାରେ ନାହିଁ । ସେମାନଙ୍କ ଦୋଷ ଦେଲାପରି ଆଖିସହ ଆଖି ମିଳାଇ

ପାରେନାହିଁ । ଆଖି ବନ୍ଦକରି ପଡ଼ିଥିବା କିଛି ଜନ୍ତୁଙ୍କର– ଆମକୁ ଦେଖି ଏତେ ଉଲ୍ଲସିତ ହେବାର କ'ଣ ଅଛିର ନିସ୍ପୃହତାକୁ ହଜମ କରିପାରେ ନାହିଁ । ବଣ୍ୟ ହିଂସ୍ରଜନ୍ତୁଙ୍କର– ଥରେ ବାହାରକୁ ଆସିବାକୁ ଦିଅ– ଦେଖାଯିବାର ଅସ୍ଥିର ଚ୍ୟାଲେଞ୍ଜ୍ ବିବଶ କରେ ମୋତେ । କିନ୍ତୁ କ'ଣ କରାଯିବ ? ମିତୁ ତ ପୁଣି ସବୁ ପଶୁପକ୍ଷୀକୁ ଚିହ୍ନିବ ପାଖରୁ– ଖାଲି ତ ବହିରେ ପଢ଼ିଦେଲେ ଚଳିବ ନାହିଁ ।

ଜନ୍ତୁମାନଙ୍କର ବିଷଣ୍ଣତା ଓ ଦେଖଣାହାରୀଙ୍କ ଚକିତ ଉଲ୍ଲାସରେ ସାମିଲ ହୋଇ ନପାରିବାରୁ ବା ସାମିଲ ହେବାକୁ ଚାହୁଁନଥିବାରୁ ସବୁବେଳ ପରି ତୁମେ ଭାସିଆସିଲ ଚିନ୍ତା ଭିତରକୁ । ପ୍ରଥମେ ଆଖି ସାମନାରେ, ତା'ପରେ ଦୁଇକଡ଼ରେ ଓ ଧୀରେ ଧୀରେ ଚତୁର୍ଦ୍ଦିଗରେ । ଗତଥରର ବୁକ୍-ଫେଆର୍ କଥା ମନେପଡ଼ିଗଲା । ତୁମେ କହିଥିଲ ସାରାବର୍ଷ ଦରମାରୁ କିଛି କିଛି କାଟି ସାଇତିରଖିଛ, ଏଇ ଫେଆର୍‌ପାଇଁ । ମୋତେ ଚାହିଁଥିଲ ଓ କହିଥିଲ ତୁମକୁ ଡିଷ୍ଟର୍ବ ନକରିବାପାଇଁ । ମନଇଚ୍ଛା ସମୟ ଦେଇ ତୁମେ ବହି ବାଛିବାକୁ ଚାହିଁଥିଲ । ଆଜି ସନ୍ଧ୍ୟାରେ ଚିଡ଼ିଆଖାନାରୁ ଫେରିବା ପରେ ଜିନି କହିଥିଲା ସାରାବର୍ଷ ସେ ଘରଖର୍ଚ୍ଚରୁ ସାଇତି କିଛି ରଖିଛି, ଯାହା ସେ ସେହି ସମୟରେ ଆରାମରେ ଖର୍ଚ୍ଚ କରିପାରିଥା'ନ୍ତା । ଦିଲ୍ଲୀରେ ଦୋକାନସବୁ ଦୂର ଓ ବହୁତ ଅଧିକ ଦାମ୍, ତେଣୁ ସେ ମନଇଚ୍ଛା ବାଛି ବାଛି ତିନି ଚାରୋଟି ଶାଢ଼ି କିଣିବ– ଏମିତି ଯାହା ଆଉ କାହାର ନଥିବ । ଆଉ ସେ ତା'କୁ ପିନ୍ଧି ବାହାରିଲାବେଳେ ଦେଖଣାହାରୀ ନରନାରୀଙ୍କ ଆଖି ଝଲସିଉଠିବ ।

ମୁଁ ପ୍ରମାଦ ଗଣିଲି, ମୋତେ ବି କ'ଣ ଯିବାକୁ ପଡ଼ିବ ? ମୁଁ ତ ଏସବୁ ପାରିବିନି ।

''ସେତେ ଭାଗ୍ୟ ମୋର କାହିଁ ? ମୁଁ କ'ଣ କେବେ ଡାକେ ମୋ ସହ ବଜାର ଯିବାପାଇଁ; ତା' ପୁଣି ଶାଢ଼ି କିଣିବାପାଇଁ ? ବର୍ଷସାରା ତୁମେ ଆରାମ୍‌ରେ ଅଫିସ୍ କାମ କରିଛ । ଜାଣ କି ମିତୁର ଏ ବର୍ଷ ହିନ୍ଦୀ ଲାଙ୍ଗୁଏଜ୍ ଷ୍ଟାର୍ଟ ହେଇଛି । ମୋ ଦେଇ ସେ ହିନ୍ଦୀଫିନ୍ଦି ହୁଏ ନାହିଁ । ଏତକ ଛୁଟିଦିନ ପୂରା ବସି ସେମାନଙ୍କୁ ପାଠ ପଢ଼ାଅ । ତୁମ ଛୁଆ ପରୀକ୍ଷାରେ ଭଲ ନକଲେ କ'ଣ ତୁମକୁ ଭଲଲାଗିବ ?''

ମିତୁର ଏତେଗୁଡ଼ାଏ ହିନ୍ଦୀ ସତରେ ପଢ଼ା ହୋଇଯାଇଛି, ମୁଁ ଜାଣିନଥିଲି । ଜାଣି ନଥିଲି ବୋଲି ସାମାନ୍ୟ ଗ୍ଲାନି ମଧ୍ୟ ଆସିଲା । ସେ ତା' ମା' ଢଙ୍ଗରେ କହିଉଠିଲା ''ପାପା, ତୁମେ ତ କିଛି ଜାଣିନାହଁ । ସବୁବେଳେ ଖାଲି ତୁମର ଅଫିସ୍ । ମୋର ହିନ୍ଦୀ ବୁକ୍ ୱାନ୍ ଖତମ୍ ହୋଇ ଟୁ ଅଧା ହେଲାଣି । ଫାଇନାଲ୍ ଟେଷ୍ଟ୍‌ରେ ଦୁଇଟାଯାକ ବୁକ୍ ଆସିବ । ଅଗତ୍ୟା ୱାନ୍‌କୁ ଓଲଟାଇବାକୁ ପଡ଼ିଲା ଟୁ ପଢ଼ାଇବାପାଇଁ । ଦେଖି ବିସ୍ମିତ ହେଲି– ଏତେ ସାନଛୁଆକୁ ଏତେ ବେଶୀ ପଢ଼ିବାକୁ ପଡୁଛି । ଏତକ ହିନ୍ଦୀ ମୁଁ କେବେ ପଢ଼ିଥିବି କି ନାହିଁ ସନ୍ଦେହ । ନିଜ ଅପାରଗତାକୁ ଘୋଡ଼ାଇବାକୁ ଯାଇ ମିତୁକୁ କହିଲି

ମ୍ୟାଥ୍ କପି ଆଣିବାକୁ । ଇଏ ମୋ'ପାଇଁ ଓ ମିତୁପାଇଁ ଆଗ୍ରହ ଉଦ୍ଦୀପକ ଓ ସାବଲୀଳ ବିଷୟ । ଦୁଇଜଣଯାକ ମଜିଗଲୁ ବହୁତ ଡେରିଯାଏ ଗଣିତରେ— ଛୋଟ ଛୋଟ ପାଟିଗଣିତ ଓ ମାନସାଙ୍କରେ; ଯଥା — ଜଳଭର୍ତ୍ତି କରୁଥିବା ତିନୋଟି ନଳ ଖୋଲିଦେଲେ ଗୋଟିଏ ବଡ଼କୁଣ୍ଡ ୪ ଘଣ୍ଟାରେ ଜଳପୂର୍ଣ୍ଣ ହୋଇଯାଏ । ନିଷ୍କାସିତ କରୁଥିବା ତିନୋଟି ନଳ ଖୋଲିଦେଲେ ସେହି କୁଣ୍ଡଟି ୫ ଘଣ୍ଟାରେ ଜଳଶୂନ୍ୟ ହୋଇଯାଏ । ସବୁତକ ନଳ ଖୋଲିଦେଲେ କୁଣ୍ଡଟି କେତେ ଘଣ୍ଟାରେ ଜଳପୂର୍ଣ୍ଣ ହୋଇପାରିବ ? ଏଇ ପ୍ରଶ୍ନଟି କାହିଁକି କେଜାଣି ମିତୁକୁ ଟିକିଏ ବିଚଳିତ କରୁଥିଲା; କାରଣ ହଠାତ୍ ଜାଣିପାରିଲି ନାହିଁ । ତା'କୁ ଚୁପ୍‌ରହିବା ଦେଖି ପରମ ଉଲ୍ଲାସ ସହକାରେ ଅଙ୍କଟି କଷିବାକୁ ଆରମ୍ଭ କଲି ଓ ଅତି ସହଜ ଢଙ୍ଗରେ ସମାଧାନ ହୋଇଗଲା । ମିତୁ ସେମିତି ବୁଝି ନପାରିଲାପରି ବସିଥିଲା । ତା'କୁ ପଚାରିଲି, ''ବୁଝିଲୁ ତ ?'' ସେ ମୁଣ୍ଡ ହଲାଇଲା— ନାହିଁ । ମୁଁ ଉଲ୍ଲାସ ନହରାଇ ପୁଣି ଥରେ ତା'କୁ ଅଙ୍କଟିକୁ ବୁଝାଇବାରେ ଲାଗିଲି । ଏଥର ଆଶାୟିତ ଆଖିରେ ତା'କୁ ଚାହିଁବାରୁ ଲାଗିଲା ସେ କିଛି କହିବାକୁ ଚାହୁଁଛି । ଉଲ୍ଲାସ ଦେଲି— ''ହଁ, କହ, କ'ଣ ହେଲା ?''

''ପାପା, ପାଣି ଖାଲିହେବା ନଳଗୁଡ଼ା ତ କୁଣ୍ଡର ତଳଆଡ଼କୁ ଥିବ ।''

''ହଁ ତ କ'ଣ ହେଲା ?''

''ତା' ହେଲେ ତ ପାପା, ଯେତେ ପାଣି ପଶିଲେ ବି ଧୀରେ ଧୀରେ ବାହାରିଯିବ । କୁଣ୍ଡଟା ଭର୍ତ୍ତି ହେବ କେମିତି ?''

ମୁଁ ଟିକିଏ ରହିଗଲି । ସତ କଥା ତ ! ଏମିତିଆ ଶହେଟା ଅଙ୍କ ମୁଁ ତ ପିଲାଦିନେ କଷିଥିବି । କାହିଁ ମୋର ତ ମନେପଡୁ ନାହିଁ, ଏମିତି ପ୍ରଶ୍ନ କେବେ ମୋ ମନରେ ଆସିନାହିଁ । ମୋର ତୀକ୍ଷ୍ଣ ବୁଦ୍ଧିମତୀ ଝିଅକୁ ଟିକିଏ ଚାହିଁଲି— ସପ୍ରଶଂସ ଗର୍ବିତ ଚାହାଣିରେ । ''ତା' ତ ସତ ମାଆ । ଏଇଟା ଖାଲି ଅଙ୍କ କରିବାରେ ସିନା— ସତରେ କୁଣ୍ଡ କେବେ ଭର୍ତ୍ତି ତ ହେବନାହିଁ !''

ମିତୁକୁ ପଢ଼ାଇବାର କ୍ଳାନ୍ତିରେ ବା ଅଧିକ ଖାଇବାର ଅସହଜତାରୁ ନିଦ ଆସିଗଲା ସେଦିନ ଚଞ୍ଚଳ ।

ଦୁଇଦିନ ଛୋଟ ବଡ଼ କର୍ତ୍ତବ୍ୟ ପାଳନପାଇଁ ଦେବି ବୋଲି ଠିକ୍‌କରିଥିଲି । ଠିକ୍ କରିଥିଲି ଯେ କିନ୍ତୁ ଏତେ ବେଶୀ ଅସ୍ଥିର ଲାଗିବ ବୋଲି ତ ଜାଣିନଥିଲି । କେଉଁ ଏକ ଅଜବ ଆତୁର ଆକୁଳପଣ ଖେଳିବୁଲୁଥିଲା ମୋ ଚାରିପାଖରେ । କାହିଁକି ଏମିତି ଲାଗୁଛି ? ମୁଁ ବି ଏଠି କରୁଛି କ'ଣ ? ଏପର୍ଯ୍ୟନ୍ତ ତୁମକୁ ନଦେଖି ରହିଛି କେମିତି ?

ନିଦା ମୋଟାଳିଆ କର୍ତ୍ତବ୍ୟଟିଏ ଆହୁରି ରହିଯାଇଛି । ଜିନିର ଘରକୁ ଯାଇ ତାଙ୍କର ସମସ୍ତ — ମା, ବାପା, ଭାଇ, ଭାଉଜଙ୍କୁ ଆଶ୍ୱାସନା ଦେବାକୁ ପଡ଼ିବ ଯେ ତାଙ୍କ ଝିଅ

ଓ ସେହି ହେତୁରୁ ଆମେମାନେ ସମସ୍ତେ ଭଲ ଅଛୁ । ଅତ୍ୟନ୍ତ ସୁଖଶାନ୍ତିରେ ଅଛୁ । ସେଇତକ ଚଞ୍ଚଳ ସାରିବା ଦରକାର । ସେମାନଙ୍କର ବିରାଟ ଇଷ୍ଟେଟ୍ । ମିତୁ ଏଇଠି କିଛି ସମୟ କଟାଇବାକୁ ଭାରି ଭଲପାଏ । ବଡ଼ ଅଗଣାଥିବା ବଡ଼ ବଡ଼ ଘର ଚାରିକଡ଼ର ବଗିଚା ଓ ପଛପଟର ମାଛ ଛଡ଼ାଯାଇଥିବା ପୋଖରୀ ଖୁବ୍ ଆକର୍ଷଣୀୟ ତା'ପାଇଁ । ବୋଧହୁଏ ତା'ରିପାଇଁ ଖାସ୍ ଝୁଲା ଲାଗିଛି ଘରର ବାଁପଟ ଲନ୍‌ରେ । ଜାଲ ଦେଇ ମାଛ ଧରା ହେଲା – ଭଜାମାଛ ଖାଇବାର ପର୍ବ ମଧ୍ୟ ଆରମ୍ଭ ହେଲା । ଛୋଟ ପ୍ୟାଡେଲ୍ ବୋଟ୍‌ରେ ପୋଖରୀ ଭିତରକୁ ଯିବାକୁ ମିତୁ ଜିଦ୍ କଲା । ଝିଅଟାର ଡରଭୟ ନାହିଁ । ମାଛଭଜା ଅଧା ଖାଇ ଅଗତ୍ୟା ତା'କୁ ଗୋଟିଏଘେରା ବୁଲାଇ ଆଣିବାକୁ ହେଲା । ଆମର କେମିତି ବିଭବ ଦେଖ–ଢଙ୍ଗରେ ଜିନି ନସରପସର ହେଉଥାଏ । କଣ୍ଠସ୍ୱର ଅଯଥା ଗେହ୍ଲାଳିଆ କରି କଥା କହୁଥାଏ ଲମ୍ୱେଇ ଲମ୍ୱେଇ– ପାଦ ମାଟି ଛୁଉଁଥାଏ କି ନଥାଏ ।

ମୋ ପିଲାଦିନ ମନେପଡ଼ିଗଲା । ସେ ମିତୁର ଛୁଆଦିନପରି ନୁହେଁ କି ଜିନିର ପିଲାଦିନପରି ନୁହେଁ । ଯାହା ଯାହା ତୁମକୁ ସେ ବିଷୟରେ କହୁଥିଲି ଲାଗୁଥିଲା ଯେମିତି ତୁମେ ପିଇଯାଉଥିଲ । ତୃଷ୍ଣା ମେଣ୍ଟିବାର ଶାନ୍ତିରେ ତୁମ ମୁହଁ ଝଲମଲ କରୁଥିଲା । କହୁଥିଲି ଯେ ମୁଁ ସେମିତି କିଛି ଆଉଟ୍‌ଷ୍ଟାଣ୍ଡିଂ ନଥିଲି । ସହର ମଝିଆମଝି ବାପାଙ୍କର ଥ୍ରୀଆର୍ କ୍ୱାର୍ଟର୍‌ଟିଏ ଥିଲା । ଚାରିକଡ଼ରେ କିଛି ଫୁଟ୍‌ର ଜାଗା, କେଉଁଠି ଫଳୁନଥିବା ଛୋଟ ଆମ୍ୱଗଛ । ବୋଉ ଆଉସବୁ କ'ଣ କ'ଣ ଗଛ ଲଗାଇଥିଲା– ଅମୃତଭଣ୍ଡା, ପିଜୁଳି, ଶାଗ କେତେ ପଟାଳି, ଭେଣ୍ଡି, ବାଇଗଣ, କଖାରୁ ଲତା ବି ମାଡ଼ିଥିଲା । ଛୋଟିଆ ପରିଚ୍ଛନ୍ନ ବଗିଚା । ଗେଟ୍ ପାଖକୁ ଭିତରକୁ ପଶୁ ପଶୁ କିଛି ଫୁଲଗଛ ଥିଲା । ଗୋଟିଏ ପଟେ ଦେଶୀ ଗୋଲାପ ଫୁଲର ଗଛ ଓ ଅନ୍ୟପାଖେ ବୁଦା ବୁଦା ମଲ୍ଲୀଗଛ । ମୁଁ ଜାଣିଶୁଣି ବା ଅଜାଣତରେ ପ୍ରାୟ ଗେଟ୍ ଖୋଲିଦେଉଥିଲି । ଗାଈ ପଶୁଥିଲା– ଗଛ ଅଧାଅଧି ଖାଇଯାଉଥିଲା । ବୋଉ ଗାଈ ହୁରୁଡ଼ାଇବାକୁ ଦଉଡ଼ି ଆସୁଥିଲା– ମୋତେ ମାରିବାକୁ ବି । ମୁଁ କିନ୍ତୁ ଯାଇ ଗେଟ୍ ବାହାରେ ।

ମୁଁ ଏଇ ଛୋଟିଆ ପରିଚ୍ଛନ୍ନ ବଗିଚାକୁ ଖାତିର କରୁନଥିଲି । ଚନ୍ଦକା ପର୍ଯ୍ୟନ୍ତ ଲମ୍ୱିଥିବା ସେତେବେଳର ବିସ୍ତୃତ ବୁଦୁବୁଦିକିଆ କୋଳି କଣ୍ଟା – ତା'ପରର ଛୋଟ ବଡ଼ ଗଛତକ – ଦିଗ୍‌ବଳୟ ପର୍ଯ୍ୟନ୍ତ ଓ ମୋ ଆଖିପାଉଥିବା ପର୍ଯ୍ୟନ୍ତ ଜଙ୍ଗଲ– ଏ ସବୁର ନିଶା ମୋତେ ଘାରି ରଖୁଥିଲା । ଖାଲି ଘାରି ନଥିଲା ଯେ, ମୁଁ ସେସବୁ ଭିତରେ ଘୂରୁଥିଲି ପ୍ରାୟ – ଟିକିଏ ସମୟ ମିଳିଲେ ସ୍କୁଲରୁ ବାହାରି । ବହୁତ ଦିନ ପରେ– ପ୍ରାୟ ପଚିଶ ବର୍ଷ ପରେ ଆମେ ଜାଣିଲୁ ଯେ ମୋର ସେଇ ବିସ୍ତୃତ ସାମ୍ରାଜ୍ୟ ମଧ୍ୟରେ– ଛୋଟିଆ ଲୋକାଳୟରେ ମୋ ସାମ୍ରାଜ୍ଞୀଙ୍କର– ତୁମର, ଉଆସଟିଏ ମଧ୍ୟ ଥିଲା, ଯାହା ମୋ

ବାପାଙ୍କ ଥ୍ରୀଆର୍ କ୍ୱାର୍ଟର୍‌ଠାରୁ ହୁଏତ ଟିକିଏ ବଡ଼ ହେବ । ସେତେବେଳେ ମୋ'ପରି ସାହସୀ ତୁମେ ହୁଏତ ନଥିବ । ତୁମେ କୁହ ଯେ ସେଇ ଦିଗନ୍ତ ବିସ୍ତୃତ ଜଙ୍ଗଲକୁ ତୁମେ ଡରୁଥିଲ । ଘରପାଖ ବିସ୍ତୀର୍ଣ୍ଣ କୋଳିବୁଦାର ଜଙ୍ଗଲ ତୁମ ଆଡ୍‌ଭେନ୍‌ଚର୍‌ପାଇଁ ଯଥେଷ୍ଟ ଥିଲା । ସ୍କୁଲର ଖେଳଛୁଟିରେ ତୁମେ ତୁମ ସାଙ୍ଗମାନଙ୍କୁ ନେଇ କ୍ଷୀରକୋଳି, ଭଇଁଚକୋଳି ତୋଳିବାକୁ ସେଥିରେ ପଶୁଥିଲ । ଏକୁଟିଆ କେବେହେଲେ ଯାଉନଥିଲ । ଖରାବେଳର ରକ୍ତମୁଖୀ ଡାହାଣୀ, ଭଇଁଚକୋଳି ବୁଦାମୂଳର ସରୁ କଳାସାପ ଓ ପାଖ ରାସ୍ତାରେ ଅଯଥା କାଶି କାଶି ସାଇକେଲ୍‌ମାରି ଯିବାଆସିବା କରୁଥିବା ଲଫଙ୍ଗା ଟୋକାମାନଙ୍କୁ ବି ତୁମେ ଡରୁଥିଲ । କିନ୍ତୁ ସଂଘବଦ୍ଧ ଭାବରେ, ମାନେ ପାଞ୍ଚ ଛଅ ଜଣ ବାର ତେର ବର୍ଷ ଝିଅ ଏକାଠି ହେଲେ ତୁମମାନଙ୍କର କାହାକୁ ଡର ନଥିଲା ।

ହେଲେ ମୋତେ ସେତେବେଳେ ସେଇ ବୟସର ଦଳେ ଝିଅଙ୍କୁ ଭାରି ଭୟ ଲାଗୁଥିଲା । ଡର ଯେତେ ନୁହେଁ, ଲାଜ ତା'ଠାରୁ ବେଶୀ । ତୁମେ ଏକା ଯଦି ଥାଆନ୍ତ ତା'ହେଲେ ଅଲଗା କଥା । ଡର ମାଡୁଥିଲା ମାନେ ଆମ ହଷ୍ଟେଲ୍ ପାଖ ଅଶ୍ୱତ୍ଥ ଗଛରେ ଥିବା ତିନିମୁଣ୍ଡିଆ ବ୍ରହ୍ମରାକ୍ଷସଠାରୁ ମଧ୍ୟ ଅଧିକ– ଯାହାକୁ ସବୁ ଦୁଷ୍ଟପିଲାଙ୍କୁ ଜଗିବାର ଦାୟିତ୍ୱ ହଷ୍ଟେଲ୍ ଓ୍ୱାର୍ଡେନ୍ ନାୟକ ସାର୍ ଦେଇଥିଲେ । ତେବେ ମନଭିତରେ ମୁଁ ଖୁବ୍ ଚାହୁଁଥିଲି ଯେ ମୋର ଏମିତି ଗୋଟିଏ ଛୋଟିଆ ଝିଅପିଲା ସାଙ୍ଗ ଥାଆନ୍ତା । ସେତେବେଳେ.... ମନୋଜ ଦାସଙ୍କ 'ଧୂମ୍ରାଭ ଦିଗନ୍ତ' ଗପଟି ପଢ଼ିଥାଏ, ଅଳ୍ପଦିନ ହେଲା । ତେଣୁ ସେଇ ଝିଅଟିକୁ ଜଙ୍ଗଲ ବୁଲାଇ ଦେଖାଇବାର ଇଚ୍ଛାଥାଏ ପ୍ରବଳ । ମୋ'ଠାରୁ ଟିକିଏ ଛୋଟ, ଇନ୍ଦୁମୁଖୀ– ଦୁଇଟି କୁନି କୁନି ବେଣୀକରି – ସ୍କର୍ଟ୍ ବ୍ଲାଉଜ୍ ପିନ୍ଧି । ତୁମେ ସେତେବେଳକୁ ଠିକ୍ ସେମିତି ଥିବ– ନୁହେଁ ?

ମୋତେ କାହିଁକି ଉପରବେଳା ପ୍ରବଳ ଭୋକ ହୁଏ । ତିନିମୁଣ୍ଡିଆ ବ୍ରହ୍ମରାକ୍ଷସକୁ ଗାଳୁମାରି ମୁଁ ଘରମୁହାଁ ଚମ୍ପଟ୍‌ମାରେ । ଦୁଇ ତିନୋଟି ଅନ୍ତରଙ୍ଗ ବନ୍ଧୁ ବ୍ୟତୀତ କାହାରିକୁ ଏକଥା ଜଣାନଥାଏ । ଚାରି କିଲୋମିଟର ରାସ୍ତା ଚାଲି ଚାଲି ପାରିହୋଇଯାଏ । ସେତକ ସେତେବେଳେ ତ ମୋର ସାମ୍ରାଜ୍ୟ ଥିଲା– ମୁଁ ତା'ର ପଦଚାରୀ, ବନଚାରୀ ସମ୍ରାଟ୍ । ସ୍କୁଲ୍ ୟୁନିଫର୍ମ ମୋଜା ଜୋତା ଉପରେ କଅଁଳ ସ୍ପର୍ଶ ଦେଉଥିଲା, ଦୂବଘାସ କେତେବେଳେ କର୍କଶ କଣ୍ଟାଝଟାରେ ଆମ୍ପୁଡ଼ି ବି ହୋଇଯାଉଥିଲା । ତା'ପରେ ଆସୁଥିଲା ସେଇ ବିସ୍ତୀର୍ଣ୍ଣ କୋଳିବୁଦାପୂର୍ଣ୍ଣ ପଡ଼ିଆସବୁ । ଏବେ ଲାଗୁଛି ଯେମିତି ସେଇଠି କୋଉଠି ତୁମେ ରଙ୍ଗିନ୍ ବଡ଼ ପ୍ରଜାପତିଟେପରି କ୍ଷୀରକୋଳି ତୋଳୁଥିଲ । କ୍ଷୀରକୋଳିର କ୍ଷୀର ତୁମ ଫ୍ରକ୍‌ରେ ଲାଗିଯାଇ ଦାଗ ହୋଇଯାଏ ବୋଲି କେତେଥର ଗାଳି ଶୁଣିଛ ଘରେ, ତୁମେ କହୁଥିଲ । ଆଃ ! ଦେଖାହୋଇଯାଇ ନଥା'ନ୍ତା ଥରେ ହେଲେ ତୁମ ସାଙ୍ଗରେ ସେଇ ରାସ୍ତାରେ ! ତୁମେ କୁହ, ହୁଏତ ଅନେକଥର ଦେଖାହୋଇଥିବ– କେହି କାହାକୁ

ଖାତିରରର ନଜର ଦେଇନଥିବା । ତା' କେମିତି ସମ୍ଭବ ? ତୁମେ ମୋ ଆଖି ସାମନାକୁ ଆସିଥିବ ଆଉ ମୁଁ ମନେରଖିନଥିବି !

ବୋଉ କିଛି ନା କିଛି ଭଲଜିନିଷ ରଖିଥାଏ ଖାଇବାକୁ– ସିଝାଅଣ୍ଡା, ଛୁଞ୍ଚିପତ୍ର ପିଠା, ଛଣାଆଳୁ, ସଜଦହି ଇତ୍ୟାଦି । ବୋଉକୁ ବୋଧହୁଏ ଜଣାଥାଏ ଯେ ମୁଁ ଆଜି ଲୁଚିକି ଆସିବି ଓ ମୋତେ ଜୋର୍ ଭୋକ ଲାଗୁଥିବ । ବାପା ଜାଣିଲେ ବହୁତ ମାଡ଼ଗାଳି ହୁଏ । ବାପା ସବୁବେଳେ ଧମକାନ୍ତି ୱାଡେନ୍‌କୁ କହିଦେବେ, କିନ୍ତୁ କେବେହେଲେ କୁହନ୍ତି ନାହିଁ । ତାଙ୍କ ସାର୍‌ଙ୍କ ବାରବର୍ଷର ଗୁଲୁଗୁଲିଆ ଷ୍ଟୁଆର୍ଟ ସ୍କୁଲ୍‌ରେ ପଢୁଥିବା ଶାନ୍ତ ସୁଧାର ପୁଅ ସହ ମୋତେ ତୁଳନା କରି କରି ହତାଶ ହୁଅନ୍ତି ।

କୁନି କୁନି ଦୁଇଟି ବେଣୀ କରି, ସ୍କଟ୍‌ବ୍ଲାଉଜ୍ ପିନ୍ଧିଥିବା କାଳ୍ପନିକ ତୁମେ ଓ ଗତଥର ଗେଟ୍ ବନ୍ଦକରି ଫେରିପଡ଼ିଲାବେଳେ ତୁମର ଅଭିମାନଭରା ଚାହାଣି ସହ ତୁମକୁ ମନେପକାଇ ପକାଇ ଏଇ ରାତିଟି ବିତିଗଲା ।

ଜିନି ଅନେକ ଦିନଧରି ଲଗାଇଥିଲା ଯେ ତା'ର ମୁଣ୍ଡ ବିନ୍ଧୁଛି । ଆଖି ଖରାପ ହୋଇପାରେ ବୋଲି ମୁଁ କହିଥିଲି । ପ୍ରଥମେ ସେ ରାଗିଗଲା– ଏତେ କମ୍ ବୟସରୁ ତା'କୁ ଚଷମା ଲଗାଇବାକୁ କହୁଛି ବୋଲି ଆକ୍ଷେପ କଲା । ତେବେ ଦେଖାଇବା ତ ଦରକାର ବୋଲି ମୁଁ କହିଥିଲି । ତୁମେ ତ ମନେ ମନେ ଡାକ୍ତର– ସେ ଶ୍ଳେଷପୂର୍ଣ୍ଣ ମନ୍ତବ୍ୟ ଦେଇଥିଲା । ମୋର ଅଯଥା ଦ୍ୱିରୁକ୍ତି କରିବାର କିଛି ନଥିଲା । ଦିଲ୍ଲୀର, ଆଖିକୁ ନଚାହିଁ ଆଖି ଖରାପର ପ୍ରେସକ୍ରିପ୍‌ସନ୍ ଲେଖୁଥିବା ଫୁଲାମୁହାଁ ପଞ୍ଜାବୀ ଡାକ୍ତର ଜିନିର ପସନ୍ଦ ହେଲାନାହିଁ । ତା'ଠାରୁ ନାଁକରା କଅଁଳ କଥା କହୁଥିବା ତାଙ୍କ ଫ୍ୟାମିଲି ଚକ୍ଷୁ ବିଶେଷଜ୍ଞ ଢେର୍ ଭଲ ବୋଲି ତା'ର ରାୟ । ସେଇ ମଉସାଙ୍କପାଇଁ ମିଠା ପ୍ୟାକେଟ୍ ଧରି ପହଞ୍ଚିଲୁ । ଲାଇନ୍‌ରେ ଠିଆହେବାକୁ ପଡ଼ିଲା ନାହିଁ । ତେବେ ପ୍ରେସକ୍ରିପ୍‌ସନ୍ ଲମ୍ବା ଚଉଡ଼ା– ବିଭିନ୍ନ ପରୀକ୍ଷା ପରେ ପ୍ରକୃତ ଚିକିତ୍ସା ହେବ । ସମୟ ଆଉ ହାତରେ ନାହିଁ । ସେତକ ପରୀକ୍ଷା ଆଜିହିଁ କରିବାକୁ ପଡ଼ିବ । ତରବର ଧାଁଦଉଡ଼ାରେ ଅଧା ସରିଲା । ପୂରା ବି ହୋଇଯାଇଥା'ନ୍ତା; ହେଲା ନାହିଁ । କାରଣ ଜିନିର ବ୍ୟାଙ୍କ୍ ଲକର୍ ଅପରେଟ୍ କରିବାର ନିର୍ଦ୍ଧାରିତ ସମୟସୀମା ହେଉଛି ଦିନ ଦୁଇଟା, ତା'ପରେ ରହିଛି ମଧ୍ୟାହ୍ନ ଭୋଜନ । ତା' ବ୍ୟାଙ୍କ୍ ଲକର୍‌ରେ ସାପ ନା ମାଛ କ'ଣ ଅଛି କେଜାଣି ? ମୁଁ ବାହାରେ ସୋଫା ଉପରେ ବସିଲି । ଶୀତତାପ-ନିୟନ୍ତ୍ରିତ ବିରାଟ ହଲ୍‌ରେ ଲୋକ ହାଉଯାଉ ହେଉଥିଲେ । ମୁଁ ସିଗାରେଟ୍‌ଟେ ଲଗାଇଲି । ଏମିତି ଗୋଟିଏ ଲାଇନ୍‌ରେ ତୁମେ କେବେ ଠିଆହୋଇଛ କି ? ଯେଉଁଠି ତୁମେ ହେଲ ନମ୍ବର ୫୬୭୮୩ ଓ ତୁମର ଚାଇନିଜ୍ ଲିପି ପରି ଛୋଟିଆ ଦସ୍ତଖତ ହେଲା ବଞ୍ଚିରହିବାପାଇଁ ଦରକାର ତୁମର ସମସ୍ତ ଖୋରାକର ଚାବିକାଠି । ଧରାଯାଉ ତୁମେ କି ମୁଁ ବା ଆମେ ଦୁଇଜଣ ଏକାଠି ଲାଇନ୍

ଦେଇଥିବାବେଳେ ଗୋଟିଏ ବ୍ୟାଙ୍କ୍ ଡକାୟତି ହୁଅନ୍ତା– କ'ଣ କରନ୍ତେ ଆମେ ? କ'ଣ କରନ୍ତେ ସମସ୍ତେ ? ବା ଏଇ ଶୃଙ୍ଖଳିତ ବ୍ୟସ୍ତତା ଭିତରେ ହଠାତ୍ ଗମ୍ଭୀର ଘୋଷଣାଟିଏ ହୁଅନ୍ତା ଯେ ମଝି ଧଳାସ୍ତମ୍ଭ ପାଖରେ ଟାଇମ୍ ବମ୍‌ଟିଏ କିଏ ରଖିଦେଇଛି । ଆରମ୍ଭ ହୋଇଯାଆନ୍ତା ଘୋର ବିଶୃଙ୍ଖଳା, ପାଟିତୁଣ୍ଡ, ଦଳାଚକଟା, ଚିତ୍କାର ଲକ୍ଷ୍ୟହୀନ ଦଉଡ଼ାଦଉଡ଼ି । ତୁମେ କ'ଣ କରନ୍ତ ? ସେଇ ଗୋଳମାଳରେ ସାମିଲ ହୋଇଯାଆନ୍ତ ନା ମୋତେ କୁଣ୍ଢେଇଧରି ମୋ ଛାତିରେ ମୁଣ୍ଡ ଗୁଞ୍ଜି ଠିଆହୋଇଯାଆନ୍ତ– ସମସ୍ତେ ସେଇ ଶୀତତାପ-ନିୟନ୍ତ୍ରିତ ହଲ୍‌ଛାଡ଼ି ଚାଲିଗଲା ପରେ– ଗୁଡ଼ାଏ ଚିରାକାଗଜ ଇତସ୍ତତଃ ହୋଇ ପଡ଼ିଥାଆନ୍ତେ ଖାଲି– ନିଶୂନ ମଝି ଧଳାସ୍ତମ୍ଭଟି ଆହୁରି ସଫେଦ ଦିଶୁଥା'ନ୍ତା – ଆମେ ସେଇମିତି ଠିଆହୋଇଥାଆନ୍ତେ ।

''ଡେରିହୋଇଗଲା କି ? ଆଜି ବହୁତ ଭିଡ଼ ।'' ତରବର ହୋଇ ଜିନି ପାଖକୁ ଚାଲିଆସୁଥିଲା ।

ଟାଇମ୍ ବମ୍ ଫୁଟିବା ପୂର୍ବରୁ ମୋତେ ତା'କୁ ରୋକିବାକୁ ପଡ଼ିଲା ।

''ନାଇଁ ଚାଲ, ମୁଁ ତ ଆରାମରେ ବସିଥିଲି ।''

ଖାଇବା ପରେ ଟିକିଏ ଗଡ଼ିଯିବାକୁ ବି ସମୟ ନାହିଁ । ବାକିରହିଯାଇଥିବା ଟେଷ୍ଟସବୁ ଏବେ ଶେଷ କରିବାକୁ ପଡ଼ିବ । ସେ ସବୁର ରିପୋର୍ଟ ଅତି ଡେରି ହେଲେ ମଧ ରାତି ନଅଟା ଭିତରେ ରେଡ଼ି କରି ଡାକ୍ତରଙ୍କୁ ଦେଖାଇବାକୁ ପଡ଼ିବ । ଜିନିର ମଉସା ଡାକ୍ତର ସାଢ଼େ ଆଠଟାରେ ଚ୍ୟାମ୍ବର ବନ୍ଦକରନ୍ତି, ଆଜି ଆମପାଇଁ ଆଉ ଅଧଘଣ୍ଟାଏ ଖୋଲା ରଖିବେ । ଘରକୁ ଫେରିଲାବେଳକୁ ମୁଁ ସତରେ ଭାରି କ୍ଳାନ୍ତ ହୋଇପଡ଼ିଥିଲି । ତୁମ ସହ କଥା ହେବାର ଇଚ୍ଛା ବଳବତ୍ତର ହୋଇପଡୁଥିଲା ।

''କ୍ୟାରଟ୍ ଜୁସ୍ ନିଅ– ସ୍କିନ୍‌ପାଇଁ ଭଲ– ଆଇରନ୍‌ବାଲା ।'' ସେତେବେଳକୁ ମୁଁ ତୁମ ନମ୍ବର ଡାଏଲ୍ କରିସାରିଥିଲି ଓ ତୁମେ ପ୍ରାୟ ରିସିଭର୍ ଧରିସାରିଥିଲ ।

''କ୍ୟାରଟ୍ ଜୁସ୍ ପିଇଛ କେବେ ? ଭାରି ଭଲ, ଆଇରନ୍‌ବାଲା'' ... ମୋ ପାଟିରୁ ବାହାରିପଡ଼ିଲା । 'କ'ଣ' ? ଅତ୍ୟନ୍ତ ବିସ୍ମିତ ତୁମ ସ୍ୱର ଭାସିଆସିଲା । ଦୁଇ ତିନି ସେକେଣ୍ଡ ପରେ ତୁମେ ଫୋନ୍ ରଖିଦେଲ । ମୁଁ ଜୁସ୍ ଗ୍ଲାସ୍‌ଟି ଉଠାଇଦେଲି ଓ ପିଉ ନ ପିଉ କହିଲି– ବାଃ, ବଢ଼ିଆ ହେଇଛି । ସାମ୍ପେନ୍‌ପରି ଲାଗୁଛି ପ୍ରାୟ ।

ହୁଁ– ଜିନି ମୁହଁମୋଡ଼ି ଚାଲିଗଲା ସେଠାରୁ । ଯାଉ, ତୁମକୁ ଫୋନ୍ କରିବାର ସ୍ପୃହା ବା ସ୍ପର୍ଦ୍ଧା ଆଉ ନଥିଲା ମୋର ।

ଭୋର୍‌ଭୋର୍‌ରୁ ନିଦ ଭାଙ୍ଗିଗଲା । ଭାରି ଶୋଷଲାଗୁଥିଲା । ପାଣି ପିଇଲା ପରେ ଜାଣିଲି ୫ଟା ବାଜିଛି । ଏଠିକୁ ଆସିଲେ ଉପର ବାଲ୍‌କୋନିକୁ ଲାଗିଥିବା ଛୋଟ ରୁମ୍‌ରେ ମୁଁ ଶୁଏ– ଏକୁଟିଆ । ଖଟ ଉପରୁ ଅଳ୍ପଟିକିଏ ଆକାଶ ଦିଶୁଥାଏ– ପାହାନ୍ତା ପ୍ରହରର ।

ହଠାତ୍ ଲାଗିଲା ଯେମିତି ତୁମେ ପାଖରେ ଠିଆହୋଇଛ, କିଛି କହିବାକୁ ଚେଷ୍ଟା କରୁଛ । ହଠାତ୍ ଭାରି ଏକୁଟିଆ ମଧ୍ୟ ଲାଗିଲା । ଦେହ ଶୀତେଇଉଠିଲା । ଲାଗିଲା ଯେମିତି ତୁମେ ବିଦାୟ ନେବାକୁ ଆସିଛ – କିଛି କହିବାକୁ ଚେଷ୍ଟାକରି ମଧ୍ୟ କହିପାରୁନାହଁ । ଯଦି ବା ବିଦାୟ ନେବାକୁ ଚାହୁଁଛ ତେବେ କାହିଁକି ? କହିବାକୁ ଚାହୁଁଛ କି ଆଉ କିଛି ନିଷ୍ପତ୍ତି ନେବାକୁ ଯାଉଛ । ମୋତେ ଲାଗିଲା ଯେମିତି ବହୁତ ବର୍ଷ ଖରାତରାରେ ଘୂରି ବୁଲୁଛି ମୁଁ । କ'ଣ ଖୋଜୁଛି ଜାଣେନାହିଁ, କ'ଣ ପାଉଛି ବି ଜାଣେନାହିଁ । ଆଖି ଅବସନ୍ନଭାବେ ବୁଜିଆସିଲା– ବୁଜିଆସିବାମାତ୍ରେ ଭାସିଗଲା କେଉଁ ଗୋଟିଏ ବଡ଼ ସହର । ଗଳି ଗଳି ଅପରିଚ୍ଛନ୍ନ । ଛୋଟ ଛୋଟ କ୍ୟାବିନ୍ ପରି ଦୋକାନରେ ତନ୍ଦୁରି ଚିକେନ୍‌ର ଅନାକର୍ଷଣୀୟ, ଶସ୍ତାଳିଆ ବିଜ୍ଞାପନ– ସତେ ଯେମିତି କଞ୍ଚା କୁକୁଡ଼ା କିଏ ହାତରେ ଧରି କାମୁଡ଼ିଯାଉଛି । କାଚ ସୋ' କେଶ୍ ଭିତରେ ନାଲିରଙ୍ଗ ଦିଆହୋଇ ଗୋଡ଼ ଦୁଇଟି ଏକାଠି ଉପରକୁ ଉଠାଯାଇ ବନ୍ଧାହୋଇ ଝୁଲୁଥିବା ଧାଡ଼ି ଧାଡ଼ି ଡ୍ରେସ୍‌ଡ ଚିକେନ୍, ତନ୍ଦୁରି ପୂର୍ବର ପ୍ରସ୍ତୁତ ଅବସ୍ଥା । ଧାଡ଼ି ଧାଡ଼ି କିନ୍ତୁ ଅଲଗା ଅଲଗା– ଗୋଡ଼ ବନ୍ଧା ଉପରେ ଓ କଟାବେକ ସବୁ ନାଲି ରଙ୍ଗର ହୋଇ ଲଟକିରହିଥିବା– ସାମନାରେ ଖଣ୍ଡ... ...ରୁ ମାଛି ବେଢ଼ିଥିବାପରି ଦେଖାଯାଉଥିବା ନିମ୍ନ-ମଧ୍ୟବିତ୍ତ ଲୋକମାନଙ୍କର ଭିଡ଼ ।

ଆଖି ଖୋଲିଗଲା ବା ଖୋଲିବାକୁ ଚାହିଁଲି । ସାମନାରେ ଆଉକିଛି ନଥିଲା, ଖାଲି ତୁମେ ଥିଲ । ତୁମେ ଠିକ୍ ଗତଥର ଦେଖିବାପରି ଦିଶୁଥିଲ । ହଠାତ୍ ତୁମେ ବଢ଼ିବାକୁ ଲାଗିଲ– ମୋର ଚତୁର୍ଦ୍ଦିଗର ସମସ୍ତ ଶୂନ୍ୟସ୍ଥାନ ପୂରଣକରିଗଲ । ସେଇ ବାଲ୍‌କୋନି ଲଗା ଛୋଟିଆ କୋଠରିରେ ତୁମେ କ'ଣ ଆଉ ଆବଦ୍ଧ ହୋଇ ରହିପାରିଥା'ନ୍ତ ? ସ୍ପ୍ରିଂ ଲାଗିଲାପରି ମୁଁ ଉଠିପଡ଼ିଲି ଓ ବାଲ୍‌କୋନି କବାଟ ଭଲକରି ଖୋଲାକରି ରଖିଲି ଯେମିତି ତୁମେ ଅବଲୀଳାକ୍ରମେ ବାହାରିଆସିବ । ସେଇଠି ମୁକ୍ତ କରିଦେଲି ତୁମକୁ । ଜାଣିଥିଲି କରିବାକୁ ପଡ଼ିବ ଏବେ । ଧୀରେ ଧୀରେ ତୁମେ ସିନ୍ଦୂରା ଫାଟିଆସୁଥିବା ଅଳ୍ପ ନାରଙ୍ଗୀ-ହଳଦିଆ ଆକାଶରେ ମିଶିଯାଉଥିଲ । ମୁଁ ସେଇମିତି ଚାହିଁ ରହିଥାଏ । ହଠାତ୍ ମୋ ଭିତରୁ ତୁମକୁ ଏକାବେଳକେ ପାଇବାର ଇଚ୍ଛା ଅଲଗା ହୋଇ ବାହାରି ଆସିଲା– ଖୁବ୍ ହାତପାଆନ୍ତାରେ ମେଘପରି ଭାସିବୁଲିଲା । ବେଶ୍ ବହଳିଆ ଓ ଘନ ହୋଇଆସିଲା ଧୀରେ ଧୀରେ– ରଙ୍ଗ କେମିତି ଥିଲା ମୁଁ କହିପାରିବି ନାହିଁ । ତେବେ କୌଣସି ରଙ୍ଗ ବଦଳାଇ ସ୍ୱଚ୍ଛ ହୋଇଆସିଲା କୁହୁଡ଼ିପରି । ଧୀରେ ଧୀରେ ତା' ପାଖେଇଆସିଲା ଓ କାକର ଟୋପାପରି ମୋ ଦେହର ପ୍ରତି ଲୋମକୂପକୁ ସ୍ପର୍ଶକରିଗଲା ।

କେତେବେଳ ମୁଁ ସେମିତି ଠିଆହୋଇଥିଲି ଜାଣେନାହିଁ । କେତେବେଳେ ବି ପଞ୍ଜାବି, ପାଇଜାମା ବଦଳାଇଛି, ବ୍ରସ୍ କରିଛି ମନେନାହିଁ । ତଳକୁ ଓହ୍ଲାଇଲାବେଳକୁ କିଛି

ଗୋଟାଏ ଶବ୍ଦ ହେଉଥିଲା । କିଛି ଫେଣ୍ଟିବାର ଶବ୍ଦ– ଢିନି ମନୋଯୋଗ ଦେଇ ଅଣ୍ଡାର ହଳଦିଆ ଓ ଧଳାଅଂଶକୁ ଗୋଟିଏ ପରେ ଗୋଟିଏ ମିଶାଇ ମିକ୍ସିରେ ଫେଣ୍ଟୁଛି । ମୋ ଭିତରେ ବି ମିଶ୍ରଣଟିଏ ତିଆରି ହୋଇ ଚାଲିଥିଲା– ଭୟ, ଈର୍ଷା, ବିରକ୍ତି ଓ ଭଲପାଇବାକୁ ଭିନ୍ନ ଭିନ୍ନ ରଙ୍ଗରେ ରଙ୍ଗେଇ ମୁଁ ମିଶ୍ରଣଟିଏ ତିଆରିକରୁଥିଲି । ସେସବୁର ରଙ୍ଗ ବଦଳିଯାଇ ଗୋଟିଏ ରଙ୍ଗ ଯେମିତି ପାଲଟି ଯାଉଥିଲା । ହଠାତ୍ ଲାଗିଲା ଯେମିତି ମୁଁ ତୁମକୁ ବୋଧହୁଏ ଆଉ କେବେ ଦେଖିପାରିବି ନାହିଁ– ଆଜି ଏଇ ମୁହୂର୍ତ୍ତରେ ନହେଲେ । ବହୁତ ଦିନର ବହୁତ ମନେନପଡୁଥିବା କଥା ଏଇ ମୁହୂର୍ତ୍ତରେହିଁ ତୁମକୁ କହିବାକୁ ପଡ଼ିବ । ''ଆରେ, କୁଆଡ଼େ ଯାଉଛ ସକାଳୁ ସକାଳୁ ? ରୁହ, ଆମ୍‌ଲେଟ୍ ଖାଇକରି ଯିବ ।'' ଢିନି କହୁଥିଲା ।

ମୁଁ ଗାଡ଼ିରେ ଷ୍ଟାର୍ଟଦେଇସାରିଥିଲି ।

□□□

# କଂକ୍ରିଟ୍ କଂକ୍ରିଟ୍

''ହେଇ ହେଇ ଦେଖ, ଦେଖ.... ଛାଡ଼ିଗଲ —''

''କାହିଁ, କୋଉଠି ?''

''ଏଇ ସେପଟ— ବାଁ ପଟ— ଲୁହାଗେଟ୍‌କୁ ଦେଖ । 'ଟୁ ଲେଟ୍' ଝୁଲାହୋଇଛି ।

କୋଉଟା କାହାଘର ଗେଟ୍, ଜଣାପଡୁନାହିଁ । ହଁ, ଏଇ ଗେଟ୍‌ରେ 'ଟୁ ଲେଟ' ଝୁଲାହୋଇଛି ।

ଗାଡ଼ି ଅଟକାଇଲା ଜୀବେଶ । ସୁମନା ପ୍ରଥମେ ପ୍ରଥମେ ଓହ୍ଲାଇପଡ଼ି ତରତର ହୋଇ ଆଗେଇଗଲା । ଗେଟ୍ ଟିକିଏ ଖୋଲି ଭିତରକୁ ପଶିଗଲା, ଆଡ଼ଆଖିରେ ଜୀବେଶକୁ ଚାହିଁଦେଇ । ଜୀବେଶ ମଧ୍ୟ ତା' ପରେ ପରେ ପଶିଲା । ପାଚେରି ଓ ଗେଟ୍‌ରୁ ଚାରିଫୁଟ ଛାଡ଼ି ବିରାଟ ଘର । ଦୁଇ ମହଲା । ଦୁଇଟି ଗେଟ୍—ବୋଧହୁଏ ଉପର ଓ ତଳବାଲା ଦୁହିଁଙ୍କପାଇଁ । ଯେଉଁ ଗେଟ୍ ଦେଇ ସେମାନେ ପଶିଲେ ତା'ର ଡାହାଣ ପଟକୁ ଗ୍ରୀଲ୍‌ଦିଆ ବାରଣ୍ଡା । ଗ୍ରୀଲ୍ ପାଖ କାନ୍ଥରେ କଲିଂବେଲ୍ ଲାଗିଛି । ଏଇଟାକୁ ଟିପିବ କି ଭାବିଲା ସୁମନା । ଜୀବେଶ କିଛି କହିବା ଆଗରୁ କଲିଂବେଲ୍‌ରେ ହାତଦେଲା ସେ । ମିନିଟିଏ ପରେ ଧଳା ଟାଓ୍ୱେଲ୍‌ପିନ୍ଧା ଝାଳନାଳ ହୋଇ କଳା ମୋଟାସୋଟା ମଣିଷଟିଏ କବାଟ ଖୋଲିଲା ।

''ଘର ଭଡ଼ା ଦିଆଯିବ ଲେଖା ହୋଇଥିଲା ତ.....'' ସେ କିଛି ପଚାରିବା ଆଗରୁ ସୁମନା କହିପକାଇଲା ।

''ଓଃ, ଟୁ ଲେଟ୍, ଦ୍ୟାଟ୍ ସାଇଡ୍, ଦ୍ୟାଟ୍ ସାଇଡ୍''..... ନିଜର ମୋଟା ପାପୁଲି ବଙ୍କାଇ ବଳିଷ୍ଠ ଚାରି ଆଙ୍ଗୁଳି ହଲାଇ ସେ ଡାହାଣପଟ ଅଢ଼େଇଫୁଟ ଓସାର ଗଳି ଆଡ଼କୁ ଦେଖାଇଦେଲା । ସୁମନା ମଣିଷଟିର ଚାରି ଆଙ୍ଗୁଳିରେ ଚାରୋଟି ସୁନାମୁଦି ଓ ତା'କୁ ଡିଷ୍ଟର୍ବ କରୁଥିବାର ଅବଶ୍ୟମ୍ଭାବୀ ବିରକ୍ତିକୁ ଦେଖିପାରିଲା ।

''ସେଇପଟରେ ବୋଧହୁଏ — ପଛପଟେ — ଚାଲ ।'' ଜୀବେଶକୁ କହିଲା ସୁମନା ।

ଏଥର ଜୀବେଶ ଆଗେଆଗେ ଓ ସୁମନା ପଛେପଛେ ଚାଲିଲେ । ପାଚେରିକୁ ଲାଗି ଅଢ଼େଇଫୁଟ ଓସାରର ଗଳିଭଳି ରାସ୍ତା । ପାଚେରିସାରା ଶିଉଳି ଲାଗିଛି । ତଳେ ସିମେଣ୍ଟ ଢଳାହୋଇଥିବା ରାସ୍ତାରେ ମାଟି ବାଲି ଲାଗିରହିଛି । ଏତକ କେହି ନଜର ଦେଉ ନାହାନ୍ତି ବୋଧହୁଏ— ସୁମନା ଧୀରେ ଧୀରେ ଗୁଣୁଗୁଣୁ ହେଉଥିଲା— ଓନର୍ ରହୁ ନାହାନ୍ତି କି

ଥାଉ– ଏତକ ବି ସେ ଗୁଣୁଗୁଣୁ କରି କହିଲା । ସେଇ ସଂକୀର୍ଣ୍ଣ ଗଳି ଭିତରେ ଦଶ ବାର ଫୁଟ ପରେ ଡାହାଣପଟେ କବାଟଟିଏ ଓ କଲିଂବେଲ୍ ଥିଲା । ଏଥର କଲିଂବେଲ୍ ଚିପିଲା ଜୀବେଶ । ଟିକିଏ ପରେ ସିଢ଼ିରେ କିଏ ଓହ୍ଲାଇ ଆସିବା ପରି ଲାଗିଲା । କବାଟ ଯିଏ ଖୋଲିଲେ ସିଏ ମଧ୍ୟବୟସ୍କ ବା ମଧ୍ୟବୟସ୍କଠାରୁ ଟିକିଏ ଅଧିକ ବୟସ୍କ ବ୍ୟକ୍ତି ଜଣେ ।

''ଏଇଟା ଆପଣଙ୍କ ଘର ଆଜ୍ଞା ?''

''ହଁ'' ସଂକ୍ଷିପ୍ତ ଉତ୍ତର ଥିଲା ତାଙ୍କର ।

''ଭଡ଼ା ଦିଆଯିବ ?''

''ହଁ'' ଅନାସକ୍ତ ସ୍ୱର ଶୁଭିଲା ।

''ଦେଖିପାରିବୁ କି ଟିକିଏ ? ମୁଁ ଜୀବେଶ ରାୟ, ବ୍ୟାଙ୍କ୍ ଅଫ୍ ଇଣ୍ଡିଆର ଅଫିସର୍ । ଇଏ ମୋ ପତ୍ନୀ ସୁମନା । ମୋର ଏବେ ଭୁବନେଶ୍ୱର ଟ୍ରାନ୍ସଫର ହୋଇଛି । ଏ ପାଖାପାଖି ଘରଟିଏ ଖୋଜୁଛି ।''

ଜୀବେଶର ଦୁଇ ତିନୋଟି ବାକ୍ୟର ଉତ୍ତରରେ କେବଳ ''ଆସନ୍ତୁ'' କହି ଭଦ୍ରଲୋକ ଜଣକ ବାହାରିଆସି ସେଇ ସଂକୀର୍ଣ୍ଣ ଗଳିରେ ଚାଲିଲେ ।

''ଓଃ, ଯା'ପରେ ବି ଆହୁରି ଘର ଅଛି ?'' ପୁଣି ଗୁଣୁଗୁଣେଇଲା ସୁମନା ।

ଆହୁରି ପାଞ୍ଚ, ଛଅ ଫୁଟ ଯିବାପରେ ଆଉ ଗୋଟିଏ ଗ୍ରୀଲ୍‌ଦିଆ ବାରଣ୍ଡା ଦେଖାଗଲା । ଭଦ୍ରଲୋକ ଜଣକ ଚାବି ଖୋଲି ଭିତରକୁ ଗଲେ ଓ ଆଉ ଥରେ ମୁହଁ ବୁଲାଇ କହିଲେ, ''ଆସନ୍ତୁ'' ।

ଜୀବେଶ ଆଗେଆଗେ ଓ ସୁମନା ପଛେପଛେ ପଶିଲେ । ଆଗରୁ ଘର ଖାଲିକରିଥିବା ଭଡ଼ାଟିଆଙ୍କର ଅଦରକାରୀ ପରିହାର୍ଯ୍ୟ ମଇଳା ଓ କାଗଜପତ୍ର ଏପର୍ଯ୍ୟନ୍ତ ଏଆଡ଼େ ସେଆଡ଼େ ଖେଳାଇହୋଇ ପଡ଼ିଛି ।

''ଏଇଟା ଡ୍ରଇଂରୁମ୍– ଏଇଠି ଆଟାଚ୍‌ଡ ବାଥ୍ । ଯା'ପରେ ଏଇଟା ହଲ୍ । ଏଇ ଦୁଇ ପଟରେ ଦୁଇଟା ରୁମ୍ । ହଲ୍‌ରେ କମନ୍ ବାଥ୍ ଓ ଲାଟ୍ରିନ୍ । ଏଇଟା କିଚେନ୍ । ଷ୍ଟୋର୍ ନାହିଁ ।''

''ଡ୍ରଇଂରୁମ୍‌ରେ ଆଟାଚ୍‌ଡ ବାଥ୍ ? ବେଡ୍‌ରୁମ୍‌ରେ ନାହିଁ ?'' ବ୍ୟସ୍ତ ହତାଶିଆ ସ୍ୱର ଶୁଭିଲା ସୁମନାର ।

''ଆପଣ ଯେଉଁଟା ଇଚ୍ଛା ସେଇଟା ଡ୍ରଇଂରୁମ୍ କରିପାରନ୍ତି । ଆରଟା ବେଡ୍ ରୁମ୍ । ସେଇଟା ଆପଣଙ୍କର ଚଏସ୍ ।'' ଗମ୍ଭୀର ସ୍ୱରରେ କହିଲେ ଘରମାଲିକ । ଆମେ ତ ଉପରେ ରହୁ । ଆମେ ଏଇଟାକୁ ଡ୍ରଇଂରୁମ୍ ଓ ଆରଟାକୁ ବେଡ୍‌ରୁମ୍ କରିଛୁ ।'' ଏଥରକ ସିଧାଭାବରେ ଚାହିଁ ଉତ୍ତରଦେଲେ ଭଦ୍ରଲୋକ ଜଣକ ।

''ଭଡ଼ା କେତେ ରଖିଛନ୍ତି ?'' ନରମ ଭାବରେ ପଚାରିଲେ ଜୀବେଶ ।

''ସାଢ଼େ ଚାରିହଜାର ପ୍ଲସ୍ ଇଲେକ୍‌ଟ୍ରିସିଟି ଓ ୱାଟର୍ ଚାର୍ଜେସ୍ ।'' ଏଥର ଜୀବେଶଙ୍କୁ ମଧ୍ୟ ସିଧା ଅନାଇ କହିଲେ ଭଦ୍ରଲୋକ ଜଣକ । ବୋଧହୁଏ ଜୀବେଶ ଏତକ ଭଡ଼ାଦେଇ ପାରିବାକୁ ସକ୍ଷମ କି ନାହିଁ ତାହା ଚାହାଣିରେ କଳୁଥିଲେ ।

ସତକୁ ସତ ଜୀବେଶପାଇଁ ଏହା ଟିକିଏ ଅଧିକ ଥିଲା । ''ଇଏତ ବହୁତ ଅଧିକ ହୋଇଯାଉଛି— ଆଉ ଟିକିଏ କମ୍ ହେବ ନାହିଁ ? ୱାଟର୍ ଇଲେକ୍‌ଟ୍ରିସିଟି ଛାଡ଼ି ସାଢ଼େ ତିନି ହଜାର ହେଲେ ମୋତେ ସୁହାଇଲା ପରି ହୁଅନ୍ତା । ଆମର ବ୍ୟାଙ୍କ୍ ତ ଏତେ ପଇସା ଦିଏ ନାହିଁ.....''

''ଦେଖନ୍ତୁ'', ଜୀବେଶଙ୍କୁ ବାକ୍ୟ ପୂରା କରିବାକୁ ଦେଲେ ନାହିଁ ଘର ମାଲିକ । ଜୀବେଶର ବ୍ୟାଙ୍କ୍ କେତେ ପଇସା ଦେଲା ନଦେଲା ସେଥିରେ ତାଙ୍କର କ'ଣ ଯାଏ ଆସେ ? ଏସବୁ ସହାନୁଭୂତି ଉଦ୍ରେକ କରିବା କଥାତକ ବରଂ ଥାଉ— ଏଇ ଢଂଗରେ କହିଉଠିଲେ ସେ, ''ମୋ ଘର ତ ଦେଖିଲେ । ଏଇଠି ଯାହା ମାର୍କେଟ୍ ରେଟ୍ ସେଇଆ କହିଲି । କିଛି ବେଶୀ କମ୍ ହେବାର ନାହିଁ । ଆପଣଙ୍କ ରେଂଜ୍‌ର ଘର ଏଠି ବହୁତ ମିଳିବ । ଖୋଜିନିଅନ୍ତୁ ।'' ଏତକ କହି ଘରୁ ପାଦ ବଢ଼ାଇଲେ ଘର ମାଲିକ— ମୋତେ ଅଯଥା ବିରକ୍ତ କଲେ ଏତକ ନ କହି ମୁହଁରେ ସେପରି ଭାବ ଫୁଟାଇ ସେ ଆଗେ ଆଗେ ବାହାରିଗଲେ । ପଛେ ପଛେ ଜୀବେଶ ଓ ସୁମନା । ତାଙ୍କ ଦୁଆର ଭିତରେ ପଶି ଧଡ଼୍‌କରି କବାଟ ବନ୍ଦକରିଦେଲେ— ଜୀବେଶ ଓ ସୁମନାଙ୍କ ନମସ୍କାରକୁ ଅପେକ୍ଷା ନକରି ।

''କେତେ ଅଭଦ୍ର ଲୋକଟାମ !'' ଗେଟ୍ ବନ୍ଦ କରିବ କି ଖୋଲା ଛାଡ଼ିଦେବ ଭାବୁ ଭାବୁ କହିଲା ସୁମନା ।

''ଅଭଦ୍ର ନୁହେଁ, ବ୍ୟବସାୟୀ ।'' ଗେଟ୍ ବନ୍ଦ କରିବାକୁ ବୁଲିପଡ଼ିଲା ଜୀବେଶ ଓ ସୁମନାକୁ ନ ଚାହିଁ ସ୍କୁଟର୍ ଷ୍ଟାର୍ଟ କଲା ।

ଯେମିତି ବଡ଼ ହାଟଟିଏ— ଦୋକାନୀ ପାଖରେ ନାଲି ପାଚିଲା ବଡ଼ ବଡ଼ ଆମ୍ବ— ତା'ର ଖାତିର ନାହିଁ କାହାକୁ । ଗରାଖକୁ ଆମ୍ବଟିଏ ଉଠାଇ ବୁଲାଇବାଲେଇ ଦେଖାଇଲା । ରସୁଆଳ ଓ ମିଠା ବୋଲି କହିଲା । ଆହୁରି ମଧ୍ୟ କିଲୋ ଚାଳିଶ ଟଙ୍କା ବୋଲି କହିଲା — ଟିକିଏ ଏପଟ ସେପଟ ହେବ ନାହିଁ ।

— ଆଉ ପାଞ୍ଚଟା ଟଙ୍କା କମାଅ ।

— ହେଇପାରିବ ନାହିଁ ଆଜ୍ଞା । ବଜାରସାରା ଭର୍ତ୍ତି ହୋଇଛି । ହେଇଟି ସିଆଡ଼େ ଯାଇକି ସେଇଠୁ ଦରଦାମ୍ ବୁଝୁନାହାନ୍ତି ।'' ଏତକ କହି ମୁହଁଫେରାଇ ଦୋକାନୀ ଆର ଗରାଖପାଇଁ ଆମ୍ବ ଓଜନ କରିବାକୁ ଲାଗିଲା ।

''ଆରେ, ଠିକ୍‌ଠାକ୍ ବସିଛ ତ ? ଲାଗୁନାହିଁ ଯେ– ବସିଛ ନା ପଡ଼ିଗଲଣି ?''

''ନାଇଁ, ନାଇଁ ବସିଛି ।'' ମୁରୁକିହସି ଜୀବେଶର କାନ୍ଧକୁ ଜାବୁଡ଼ି ଧରିଲା ସୁମନା ।

''ଆଉ ଟିକିଏ ବୁଲିଯିବା– ନା କ'ଣ କହୁଛ ?''

''ହଁ, ରବିବାରଟା ତ, ଟିକିଏ ସମୟ ଅଛି । ଚାଲ, ଏଇ ଗଳିରେ ଚାଲ ।''

ଦେଢ଼ମାସ ହେଲାଣି ଜୀବେଶର ବଦଳି ହୋଇଛି ଭାଇଜାଗ୍‌ରୁ ଭୁବନେଶ୍ୱର । ମାସେ ଖଣ୍ଡେ ହେବ ସେମାନେ ଆସିଲେଣି । ଜୀବେଶର ସିନିଅର ଓ ବନ୍ଧୁ ଭି.ଆର୍. ରାଓଙ୍କ ଘରେ ରହୁଛନ୍ତି । ରାଓ ଦମ୍ପତି ତାଙ୍କ ଫ୍ଲାଟ୍ ପାଖରେ ଥିଲେ ଭାଇଜାଗ୍‌ରେ । ଭାଇସାବ୍ ଓ ଭାବୀଙ୍କ ସହ ପଡ଼ୋଶୀ ହିସାବରେ ବହୁତ ଭଲରେ ଚଳୁଥିଲେ ସେମାନେ । ଧୀରେ ଧୀରେ ବନ୍ଧୁତା ଗାଢ଼ହେଲା ଓ ଭାଇ ଭାଇ ପରି ଚଳଣି ଆରମ୍ଭ ହେଲା । ତାଙ୍କ ଘରେ ପଚିଶ ଦିନ ହେବ ରହୁଛନ୍ତି । ବେଶ୍ ଆରାମରେ ଚଳିଯାଉଛନ୍ତି । ସୁମନା ପରିବା କାଟିଲେ ମିସେସ୍ ରାଓ ଚୁଲିରେ ବସାଇ ଦିଅନ୍ତି– ଅଫିସ୍ ଫେରନ୍ତାରେ ରେସନ୍ ଓ ପିଲାଙ୍କପାଇଁ ବିସ୍କୁଟ୍, ଚକୋଲେଟ୍ ଧରି ଆସନ୍ତି ଜୀବେଶ । ତା' ଝିଅ ନୀତା ଓ ତାଙ୍କ ପୁଅ ପୁଟୁକୁ ପାଖରେ ବସାଇ ଘଣ୍ଟାଏ ହେବ ରାତିରେ ପାଠପଢ଼ାନ୍ତି ମିଷ୍ଟର ରାଓ । ଝିଅର ମଧ୍ୟ ପାଖ ସ୍କୁଲ୍‌ରେ କ୍ଲାସ୍ ଟୁ'ରେ ଆଡ୍‌ମିସନ୍ ହୋଇଗଲାଣି । ଚଳିଯାଉଛି ଯେ, କେତେଦିନ ଆଉ ଏମିତି ଚଳିବ ? ଯେତେ ହେଲେ ଅନ୍ୟର ଘର– କ'ଣ ଭାବୁଥିବେ କେଜାଣି ? କେମିତି ମାଡ଼ି ମାଡ଼ି ପଡ଼େ ସୁମନାକୁ । ସପ୍ତାହ ଭିତରେ ଘର ଖଣ୍ଡେ ମିଳିଯିବା ନିହାତି ଉଚିତ । ତିନୋଟି ସୁଟକେଶ୍‌ରୁ ତିନିଜଣ ଚଳିବା ସତରେ ବଡ଼ କଷ୍ଟକର ।

ରବିବାର ସକାଳୁ ଜଳଖିଆ ପରେ ନୀତା ଓ ପୁଟୁଙ୍କୁ ଖେଳିବାକୁ ଛାଡ଼ିଦେଇ ମିଷ୍ଟର ରାଓଙ୍କ ସ୍କୁଟର ଧରି ବାହାରି ଆସିଛନ୍ତି ସେମାନେ । ଜିନିଷପତ୍ର କିଛି ଆସିନାହିଁ– ସେଠି ବି ମାସଟେ ଘର ବନ୍ଦହୋଇ ପଡ଼ିଛି । କ'ଣ ହୋଇଥିବ କେଜାଣି ? ଭଡ଼ା ତ ଯାହା ଗଣିବାକୁ ପଡୁଛି ।

ବ୍ରେକ୍ ଦେଲା ସ୍କୁଟରରେ ଜୀବେଶ । ଆଗରେ ପାନ ଦୋକାନ । ଚାରି ପାଞ୍ଚଜଣ ଲୋକ ଠିଆହୋଇଛନ୍ତି ।

''ଠିଆହୁଅ ଟିକିଏ ଏଠି– ମୁଁ ପଚାରିଆସେ ।''

ଜୀବେଶର ପ୍ରଶ୍ନର ଉତ୍ତରରେ କ୍ୟାବିନ୍‌ଛାଡ଼ି ଉଠିଆସି ହାତଠାରି ଟିକିଏ ଦୂରକୁ ଦେଖାଇଦେଲା ପାନଦୋକାନୀଟି ।

''ଚାଲ, ସେଇଠି ଗୋଟେ ଘର ଖାଲି ଅଛି ।''

ଏଇଟି ଅପେକ୍ଷାକୃତ ଛୋଟ ଘରଟିଏ । ଦୁଇ ମହଲା କିନ୍ତୁ । ଗୋଟିଏ ଗେଟ୍– ତାକୁ ଫିଟାଇ ଭିତରକୁ ପଶିଲେ ସୁମନା ଓ ଜୀବେଶ । ଘର ସାମ୍‌ନାରେ କଲିଂବେଲ୍ ରହିଛି–

କିନ୍ତୁ କେହି କେଉଁଠି ଥିଲାଭଳିଆ ଦିଶୁନାହାନ୍ତି । ଟିକିଏ ଘୁଞ୍ଚିଆସି ଉପରକୁ ଚାହିଁଲା ସୁମନା । ଉପରୁ ଠକ୍ ଠକ୍ ଶବ୍ଦ ଆସୁଛି । କିଛି ଭଙ୍ଗା ହେଉଛି ବା କିଛି ତିଆରି ହେଉଛି । ଚାରିଆଡ଼କୁ ବୁଲି ଚାହିଁଲା ସୁମନା । ଛୋଟିଆ ପୋର୍ଟିକୋଟିଏ । ପୂରା ମଧ୍ୟ ନୁହେଁ ଅଧା– କଷ୍ଟେମଷ୍ଟେ ମାରୁତିଟିଏ ରହିପାରିବ । ଆଗରେ ଦୁଇ ତିନି ଫୁଟର ଜାଗା ଛଡ଼ାହୋଇଛି । ଗଛଟିଏ ବି ଲଗାହୋଇନାହିଁ । ଇଟା ଓ ବାଲି ରହିଛି । ସେଇ ଟିକିଏ ଜାଗାରେ କଡ଼କୁ ମଇଳା କାଗଜପତ୍ର ମେଞ୍ଚାଏ ମଧ୍ୟ ଗଦାହୋଇଛି । କିଛି କାମ ବୋଧହୁଏ ଏବେ ବି ଚାଲିଛି ।

ଜୀବେଶ ବେଲ୍ ଚିପିଲା । ଦୁଇ ମିନିଟ୍ ପରେ ଆଉଥରେ, ମିନିଟିଏ ପରେ ଆହୁରି ଥରେ । କେହି କୁଆଡ଼େ ଦେଖାନାହିଁ ।

''ଏଇଟା ବୋଧହୁଏ ଭଡ଼ା ଦେବାର ନୁହେଁ । କାହିଁ ବାହାରେ ତ କିଛି ଲେଖାହୋଇ ନଥିଲା ?'' ସୁମନା ବୁଲିପଡ଼ିଲା । ଏକଦମ୍ ଲାଗିକରି ଆଉ ଗୋଟିଏ ଘର । ଦୁଇଘର ଭିତରେ ଦୂରତ୍ୱ ଚାରିଫୁଟ୍ ହେବ କି ନାହିଁ– ତିନି ଫୁଟ୍‌ର ପାଚେରି । ସେପଟ ଘରର ଝରକା ପର୍ଦ୍ଦାଟେକି କିଏ ବୋଧହୁଏ ଚାହିଁଛି । ଘରଟା ଅନ୍ଧାରଥିବାରୁ ଦିଶୁନାହିଁ । ପାଚେରି ପାଖଆଡ଼କୁ ଚାଲିଆସିଲା ସୁମନା– ଏଇଠି ପଚାରିହେବ ବୋଧହୁଏ । ସେ ପାଚେରି ପାଖରେ ପହଞ୍ଚୁ ନ ପହଞ୍ଚୁଣୁ ଝର୍କାରେ ପର୍ଦ୍ଦାଟି ପଡ଼ିଗଲା– ମଇଳା ମାଟିଆସିଆ ରଙ୍ଗର ପର୍ଦ୍ଦା ପଡ଼ିଗଲା କୌଣସି ସଂଯୋଗର ପ୍ରତିବନ୍ଧକ ହୋଇ ।

''କ'ଣ କରିବା– କେହି ତ ଦିଶୁନାହାନ୍ତି ।''

କୁକୁରଟିଏ ପଛପଟରୁ ଭୁକିବାପରି ଲାଗିଲା । ଜୀବେଶ ଟିକିଏ ଆଗେଇଗଲା । ପଛପାଖକୁ କ'ଣ ଗୋଟିଏ ଦି'ଟା ବଖରାର ଘର ଦିଶିଲାଣି – ଆଉଟ୍ ହାଉସ୍ ହେବ ବୋଧହୁଏ ।

''ଆସ ।'' ଜୀବେଶ ଡାକିଲା ସୁମନାକୁ ।

ସାଧାରଣ ବେଶଭୂଷାର ପ୍ରୌଢ଼ ଜଣେ ବାହାରିଆସିଲେ ଘର ଭିତରୁ ।

''ଶୁଣିଲୁ ଘର ଖାଲି ଅଛି । କାହାର ?''

''ଆମର । କୁହନ୍ତୁ ।'' ଭଦ୍ରମହିଳାଙ୍କ ସ୍ୱର କୋମଳ ନହେଲେ ମଧ୍ୟ ଶାନ୍ତ ଶୁଭିଲା ।

''ଟିକିଏ ଦେଖିପାରିବୁ କି ?''

''ଶୁଣ, ପ୍ରଥମେ ଭଡ଼ାକଥା ପଚାର ।'' ସୁମନା ଫୁସ୍‌ଫୁସ୍ କରି ପଛରୁ କହିଲା ।

''ହଁ, ଭଡ଼ା କେତେ ଟିକେ କହିବେ କି ?''

''ସାଢ଼େ ତିନି ହଜାର– ତା'ପରେ ଇଲେକ୍‌ଟ୍ରିସିଟି ଓ ପାଣି ।''

ଯାହାହେଉ – ଜୀବେଶ ଆଶ୍ୱସ୍ତ ହୋଇ ସୁମନାକୁ ଚାହିଁଲା– ସେଇ ସ୍ୱସ୍ତି ଖେଳିଗଲା ସୁମନାର ମୁହଁରେ ।

ଛୋଟ ଛୋଟ ହୋଇ ଦୁଇଟି ବେଡ୍‌ରୁମ୍, ଛୋଟ ଡ୍ରଇଂରୁମ୍‌ଟିଏ ଓ ଛୋଟ ଡାଇନିଂ ସ୍ପେଶ୍ । ଚଳିଲାପରି କିଚେନ୍ । ସୁମନା ପ୍ରଥମେ ପଶିଗଲା ବେଡ୍‌ରୁମ୍ ପରି ଲାଗୁଥିବା ଘରକୁ— ସିଧା ସିଧା ତା'ର ଝରକା ପାଖକୁ ଚାଲିଗଲା । ଟାଣିକରି ଝରକା ଖୋଲିଲା ଓ ମୁହଁ ବଙ୍କେଇ ପାଦ ଟିପରେ ଠିଆହୋଇ କ'ଣ ଯେମିତି ଖୋଜିଲା ପରି ଦେଖିହେଲା ।

''କ'ଣ ହେଲା ? କ'ଣ ଦେଖୁଛ ?'' ଜୀବେଶ ପଚାରିଲା ।

''ଆକାଶ ! ଟିକିଏ ଆକାଶ ବି ଦିଶୁନି ଏଠାରୁ ।'' ଚିତ୍କାର କଲାପରି କହିଲା ସୁମନା । ''ଦେଖ ତ, ଏଇଟା ଯଦି ବେଡ୍‌ରୁମ୍, ଏଇଠୁ ଚେନାଏ ବି ଆକାଶ ଦିଶିବ ନାହିଁ – ଟିକିଏ ବି ଖରା ପଡ଼ିବ ନାହଁ । ଠିକ୍ ଲାଗିକରି ଗୋଟାଏ ଚାରିମହଲା କୋଠା ତିଆରିହେଉଛି— ଆହୁରି ବାଉଁଶ ବନ୍ଧା ହୋଇଛି, ଛାତ ପଡ଼ିବ କି କ'ଣ ।'' ସୁମନା ମୁହଁ ନ ବୁଲାଇ ବ୍ୟଗ୍ର ଭାବରେ କହିଲା ।

ଜୀବେଶର ଆଖି ଅପ୍ରତିଭ ଭାବରେ ଘର ମାଲିକାଣୀଙ୍କ ଆଖି ସହ ମିଶିଗଲା । ସୁମନା ଏମିତି ପିଲାଳିଆମି କରେ କାହିଁକି ବେଳେ ବେଳେ ! ବଡ଼ ଅସ୍ୱସ୍ତିକର ପରିସ୍ଥିତିରେ ପକାଏ ସତରେ ।

''ଶୁଣ, ଟିକିଏ କିଚେନ୍‌ଟା ଦେଖିଦେଲ— କେମିତି ଲାଗୁଛି ।'' ଜୀବେଶ ସୁମନା କଥା ନ ଶୁଣିଲାପରି ତା'କୁ କହିଲା ।

କିଚେନ୍‌ର କବାଟ ଫିଟାଇଦେଲା ସୁମନା ।

''କିଚେନ୍‌ରେ ତ ଝରକା ନାହିଁ ।'' ହତାଶ ଭାବରେ ଭଦ୍ରମହିଳାଙ୍କୁ ଚାହିଁଲା ସୁମନା ।

''ହଁ, କିଚେନ୍, ପଛକୁ ବେଡ୍‌ରୁମ୍‌ର ଆଟାଚ୍‌ଡ ଟଏଲେଟ୍ ଅଛି ତ— ତେଣୁ ଝରକା ଦିଆଯାଇନାହିଁ । ତେବେ ବାହାରକୁ କିଚେନ୍‌ରୁ କାବାଟଟେ ଖୋଲେ— ସିଡ଼ିଘରକୁ । ଯିଏ ରହିବ ଏବେ ଅବଶ୍ୟ ସେଇ କବାଟକୁ ବନ୍ଦ ରଖିବ । ଆମର ଉପର ଘର କାମ ଚାଲିଛି ତ ।''

''ଉପର ଘର କାମ ଆଉ କେତେଦିନ ଚାଲିବ ? ଆମକୁ ଉପର ଘର ମିଳିପାରିବ କି ?'' ଜୀବେଶ ପଚାରିଲା ।

''ସେ ତ ଆହୁରି ବୋଧହୁଏ ଛ'ମାସ ଖଣ୍ଡେ ଲାଗିବ । ସେଠି ଆମେ ରହିବୁ । ଏବେ ଆଉଟ୍ ହାଉସ୍‌ରେ ରହୁଛୁ ।''

ଫେରିଲାବେଳକୁ ଜୀବେଶହିଁ କହିଲା ସୁମନାକୁ ଯେ ଏ ଘର ହେବ ନାହିଁ । ଛ'ମାସ ବା ତା'ଠାରୁ ଅଧିକ ଏବେ ଧୂମ୍‌ଧାମ୍ ବାଲି ସିମେଣ୍ଟ ଚାଲିବ । ସେତକ ସହ ଆଡଜଷ୍ଟ କରିବା କଷ୍ଟ । ସୁମନାକୁ ମଧ୍ୟ ଏ ଘର ଜମାରୁ ଭଲଲାଗୁନଥିଲା ।

''ଫେରିଯିବା ନା କ'ଣ ?''

''ଆଉ ଟିକିଏ ଚାଲ । ଆଉ ଗୋଟିଏ ଦୁଇଟି ଗଳି ବୁଲି ଆସିବା । ମୁଁ ଗେଟ୍‌ଗୁଡ଼ାକୁ ନଜର ରଖୁଛି— କେଉଁଠି 'ଟୁ ଲେଟ୍' ଲେଖାଯାଇଥିବ ।

ପୁଣି ଗୋଟିଏ ଗେଟ୍ ସାମନାରେ ଅଟକିଲେ ଜୀବେଶ ଓ ସୁମନା । ଏଇଟି ବୋଧହୁଏ ବହୁତ ବଡ଼ ଘର । ଘରକୁ ଗେଟ୍ ପାଖରୁ ଚାହିଁ ଦେଖିଲେ ସେମାନେ । ଏଥର ଆଗ ଅନୁଭୂତିରୁ ସେମାନେ ଜାଣିପାରିଲେ ଯେ ଏଠାରେ ଚାରୋଟି ୟୁନିଟ୍ ଅଛି । ଆଗ ଉପରତଳ ୟୁନିଟ୍ ଭଡ଼ା ଦିଆହୋଇ ଯାଇଥିବ । ଖାଲିଥିବ ପଛପଟ ଉପର ବା ତଳ । ଯଦି ଘର ମାଲିକ ରହୁଥିବେ, ତା'ହେଲେ ସେମାନେ ପଛପଟେ ଉପରଘରେ ରହୁଥିବେ । ତେଣୁ ଯେତେଦୂର ସଂଭବ ପଛ ତଳଭାଗଟି ଖାଲିଥିବ । ସେମାନେ ସିଧାସିଧା ପଛପଟକୁ ଯାଇ କଲିଂବେଲ୍ ଟିପିଲେ । ସତକୁସତ ଦୁଇ ମିନିଟ୍ ପରେ ଉପରୁ ଘର ମାଲିକ ଆସିଲେ ।

''ନମସ୍କାର ଆଜ୍ଞା, ମୁଁ.... , ତଳଘର.... ଏଇ ପଟଟା ବୋଧହୁଏ ଆପଣଙ୍କର ଖାଲି ଅଛି ।''

''ହଁ''

''ଭଡ଼ାଟା.....''

''ଚାରି ହଜାର ପ୍ଲସ୍ ।''

''ଦେଖିପାରିବୁ କି ?''

''ଆପଣଙ୍କର ଗାଡ଼ି ଅଛି ?''

''ହଁ, କାହିଁକି ?''

''କି ଗାଡ଼ି ? ଅଫିସ୍‌ର ନା ନିଜର ?'' ତା' ପ୍ରଶ୍ନକୁ ଏଡ଼ାଇଯାଇ ପଚାରିଲେ ଘର ମାଲିକ ।

''ନିଜର ଆଜ୍ଞା, ଏଇ ଛୋଟ ମାରୁତି......''

''ବାହାରେ ରଖିବେ ତ ?''

''କାହିଁକି ? ପୋର୍ଟିକୋ କି ଗ୍ୟାରେଜ୍ ମିଳିବ ନାହିଁ ?''

''ଗ୍ୟାରେଜ୍ ଆଜିକାଲି କିଏ ଦେଉଛି ? ପୋର୍ଟିକୋରେ ଦୁଇଟା ଗାଡ଼ି ଠେଲାଠେଲି ହୋଇ ରହୁଛି । ଗୋଟିଏ ଉପରବାଲାଙ୍କର ଓ ଅନ୍ୟଟି ତଳଲୋକଙ୍କର । ଆପଣଙ୍କୁ ଗାଡ଼ି ବାହାରେ ରଖିବାକୁ ପଡ଼ିବ ।''

''ଆପଣଙ୍କର ? ଆପଣଙ୍କର ଗାଡ଼ି ନାହିଁ ?''

''ଆମର ଗାଡ଼ି କୁଆଡୁ ଆସିବ ? ସରକାରୀ ଚାକିରିଆ, ପଇସା କାହିଁ ଗାଡ଼ି କିଣିବାକୁ ? ସେଇ ଧଡଡ଼ା ସରକାରୀ ଜିପ୍ ଚଢ଼ିବା କଥା ।''

''ଗାଡ଼ି କ'ଣ ବାହାରେ ରଖିବା ?'' ଦୁଃଖିତ ସ୍ୱରରେ ପଚାରିଲା ସୁମନା ଜୀବେଶଙ୍କୁ । ଅତି ସରାଗର ଜିନିଷ ଏବେ ତାଙ୍କପାଇଁ ସିଏ । ଚାରି ମାସ ତଳେ ନୂଆ ଲୋନ୍ ନେଇ କିଣାହୋଇଛି । ତା'କୁ ବାହାରେ ରଖିବା କଥା ଭାବିପାରୁ ନଥିଲା ସୁମନା ।

''ହଉ । ଆପଣଙ୍କର ଫୋନ୍ ନମ୍ବରଟା ଦେଇଥା'ନ୍ତୁ । ଭାବିକରି କଥା ହେବି ।'' ସୁମନାର କଥା ନ ଶୁଣିଲାପରି ଜୀବେଶ କହିଲା ଘରମାଲିକଙ୍କୁ ।

''ଇଏ ହେବ ନାହିଁ, ବୁଝିଲ ? ଆଉ ବୁଲିବାକୁ ଇଚ୍ଛା ହେଉନାହିଁ । ଚାଲ ଫେରିଯିବା । କାଲି ବରଂ ଷ୍ଟାଫ୍ କେତେଜଣଙ୍କୁ କହିବି ପାଖଆଖରେ ତାଙ୍କ ଜଣାଶୁଣା ଜାଗାରେ ଖୋଜିଦେବାପାଇଁ ।''

ସତକୁ ସତ ଆଶ୍ଚର୍ଯ୍ୟ ହେଉଥିଲା ସୁମନା । ଇଏ କ'ଣ ତା' ସ୍ମୃତିର ଭୁବନେଶ୍ୱର, ପୁଣି ସହିଦନଗର ? ଜମା ଏଗାର ବାରବର୍ଷ ଭିତରେ କେତେ ବଦଳିଯାଇଛି ସତରେ । ଏଇ ତ ସେ ରୂପକଥାର ନଗରୀ ରହସ୍ୟମୟୀ ଭୁବନେଶ୍ୱର ନୁହେଁ ଯାହାର ଛୋଟିଆ ଛୋଟିଆ ଅଫିସ୍ ବା ଅଫିସରିଆ ବସତି ପରେ ଥିଲା ବୁଦୁବୁଦିକିଆ ବା ନିବିଡ଼ ଜଙ୍ଗଲ, ତା'ଭିତରେ ଲୁଚି ରହିଥିଲେ ଛୋଟବଡ଼ ମନ୍ଦିର ଓ ତା'ଭିତରେ କେତେ ଛୋଟବଡ଼ ଦେବଦେବୀ ! ସଂଧ୍ୟାବେଳକୁ ଶୀତଳ ପବନର ସ୍ରୋତ, ମଧ୍ୟରାତ୍ରିର ରହସ୍ୟମୟ ନୀରବତା, ପାହାନ୍ତା ପ୍ରହର କୋଇଲିର କୁହୁକୁହୁ ଡାକ ସବୁ ଯେମିତି ଉନ୍ନତି ଓ ପ୍ରଗତିକୁ ବାଟ ଛାଡ଼ିଦେଇ ଅପସରି ଯାଇଛନ୍ତି । ରହିଯାଇଛି କଟାଯାଇଥିବା ଗଛ ସବୁଙ୍କର ଉଦାସ ଉଦାସୀନତା, ସଫା ହୋଇ ଯାଇଥିବା ଜଙ୍ଗଲତକର ନିଃଶବ୍ଦ ଅଭିସଂପାତ, ଆହୁରି ଘୂରିବୁଲୁଛି ଚାରିକଡ଼ରେ ଇଟା, ବାଲି, ସିମେଣ୍ଟର ମିଶ୍ରିତ ଆକ୍ରୋଶ ଓ ଦିନରାତି ମୂଲ ଲାଗି ହର୍ମ୍ୟ ପ୍ରାସାଦ ତିଆରି କରୁଥିବା ଦିନ-ମଜୁରିଆମାନଙ୍କର ଝାଳରେ ଘନୀଭୂତ ଜଳୀୟବାଷ୍ପ !

ବଡ଼ ଅଣନିଃଶ୍ୱାସୀ ଲାଗୁଥିଲା ସୁମନାକୁ । ଛ' ନମ୍ବରରେ ତା' ବାପାଙ୍କର ଛୋଟିଆ ଥ୍ରୀଆର୍ କ୍ୱାର୍ଟର କଥା ମନେପଡ଼ିଗଲା ତା'ର । ଛୋଟିଆ ହେଲେ ବି କେତେ ଶାନ୍ତିଦାୟକ ଥିଲା ସେ । ଛୋଟିଆ ବଗିଚାରେ ଭିନ୍ନ ଭିନ୍ନ ପ୍ରକାରର ଫୁଲ ଓ ଫଳ ଗଛ । ସକାଳୁ ଉଠି ପ୍ରଜାପତି ପଛରେ ଦୌଡ଼ା, ଠାକୁରଙ୍କପାଇଁ ଫୁଲତୋଳା, ଲୁଚିଲୁଚି କୋଇଲିକୁ ଖୋଜିବାର ପ୍ରୟାସ । ସ୍କୁଲରୁ ଫେରିଆସି କାଜୁବାଦାମ ଗଛର ଗହଳ ଛାୟାରେ ଫୁଲ, ପତ୍ର, ମାଟିରେ ରଂଧାବଢ଼ାର ଖେଳ । ତା' ଛୋଟିଆ ନୀତାପାଇଁ ତ ସ୍ୱପ୍ନପ୍ରାୟ ଏକଥା ! ମାଟି, ଶୁଖିଲା ପତ୍ର ଇତ୍ୟାଦି ହେଉଛି ଗଂଧିଆ ମଇଳା ଜିନିଷ ତା' ପାଇଁ । ସେ ପ୍ରକୃତରେ ସଫାସୁତୁରା ବାସ୍ନା ବାହାରୁଥିବା ଆତ୍ମୀୟ ଗଛମାନଙ୍କୁ ଦେଖିଲା କେବେ ଯେ— ଅନ୍ତରଙ୍ଗ ହେବା ତ ଦୂରର କଥା । ଖେଳର ମାନେ ତା'ପାଇଁ ପ୍ଲାଷ୍ଟିକର ରଙ୍ଗ ବେରଙ୍ଗର ଖେଳନା କେତେଗୁଡ଼ିଏ ବା ଟିଭିକୁ ମୂକ-ଉଦାସ ଭାବରେ ଚାହିଁ ବସିବା ।

ସ୍କୁଟର୍‌ରେ ଫେରିଲାବେଳେ ସୁମନା ଚାହିଁ ଚାହିଁ ଦେଖୁଥିଲା ଖୁନ୍ଦାଖୁନ୍ଦି ହୋଇ ଖାଲି ଘରଗୁଡ଼ାକ, ଟିକିଏ ହେଲେ ଖାଲିଜାଗା ନାହିଁ– ରୁପାଥାଳିରେ ସୁନାମୋହର ପରଷି ଦେଉଛି ଏଇ ଘର ସବୁ । ଇଟା-ବାଲି-ସିମେଣ୍ଟର କୁହୁକ ଯେମିତି ସବୁ ଶୂନ୍ୟସ୍ଥାନକୁ ଠିକଣା ଜବାବ ଦେବାପାଇଁ ବଦ୍ଧପରିକର । କେଜାଣି ମଣିଷର କେଉଁ ପ୍ରକାର ଚାହିଦାର ଶୂନ୍ୟତାକୁ କଂକ୍ରିଟାଇଜ୍ କରୁଛି ?

ବୁଧବାର ସଂଧ୍ୟାରେ ଅଫିସରୁ ଫେରିଲାବେଳକୁ ଜୀବେଶଙ୍କର ମୁହଁ ଉଜ୍ଜ୍ୱଳ ଦିଶୁଥିଲା ।

''ଘରଟିଏ ମନକୁ ପାଇଛି । ଦେଖ, ମନା କରିବ ନାହିଁ । ଭାଇଜାଗ୍‌ରେ ବି ତ ଆମେ ଫ୍ଲାଟ୍‌ରେ ରହିଥିଲେ ।'' ଜୀବେଶ ସୁମନାକୁ ଖୋଜି ଖୋଜି ରୋଷେଇ ଘର ଆଡ଼କୁ ଆସୁଥିଲେ ।

ଫ୍ଲାଟ୍ ! ସୁମନାର ମୁହଁ ଶୁଖିଗଲା । ଭୁବନେଶ୍ୱର ଆସି ଫ୍ଲାଟ୍‌ରେ ରହିବ, ଏକଥା ତ ଭାବିପାରି ନଥିଲା ସେ ।

''ଭାଇଜାଗ୍‌ରେ ସମୁଦ୍ର ଥିଲା ଯେ......'' ଅଭିଯୋଗ କରିବା ଢଙ୍ଗରେ କହିଲା ସୁମନା ।

''ଏଠି ଆଉ ସମୁଦ୍ର କେତେବାଟ ଯେ ? ଘଣ୍ଟାକର ତ ରାସ୍ତା । ଚାହିଁଲେ ମାସରେ ଥରେ ଅନ୍ତତଃ ତ ଯାଇହେବ ।'' ଶନିବାର ସଂଧ୍ୟା ଓ ରବିବାର ସକାଳ ସୁଦ୍ଧା ସେମାନେ ଭୁବନେଶ୍ୱର ମଝିଆମଝି ବହୁତଳବିଶିଷ୍ଟ ପ୍ରାସାଦର ସବୁଠାରୁ ଉପର ମହଲା– ଷଷ୍ଠ ତଳରେ ଥିବା ତିନିରୁମ୍‌ବିଶିଷ୍ଟ ଫ୍ଲାଟ୍‌କୁ ଉଠିଯାଇଥିଲେ । ସୁମନାର କଥା ଅନୁସାରେ ବାଲ୍‌କୋନିରେ ଗ୍ରୀଲ୍ ଲାଗିଥିଲା ନୀତାର ସୁରକ୍ଷାପାଇଁ । ସେଇଠି ଚେଆର୍ ପକାଇ ବସି ଆକାଶକୁ ଚାରିଆଡ଼କୁ ଓ ତଳକୁ ଚାହୁଁଥିଲା ସୁମନା । ଇଏ ବରଂ ଭଲ– ଶୂନ୍ୟରେ ଝୁଲିଲାପରି ଲାଗୁଛି– ସବୁ କୋଠାବାଡ଼ି ଅତିକ୍ରମ କରି ତା' ଉପରେ ଝୁଲିରହିଥିବା ଅଦୃଶ୍ୟ ବାୟୁମଣ୍ଡଳକୁ ତ ଅନୁଭବ କରିହେଉଛି । ଆକାଶ ତ ଟିକିଏ ଦେଖାଯାଉଛି ।

ଜୀବେଶ କହିଥିଲେ, ମାଟି ମୁଠାଏ ନ ମିଳିଲା ନାହିଁ, ଛାତ ଉପରଯାକ ଓ ତା' ଉପର ବିସ୍ତୃତ ଆକାଶ ହେଉଛି ତା'ର । ଛାତ ଉପରେ କେତୋଟି ଫୁଲଗଛର କୁଣ୍ଡ ରଖିଥିଲା ସୁମନା । ନୀତା ଶୋଇଛି– ଆୟା ବାସନ ମାଜୁଛି । ଜୀବେଶ ଫେରିବାକୁ ଆହୁରି ଘଣ୍ଟାଏ ଅଛି । ଧୀରେ ଧୀରେ ଉପରକୁ ଉଠିଗଲା ସୁମନା । ସାଥୀରେ ଆଣିଛି ମନୋଜ ଦାସଙ୍କ 'ଆକାଶର ଇସାରା'– ଖୋଲା ଆକାଶତଳେ ବସି ପଢ଼ିବାକୁ ଭଲ ଲାଗିବ । ନୀରବ ନିଃସ୍ତବ୍ଧ ଲାଗୁଛି ଏଠି, ତଳର ଅସ୍ପଷ୍ଟ କୋଳାହଳ କାନରେ ବାଜୁଛି, ବହୁତ ଦୂରରୁ ଯେମିତି ! ବହିଟିକୁ ଖୋଲି ଗୋଟିଏ କୋଣରେ ବସିଗଲା ସୁମନା । ଚା' କପେ ନେଇ ଆସିଥିଲେ ଭଲଲାଗିଥା'ନ୍ତା । ଯିବ କି ସିଏ ? କାନ ଡେରିଲା ସୁମନା–

ପାଦଶବ୍ଦ ଶୁଭୁଛି ସିଢ଼ିରେ— ଗୋଟିଏ ନୁହେଁ— ଦୁଇଟି ଚାରୋଟି ନୁହେଁ— ବହୁତ । କିଏ ହୋଇପାରେ ? ଏତେବେଳେ କିଏ ସବୁ, କାହିଁକି ? ଏତେ ଉପରେ ? ଠିଆ ହୋଇପଡ଼ିଲା ସୁମନା, ପାଦେ ଦୁଇପାଦ ଆଗେଇ ଆସିଲା ସିଢ଼ି କବାଟଆଡ଼େ

ଲା ଲା ରେ....... ଲା...... ଲା......

ଓଃ, ଏଇମାନେ ! ଅଠର କୋଡ଼ିଏ ବର୍ଷର ପିଲା କେତୋଟି— ଆରେ କେତେଜଣ ? ଗୋଟିଏ ପରେ ଗୋଟିଏ କବାଟ ଭିତରୁ ବାହାରି ଆସୁଛନ୍ତି । ହାତରେ କଅଣ ? ନାଲି ରଙ୍ଗର ପୋର୍ଟେବଲ ଟୁ-ଇନ୍-ୱାନ୍ ଜଣକ ହାତରେ— ଆଉ ଜଣେ ବାଲ୍‌ଟିଟେ ଧରିଛି, ତା' ଭିତରେ କ'ଣ କ'ଣ ରହିଛି— ବୋତଲଗୁଡ଼ାଏ ପରି ଲାଗୁଛି । ଦୁଇଟା ପିଲା କାନ୍ଧରେ ଗୀଟାର୍ ଝୁଲାଇ ଡ୍ରାଙ୍ଗୋଟେ ବୋହିଆଣୁଛନ୍ତି ଆଉ ଦୁଇଜଣ । କେହି ଚାଲୁ ନାହାନ୍ତି । ବେତାଳିଆ ଗୋଡ଼ ପକାଇ ପକାଇ ଝୁଲୁଛନ୍ତି । ରଙ୍ଗ ବେରଙ୍ଗ ଟି ସାର୍ଟ, ସର୍ଟସ୍ ଓ ମୁଣ୍ଡରେ ଗୋଟିଏ ଗୋଟିଏ ବ୍ୟାଣ୍ଡ୍ । ଆଚ୍ଛା ଏଠି କ'ଣ ଯାତ୍ରା ଲାଗିଛି ନା କ'ଣ ? ବଡ଼ ରାଗ ଲାଗିଲା ସୁମନାକୁ । ହସୁଛନ୍ତି କେମିତି ଦେଖ !

"କିଏ ତୁମେ ସବୁ ? କୁଆଡ଼େ ଆସିଛ ଏଠାକୁ ? କ'ଣ ହେଉଛି ଏସବୁ ?"

"କିଏ ମାନେ କ'ଣ ଆଣ୍ଟି— ଆମେମାନେ ତ ।"

– "ତେରେ ହାଥୋଁ ମେଁ..... ଆରେ ଆରେ ଆଣ୍ଟି କ'ଣ କହୁଛୁ ବେ ଦିଦି କହ ଦିଦି – ଆଣ୍ଟି ଭଳି ଦିଶୁଛି ତୋତେ ? ଯେ ଛୟାଳିଶ ନମ୍ବରବାଲି – ନ୍ୟୁଲି ଇମ୍ପୋର୍ଟେଡ ।" ବହୁତ ଜୋର୍‌ରେ ଝୁଲୁଥିବା ନାଲି ଟିସାର୍ଟ ଓ ହଳଦିଆ ସର୍ଟସ୍ ପିନ୍ଧିଥିବା ପିଲାଜଣକ କହିଲା ।

"ଓଃ ସରି, ଦିଦି – ଆମେ ସବୁ ଏମିତି ଏନ୍‌ଜୟ କରୁଛୁ । ଆଜି ରେଜଲ୍‌ଟ ବାହାରିଛି ତ— ସମସ୍ତେ ପାସ୍ ।"

ଚୁଡ଼ିଆଁ ହେଁ— ତେରେ ସାଜନ୍ ...... ଆବେ ସେତିକି ଚାଟ-ବଟଲ୍ ଓପନ୍‌ର କାହା ପାଖରେ ରହିଲା କାଢ଼ । ଆବେ ସେଠୁ ତଳୁ ଆସୁ ଆସୁ ଶଳା ଥଣ୍ଡାରୁ ଗରମ ହୋଇଗଲାଣି ।" ସେଇ ପିଲାଟି ପୁଣି କହିଲା ।

"ତୁମର ଯାହା କରିବା କଥା ଘରେ କର— ଏଠି କାହିଁକି ? ଯାଅ ଯାଅ ତଳକୁ ଯାଅ ସବୁ ।"

"ତଳକୁ— ମାଇଁ ଫୁଟ୍ । ଦିଦି ତୁମେ ତଳକୁ ଭାଗ— ଭଲ ନ ଲାଗୁଛି ଯଦି । ଇଏ ଦଶନମ୍ବରବାଲା, ଆମର ତିନି ନମ୍ବର ଓ ତା'ର ବତିଶ— ଆଉ ଏତକ ଫ୍ରେଣ୍ଡସ୍— ବୁଝିଲ ।" ଏଥର ଅପେକ୍ଷାକୃତ ଭଦ୍ର ଯୁବକଟିର ବୋଧହୁଏ ଧୈର୍ଯ୍ୟଚ୍ୟୁତି ଘଟିଥିଲା ।

ବାଜିଉଠିଲା ଡ୍ରାଙ୍ଗୋଟି । ଧରାଧରି ହୋଇ ନାଚିବାକୁ ଆରମ୍ଭ କଲେ ଦୁଇଜଣ । ବିଅର୍ ବଟଲ୍‌ଟେ ଖୋଲି ଫେଣକୁ ଆୟତ୍ତ କରୁଥିଲା ଆଉ ଜଣେ ।

''ମେରେ ସପନୋ କି.....''

''ଶୁଣ, ଏଠି ଏମିତି ଗୋଳମାଳ କର ନାହିଁ କହୁଛି । ଚୁପ୍‌ଚାପ୍ ତଳକୁ ଯାଅ କହି ଦେଉଛି ।''

''ଓଃ ! ନହେଲେ କ'ଣ କରିପକାଇବ ଆମର ଶୁଣେ ? ଭଲରେ ମୁଁ କଥାବାର୍ତ୍ତା କରୁଛି– ତୁମେ ଏତେ ତାତିଯାଉଛ ? ଆରେ କମନ୍ ଏରିଆ । କମନ୍ ଏରିଆପାଇଁ ସମସ୍ତେ ପଇସା ଦେଇଛନ୍ତି । ସେଆର ହୋଇଛି, ବୁଝିଲ ? ଛାତଟା ତମର ନୁହେଁ– ତମ ନିଜର ଏକୁଟିଆ ନୁହେଁ । ଏଠି ଆମେ ଯାହା ମନ ତା' କରିପାରିବୁ.....''

ସୁମନା ଆଉ କିଛି ଶୁଣିବା ଅବସ୍ଥାରେ ନଥିଲା । ଦୌଡ଼ିଲାପରି ପାହାଚ ଡେଇଁ ଡେଇଁ ଘର ଭିତରକୁ ପଶିଗଲା ସେ । ବାଲ୍‌କୋନିରେ ଚେଆର୍‌ରେ ବସିପଡ଼ି ଦୁଇ ହାତରେ ମୁହଁ ଘୋଡ଼ାଇ କଇଁକଇଁ କାନ୍ଦିଉଠିଲା ସେ । ଆଃ ! କାହିଁକି ଉପରକୁ ଯାଉଥିଲା ସେ ! ଏଇ ଗ୍ରୀଲ୍‌ଘେରା ବାଲ୍‌କୋନିରୁ ବରଂ ପାଞ୍ଚ ଫୁଟରେ ଆଠ ଫୁଟର ଆକାଶ ବା ଦିଶିଯାଇ ଆଢୁଆଳ ହୋଇଯାଉଥିବା ଧଳା ବଉଦ ଦେଖିବା ଭଲ– ଏତେ ବଡ଼ ପୃଥିବୀରୁ ତା'ର ପ୍ରାପ୍ୟ ସେଇ ଖଣ୍ଡକ କେବଳ ! ଖୋଲା ମେଲା ଆକାଶ, ପବନ, ବିସ୍ତରିଥିବା ଜଙ୍ଗଲ ଏସବୁର ସ୍ୱପ୍ନ ସେ କାହିଁକି ଦେଖୁଛି ସତରେ !

– ମେରେ ସପନୋ କି ରାନୀ କବ ....... ଭାସି ଆସୁଥିଲା ଛାତ ଉପରୁ ତା' ସହ ବେତାଳିଆ କିଛି ଦୁମ୍‌ଦାମ୍ ଶବ୍ଦ ମଧ୍ୟ ।

□□□

# ଭଂଗୁର

ଅତସୀ ବାଥ୍‌ରୁମ୍ ଭିତରୁ ବାହାରିଆସିଲା ବେଳକୁହିଁ ଅନୀତା ଘର ଭିତରକୁ ପଶି ଆସିଲେ ।

''ଗିଜର୍‌ଟା ଲଗାଇଦେଇଥିଲି– ଗରମ ପାଣି ନେଲୁ ତ ? ଆଜି ସକାଳୁ ଟିକିଏ ଶୀତ ପଡ଼ିଯାଇଛି ।'' ଅତସୀଙ୍କ ହାତକୁ ବଡ଼ ଟାଓ୍ୱେଲ ବଢ଼ାଇ ଦେଉ ଦେଉ ଅନୀତା କହିଲେ– ''ବଡ଼ ଟାଓ୍ୱେଲ ଆଉ ଘରେ ନାହିଁ, ସେଦିନଠାରୁ– ବହୁତ ଖୋଜିଲା ପରେ ମିଳିଲା ।''

ଟିକିଏ ଚୁପ୍ ହୋଇଗଲେ ସେ–

ଅତସୀ ଟାଓ୍ୱେଲଟି ନେଇ ମୁଣ୍ଡ ପୋଛୁପୋଛୁ ଝରକାପାଖକୁ ଚାଲିଆସିଲେ ।

''ଗିଜର୍‌ଟା ବି ସେ ଲଗାଇଥିଲେ । ଘର ତିଆରିବେଳେ ତ ଏସବୁ ପ୍ରଭିଜନ୍ ନ ଥିଲା । ବ୍ୟସ୍ତ ହେଉଥିଲେ ସବୁବେଳେ ମୋର ସାଇନସ୍ ଅଛି ବୋଲି– ଗରମ ପାଣି ମୋର ବର୍ଷକୁ ଆଠମାସ ଦରକାର ।''

ଅତସୀ ଝରକାଆଡ଼କୁ ମୁହଁ ଫେରାଇ ଅନୀତାଙ୍କୁ ଟିକିଏ ଚାହିଁଲେ ଓ ମୃଦୁଭାବରେ ହସିଲେ ।

''ତୋ ବଗିଚାଟି ଭାରି ସୁନ୍ଦର ହୋଇଛି ଲୋ ଅନୁ । ଛୋଟିଆ ଏଡ଼େ ସୁନ୍ଦର ବଗିଚା ଏମିତି ମୁଁ ଦେଖିନାହିଁ ।''

''ବଗିଚା ୟା'ଙ୍କର ବଡ଼ ସଉକ୍ ଥିଲା । ଅତି ଯତ୍ନରେ ଗୋଟିଏ ଗୋଟିଏ କରି ଗଛ ଲଗାଇଥିଲେ । ସକାଳୁ ଉଠିପଡ଼ି ଲନ୍‌ରୁ ଅଳିଆପତ୍ର ବାଛୁଥିଲେ । ମାଳିଟି ୟା'ଙ୍କ କଥା ଭାରି ମାନୁଥିଲା । ସବୁବେଳେ କହୁଥିଲେ– ଅନୁ, ରିଟାୟାରମେଣ୍ଟ ପରେ ଆମ ଦୁଇଜଣଙ୍କର ଦିନର ଅଧାସମୟ ଏଇଠି କଟିବ– ୟା'କୁ ଏବେଠାରୁ ଯତ୍ନ ନକଲେ କେମିତି ହେବ ? ଆମେ ଏଇଠି ଜଳଖିଆ, ଚା, ଲଞ୍ଚ, ଡିନର୍ କରିବା– ରାତିକୁ ଶୋଇବାକୁ ଖାଲି ଘରକୁ ଯିବା । ମୁଁ କହୁଥିଲି– ଆଉ ଯୋଉ ବହିଗୁଡ଼ାକ ? ଯେତକ ବହି ଗଦାଇଛ ସେ କ'ଣ ହେବ ? ସେ କହୁଥିଲେ– ତୁମେ ପଢ଼ିବ, ମୁଁ ଶୁଣିବି । ନଭେଲ୍ ହେଲେ ଆମେ ଦୁଇଜଣଯାକ ମିଶି ପଢ଼ିବା ।'' ଲୁହ ଛଳଛଳ ଆଖିରେ ଅନୀତା ଚାହିଁଲେ ଅତସୀଙ୍କୁ, ''କିନ୍ତୁ ଦେଖ ! ଭାଗ୍ୟର କି ଖେଳ ! ମୁଁ ଏକୁଟିଆ ରହିଗଲି– ଯାହା ଯାହା ଆମେ ଏକାଠି କରିବାକୁ ଭାବିଥିଲୁ ସେସବୁ ସ୍ୱପ୍ନ ହେଇ ରହିଗଲା ।''

ଅତସୀ ଝରକା ପାଖରୁ ଖଟପାଖକୁ ଚାଲିଆସିଲେ, ଅନୀତାଙ୍କ ପାଖରେ ବସି ପଡ଼ିଲେ ଓ ତାଙ୍କ ଡାହାଣ ହାତ ପାପୁଲିକୁ ମୁଠାଇ ଧରିଲେ ।

ଦୁଇଧାର ଲୁହ ଖସିପଡ଼ିଲା ଅନୀତାଙ୍କ ଆଖିରୁ । ଦୀର୍ଘଶ୍ୱାସ ନେଲେ ସେ, ''ଚାଲ୍, ଆମେ ଆଜି ବଗିଚାରେ ବସି ଚା' ପିଇବା ।''

ଅନୀତାଙ୍କ ଘରେ ପ୍ରତି ସ୍ଥାନରେ ତାଙ୍କ ଉନ୍ନତ ରୁଚିର ଛାପ । ଅତସୀ ସପ୍ରଶଂସ ଦୃଷ୍ଟିରେ ଆଖି ବୁଲାଉଥିଲେ । ଆଗରୁ ଦୁଇ ତିନିଥର ସେ ଅନୀତାଙ୍କ ଘରକୁ ଆସିଛନ୍ତି, କିନ୍ତୁ ଏତେ ନିରେଖି ଦେଖିପାରିବାର ସୁଯୋଗ ପାଇନାହାନ୍ତି । ଗତ ଦଶବର୍ଷ ଭିତରେ ତ ନୁହେଁ । ତା' ପୂର୍ବରୁ ଯେତେବେଳେ ମଧ୍ୟ ସେ ଯୁଆଡ଼େ ଆସନ୍ତି— ଖୁବ୍ ତରତର ହୋଇ ଫେରିଯାଆନ୍ତି— ସବୁବେଳେ ଶ୍ରୀକାନ୍ତଙ୍କ ଯୋଜନା ତାଙ୍କ ମୁଣ୍ଡରେ ଖେଳୁଥାଏ — ଶ୍ରୀକାନ୍ତ କହିଛନ୍ତି ଏଠି ପନ୍ଦର ମିନିଟ୍‌ରୁ ଅଧିକ ନୁହେଁ, ତାଙ୍କର ଅନ୍ୟ କାମ ଅଛି । ଦଶ ମିନିଟ୍ ହେବାପରଠାରୁ ସେ ଘଣ୍ଟାକୁ ଦେଖୁଥାଆନ୍ତି ଓ ଶ୍ରୀକାନ୍ତଙ୍କୁ ଚାହୁଁଥାଆନ୍ତି— କାଳେ ଇଶାରା ଦେବେ । ଶ୍ରୀକାନ୍ତ କିନ୍ତୁ ତାଙ୍କର ବାନ୍ଧବୀ ଓ ତାଙ୍କ ସ୍ୱାମୀଙ୍କ ସହ ଗପରେ ମଜ୍ଜିଯାଇଥାଆନ୍ତି— ତାଙ୍କ ଟ୍ରେନିଂ ବେଳର କଥା— ଗତବର୍ଷ ବଡ଼ ବ୍ରିଜ୍‌ଟା ତିଆରି ହେବାର ଛଅ ମାସରେ ଭୁଶୁଡ଼ିଗଲା-- ଏଥିନେଇ ତାଙ୍କ କ୍ଷୋଭ ଓ କାର୍ଯ୍ୟକାରିତା ଇତ୍ୟାଦି । ଅତସୀ ସାମାନ୍ୟ ଅନ୍ୟମନସ୍କା ହୋଇ ଏତକ ଶୁଣୁଥା'ନ୍ତି— କୌଣସି ମନ୍ତବ୍ୟ ଦିଅନ୍ତି ନାହିଁ । ପ୍ରାୟ ଅଧଘଣ୍ଟାଏ ପରେ ଶ୍ରୀକାନ୍ତ ତାଙ୍କଆଡ଼କୁ ଦୃଷ୍ଟି ଦିଅନ୍ତି ଓ ଠିଆ ହୋଇପଡ଼ି କୁହନ୍ତି— ଏଥର ଉଠିବା ।

ବିଦାୟ ଦେବାବେଳକୁ ବାନ୍ଧବୀ ଜଣକ ଅତସୀଙ୍କ ପିଠିରେ ମୃଦୁସ୍ପର୍ଶ ଦେଇ କହନ୍ତି — ଅତସୀ, ତୋ ହଜ୍‌ବ୍ୟାଣ୍ଡ ଜଣେ ଏକ୍‌ସେଲେଣ୍ଟ୍ ଲୋକ । ଅତସୀ ମଧ୍ୟ ମୃଦୁହସରେ ପ୍ରତ୍ୟୁତ୍ତର ଦିଅନ୍ତି ।

ଏତେ ପ୍ରଗଲ୍‌ଭ ଶ୍ରୀକାନ୍ତ କିନ୍ତୁ ଭୁବନେଶ୍ୱରଠାରୁ ସମ୍ବଲପୁର ପର୍ଯ୍ୟନ୍ତ ଗାଡ଼ିରେ ପ୍ରାୟ ଚୁପ୍ ହୋଇ ବସିଥାଆନ୍ତି । ଅତସୀ ସଜାଗ ହୋଇ କାନଡେରି ତାଙ୍କ ପାଖରେ ବସିଥାଆନ୍ତି— କାଳେ ଶ୍ରୀକାନ୍ତ କିଛି କହିବେ ବୋଲି— ଅନେକ ସମୟ ପରେ ଅତସୀ ନିଜେ କିଛି ପଚାରିବସନ୍ତି— କିନ୍ତୁ ପ୍ରାୟ ଉତ୍ତର କିଛି ପାଆନ୍ତି ନାହିଁ । ତାଙ୍କୁ ଲାଗେ ଶ୍ରୀକାନ୍ତ ଯେମିତି ତାଙ୍କ ଅସ୍ତିତ୍ୱକୁ ପୂରାପୂରି ବିସ୍ମରି ଯାଇଛନ୍ତି— ସେ ଯେ ରକ୍ତମାଂସର ଶରୀର ନେଇ ତାଙ୍କଠାରୁ ମାତ୍ର ଛଅ ଇଞ୍ଚ ଦୂରରେ ଆମ୍ବାସାଡର୍ କାର୍‌ରେ ଗତ କେତେ ଘଣ୍ଟା ଧରି ବସିଛନ୍ତି, ସେକଥା ଚେତନାରେହିଁ ନାହିଁ ତାଙ୍କର !

ଏତେ ଲମ୍ବା ସମୟ ମଧ୍ୟରେ ଆଉ କ'ଣ କରନ୍ତେ ଅତସୀ ? କାରଣ ଖୋଜିବସନ୍ତି —କାହିଁକି ଶ୍ରୀକାନ୍ତ କଥା କହୁନାହାନ୍ତି ତାଙ୍କ ସହ ? ମନରେ ଆଶଙ୍କା ଆସେ, ତାଙ୍କୁ ନିଜର ଯୋଗ୍ୟ ବୋଲି ଭାବୁନାହାନ୍ତି ସେ ? କୋଉଦିନ କ'ଣ ଭୁଲହୋଇଯାଇଥିଲା,

ସେ ବିରକ୍ତ ହୋଇଥିଲେ— ସେଇକଥା ମନେରଖିଛନ୍ତି କି ଆଉ ? ଘରକୁ ଫେରିବା ପରେ ଅଧିକ ମାନସିକ ଶକ୍ତି ଲଗାଇ ସେ ଶ୍ରୀକାନ୍ତକୁ ଖୁସି କରିବାକୁ ଚେଷ୍ଟା କରନ୍ତି– ଆଶା କରି ବସିଥାଆନ୍ତି– କାଳେ ସେ ପ୍ରଶଂସା କରି ଦୁଇପଦ କିଛି କହିବେ ! କିନ୍ତୁ ତାଙ୍କର କୌଣସି ଉଦ୍ୟମ ଶ୍ରୀକାନ୍ତଙ୍କ ନଜରରେ ପଡ଼େନାହିଁ— ପଡ଼େନାହିଁ ନା ସେ ଜାଣି ଜାଣି ସେତକ ଏଡ଼େଇ ଯାଆନ୍ତି ! ବଡ଼ ସନ୍ଦିହାନ ଲାଗେ ତାଙ୍କୁ ।

—କିନ୍ତୁ କାହିଁକି ? କାହିଁକି ?

—କାହିଁକି ଶ୍ରୀକାନ୍ତ ଏମିତି ?

—ଏମିତି ଖାଲି ତାଙ୍କ ସହ ଅଥଚ ଅନ୍ୟ ସମସ୍ତଙ୍କ ସହ କେତେ ଆରାମରେ ସମୟ କଟାଇପାରୁଛନ୍ତି ସେ ସତରେ !

—କେଉଁ ଅଜ୍ଞାତ ଆକ୍ରୋଶର ବୋଝ ସେ ଲଦୁଛନ୍ତି ତାଙ୍କ ଉପରେ ?

ନିଜକୁ ଅଧିକାଂଶ ନ୍ୟୂନ ଲାଗେ ଅତସୀଙ୍କୁ ।

ଅଭାବ ତ କେଉଁଠି ନଥିଲା କେଉଁଥିରେ ! ଅତ୍ୟନ୍ତ ସୁନ୍ଦରୀ ନହେଲେ ମଧ୍ୟ ଆକର୍ଷଣୀୟା ଥିଲେ ଅତସୀ । ବୟସ ଅଳ୍ପ ଥିଲା— ଘର ସଜାଡ଼ି ରଖିବାକୁ ଇଚ୍ଛା ମଧ୍ୟ ଥିଲା । ଶ୍ରୀକାନ୍ତଙ୍କ ମନପସନ୍ଦ ଖାଇବା ରାନ୍ଧିବାପାଇଁ ତତ୍ପର ଥିଲେ ସେ । ନିଜକୁ ବିଭିନ୍ନ ରଙ୍ଗରେ ସଜାଇବାକୁ ଆଗ୍ରହ ବି ଥିଲା । ଆହୁରି ମଧ୍ୟ ଥିଲା ଟାଣ ଖରାବେଳର ଆମ୍ବଗଛ ତଳର ଛାଇ, ପୂର୍ଣ୍ଣିମାର ଗୋଲ୍ ଚକ୍‌ଚକ୍ ଜହ୍ନ ଓ ରୁପାଝରା ଜ୍ୟୋସ୍ନା, ଆଷାଢ଼ର ପ୍ରଥମ ଝିପିଝିପି ବର୍ଷାରେ ମତୁଆଲା ମାଟିଗନ୍ଧ । ଭଳିକିଭଳି ରଙ୍ଗିନ୍ ଫୁଲର ସମ୍ଭାର ଫଗୁଣରେ ! ଅଥଚ ଏସବୁର କୌଣସି ପ୍ରଭାବ ନଥିଲା ସେମାନଙ୍କ ଯୁଗ୍ମ ଜୀବନରେ !

ଚାକର ପିଲାଟିକୁ ଚା' ଓ ଜଳଖିଆ ଆଣିବାକୁ କହି, ଆଗେ ଆଗେ ବଗିଚାକୁ ବାଟ କଢ଼ାଇ ନେଉଥିଲେ ଅନୀତା । ବଗିଚାକୁ ବାହାରିବା ପୂର୍ବରୁ ଛୋଟିଆ ରୁମ୍‌ଟିଏ — ଗ୍ରୀଲ୍ ଲାଗିଛି ଆଗପଟେ— ତଳେ ଫିକାଲା କାର୍ପେଟ୍ ବିଛାହୋଇଛି— ଗୋଟିଏ କଣରେ ତାନ୍‌ପୁରାଟିଏ ରଖାହୋଇଛି— କନାର କଭର୍ ଲଗାହୋଇ— ଧୂଳି ମଳି ନାହିଁ, ପରିଚ୍ଛନ୍ନ, ସତେ ଯେମିତି କିଏ ସବୁଦିନେ ତାକୁ ବଜାଇ ଅଭ୍ୟାସ କରୁଛି !

''ଗୀତ କିଏ ବୋଲୁଛି କିଲୋ ! ତୋ ପୁଅ ତ କେବେଠାରୁ ମାଡ୍ରାସ୍ ଗଲାଣି ।'' ଅତସୀ ଆଗ୍ରହରେ ପଚାରିଲେ ।

''କିଏ ଆଉ ? ମୁଁଇ ପରା ଶିଖୁଥିଲି । ୟାଙ୍କର ଭାରି ଇଚ୍ଛାଥିଲା— କିଛି ଗୋଟିଏ ଶିଖ— ଗୋଟିଏ ବୋଲି ପୁଅ, ସେ ବଡ଼ ହୋଇଯିବ, କ'ଣ କରିବ ? ବସି ବସି ବୋର୍ ହେବ । ମୁଁ କହିଥିଲି ଗୀତ ଶିଖିବା କଥା । ପିଲାଦିନରୁ ଭାରି ଇଚ୍ଛା ଥିଲା ମୋର । କ'ଣ କରିଥା'ନ୍ତି, ତଳେ ଆହୁରି ଚାରିଜଣ ଭାଇ, ଭଉଣୀ— ବାପାଙ୍କର ଏକମାତ୍ର ରୋଜଗାର, ସେତେବେଳେ ତ ଦରମା ଯାହାଥିଲା, ତେଣୁ ଏତେ ମନ ଥାଇ ମଧ୍ୟ କେବେ

କହିପାରିନଥିଲି । ତୁ ଯେତେବେଳେ ଗୀତ ବୋଲୁଥିଲୁ ହଷ୍ଟେଲ୍‌ରେ, ଭାରି ଭଲ ଲାଗୁଥିଲା ମୋତେ ।'' ଟିକିଏ ରହିଗଲେ ଅନୀତା— ବୁଲିପଡ଼ି ଚାହିଁଲେ ଅତସୀଙ୍କୁ—ଶ୍ରୀକାନ୍ତ ଭାରି ଭଦ୍ରଲୋକ ବୋଲି ଶୁଣିଛି । ତୁ ତ ନିଶ୍ଚୟ ଏଇ ଅଭ୍ୟାସ ରଖିଥିବୁ । କି ଚମତ୍କାର ପେଣ୍ଟିଙ୍ଗ୍ ବି କରୁଥିଲୁ ତୁ ! ମୋର ଜନ୍ମଦିନରେ ସେଇ ଯେଉଁ ଆଦିବାସୀ ଝିଅଟି ଗାଧୋଉଥିବା ପେଣ୍ଟିଙ୍ଗ୍‌ଟି ଦେଇଥିଲୁ— ଆ, ଦେଖିବୁ, ଏବେ ବି ମୋ ବେଡ୍‌ରୁମ୍‌ରେ ଅଛି ।''

କିଏ ଯେମିତି ଅତସୀଙ୍କ ଭିତର ତାନ୍‌ପୁରାର କଳଙ୍କି ଲାଗିଯାଇଥିବା ତାରଟିକୁ ଛୁଇଁଦେଲା ! ମନ୍ଦଭାବରେ ଧ୍ୱନିତ ପ୍ରତିଧ୍ୱନିତ ହୋଇଉଠିଲା ସେ, ସର୍ବତୋଭାବରେ ।

ଅନୀତାଙ୍କର ଆଗ୍ରହୋଦ୍ଦୀପ୍ତ ମୁହଁକୁ ଚାହିଁ ଅତସୀ ଅନ୍ୟମନସ୍କା ହୋଇଯାଉଥିଲେ । ହଁ, ଗୀତ ବୋଲୁଥିଲେ ସେ । ତାଙ୍କର ଶିକ୍ଷକ ପିତା କୌଣସିମତେ ଘରେ ମାଷ୍ଟ୍ର ରଖି ଗୀତ ଶିଖାଉଥିଲେ ତାଙ୍କୁ — ଝିଅଟି ତାଙ୍କର ପ୍ରତିଭାମୟୀ ବୋଲି ଆନନ୍ଦରେ ସାଙ୍ଗସାଥୀଙ୍କୁ କହୁଥିଲେ । ବାହାଘରବେଳେ ତାନ୍‌ପୁରା କାଳେ ଯିବା ଆସିବାରେ ଭାଙ୍ଗିଯିବ ବୋଲି ଭାବି ସେ ଘରେ ରଖିଦେଇଯାଇଥିଲେ— ପରେ ଶ୍ରୀକାନ୍ତ କ୍ୱାର୍ଟର୍ ପାଇଲେ ଦେବେ । ପରେ ଧୀରେ ଧୀରେ ଖଟ, ଡାଇନିଂ ଟେବୁଲ୍, ସ୍କୁଟର୍, ଫ୍ରିଜ୍, ଟିଭି ଇତ୍ୟାଦି ଘରକୁ ଆସିଲା । ସେମାନେ କ୍ରମେ ସ୍ୱଚ୍ଛଳ ଓ ସ୍ୱଚ୍ଛନ୍ଦ ହୋଇଗଲେ— କିନ୍ତୁ ତାନ୍‌ପୁରାଟି ଆଉ ଘରୁ ଆସିଲା ନାହିଁ — ଆସିବାର ଆବଶ୍ୟକତା ଆଉ ଅନୁଭବ କରିନଥିଲେ ଅତସୀ । ଶ୍ରୀକାନ୍ତ ଗୀତଫିତ ଭଲ ପାଆନ୍ତି ନାହିଁ । ତାଙ୍କ ମତରେ ସ୍ତ୍ରୀଲୋକମାନଙ୍କର ଏସବୁ ଖାଲି ଅନ୍ୟ ପୁରୁଷଙ୍କୁ ଆକୃଷ୍ଟ କରିବାର ଫିସାଦି । ଘର ଚଳାଇବାରେ କ'ଣ ସମୟ ବଳାଇଯାଉଛି ଯେ ତାନ୍‌ପୁରା ଧରି ଗୀତ ଗାଇବ ! ପରେ ପରେ ଝିଅ ଓ ପୁଅ ଜନ୍ମହେଲେ— ପେଣ୍ଟିଙ୍ଗ୍ କରିବାର ସଉକ ମଧ୍ୟ ଚାଲିଯାଇଥିଲା ତାଙ୍କଠାରୁ ।

''କ'ଣ ଏମିତି ମୁହଁ ଶୁଖାଇଦେଲୁ ? ଧରିବୁ କି ତାନ୍‌ପୁରା— ଗୀତଟିଏ ଗାଇଲେ ଭଲଲାଗନ୍ତା ।'' ଅନୀତା ତାଙ୍କୁ ଚାହିଁ କହିଲେ ।

''ନାଇଁ ଥାଉ, ମୁଁ କ'ଣ ଆଉ ଗାଉଛି ।'' ଦୀର୍ଘଶ୍ୱାସ ପକାଇଲେ ଅତସୀ ।

''ଶ୍ରୀକାନ୍ତ ମନେପଡୁଛନ୍ତି ନା ?'' ତାଙ୍କୁ ଖୋଜିଲାଭଳି ଚାହିଁ କହିଲେ ଅନୀତା ।

''ହଁ ମନେପଡୁଛନ୍ତି କହିପାରୁ ।'' ମ୍ଳାନ ହସି ଆଗକୁ ବଢ଼ିଲେ ଅତସୀ ।

ଭୁବନେଶ୍ୱରରେ ଥିବା ତାଙ୍କର ଛୋଟିଆ ଜାଗାଟେ ବିକ୍ରି କରିବାକୁ ଆସିଛନ୍ତି ସିଏ । ବାପା ବାହାଘରବେଳେ ଦେଇଥିଲେ । ସେଇଟା ସେମିତି ରହିଥିଲା । ଯେଉଁ ଦଶ ପନ୍ଦର ଦିନର କାମ, ସେତିକି ଦିନ ଅନୀତାଙ୍କ ଘରେ ରହିପାରିବେ କି ବୋଲି ପଚାରିଥିଲେ ଅତସୀ । ଅନୀତା ଅତ୍ୟନ୍ତ ଆଗ୍ରହରେ ଆମନ୍ତ୍ରଣ କରିଥିଲେ ତାଙ୍କୁ ।

ସେମାନେ ଚା, ଜଳଖିଆ ଖାଇ ବଗିଚାରୁ ଉଠିବାବେଳକୁ ପ୍ରାୟ ଦଶଟା ବାଜିଯାଇଥିଲା । ଅନୀତାଙ୍କ ପଛେ ପଛେ ଡ୍ରଇଂରୁମ୍ ଭିତରକୁ ପଶିଲେ ଅତସୀ ।

"ଲାଗୁଛି ଯେମିତି ସମୟ ସେଇଠି ସେମିତି ସ୍ଥିର ହୋଇ ରହିଛି । ଇଏ ବସିଛନ୍ତି ଡ୍ରଇଂ ରୁମ୍‌ରେ ଏଇଠି, ଯୋଉ ଚେଆର୍‌ରେ ତୁ ବସିଛୁ । କହୁଛନ୍ତି ଯେମିତି, ଅନୁ, ଦୁଇକପ୍ ଚା' ମଗାଅ, ସାଙ୍ଗହୋଇ ପିଇବା– ତୁମେ ବସ ଏଠି, ବନାକୁ କୁହ ସେ ଆଣିଦେଉ ।" କହୁ କହୁ ଅତସୀଙ୍କ ସାମନା ସୋଫାରେ ବସିଲେ ଅନୀତା । "କେମିତି ମୁଁ ବଞ୍ଚିରହିଛି ସତରେ ! ସେଇ ଘରେ ! ତାଙ୍କୁ ଛାଡ଼ି ! ସବୁବେଳେ କହୁଥିଲେ, ଅନୁ, ଏତେ ସୁନ୍ଦର ଛୋଟ ନୀଡ଼ଟିଏ ଆମର– ଏଇଠି ଅନନ୍ତକାଳଯାଏଁ ଯେମିତି ରହିଥିବା ! ଅଥଚ କୁଆଡ଼େ ଗଲେ ସେ ? ଯଦି ଏମିତି ଏକୁଟିଆ ଛାଡ଼ି ଯିବାର ଥିଲା, ଏତେ ମାୟା, ଏତେ ଭଲପାଇବା କାହିଁକି ଅଜାଡ଼ି ଦେଉଥିଲେ ସେ ?" କାନ୍ଦ କାନ୍ଦ ହୋଇ ଆସୁଥିଲେ ଅନୀତା । "ଅତସୀ ଲୋ, ତୁ ଆସିଛୁ ବୋଲି କେତେ ଭଲଲାଗୁଛି । ନହେଲେ, ଇଏ ଘର ନୁହେଁ, ଜେଲ୍‌ଭଳି ଲାଗେ ମତେ ।"

ଜେଲ୍ !!

ଶ୍ରୀକାନ୍ତଙ୍କ ପ୍ରତି ଧୀରେ ଧୀରେ ଗୋଟିଏ ପ୍ରକାରର ଭୟ ଘାରିଦେଉଥିଲା ଅତସୀଙ୍କୁ । ତାଙ୍କର ଅଦ୍ଭୁତ ଉଦାସୀନତା ତାଙ୍କୁ ମୌନ କରିଦେଉଥିଲା କ୍ରମଶଃ । ତାଙ୍କୁ ଲାଗୁଥିଲା ଶ୍ରୀକାନ୍ତଙ୍କର ବଡ଼ ବଂଲୋରେ ସେ ଜଣେ ଅନିମନ୍ତ୍ରିତ ଅଧିବାସୀ । ତାଙ୍କୁ ଲାଗୁଥିଲା ଯେମିତି ତାଙ୍କ ପାଦ ବାନ୍ଧି ଗୋଟିଏ ବଡ଼ ଉଚ୍ଚା ସିଲିଂଥିବା କୋଠରି ଭିତରେ କିଏ ରଖିଦେଇଛି । କୋଠରିଟି ସବୁ ଦିଗରୁ ନିବୁଜ– ଖାଲି ଉପରୁ ଛୋଟିଆ ସ୍କାଇଲାଇଟ୍ ବାଟେ ଅଳ୍ପଟିକିଏ ଆଲୋକ ଆସୁଛି– ଯାହା ତାଙ୍କ ପାଖରେ ପହଞ୍ଚିପାରୁ ନାହିଁ । ପିଲା ଦୁଇଟି ଟିକିଏ ବଡ଼ହେବା ପରେ ସେମାନଙ୍କ ସହ ବ୍ୟସ୍ତରହି, ମିଶି, ଏଇ ଅଦ୍ଭୁତ ଉପଲବ୍‌ଧିରୁ ମଝିରେ ମଝିରେ ବାହାରିଯାଉଥିଲେ ସେ ।

ଅନୀତା ଏକୁଟିଆ । ଦୁଃଖ କରୁଛନ୍ତି, ଲୁହ ଗଡ଼ାଉଛନ୍ତି ସେଥିପାଇଁ । ଅଥଚ ଅତସୀ ତ ସବୁବେଳେ ଏକୁଟିଆ । ସେତେବେଳେ ଥିଲେ– ଏବେ ମଧ୍ୟ । ତଫାତ୍ ଏତିକି ଯେ ଏବେ ତାଙ୍କର ହାତପାଦ ଖୋଲା । ଅଥଚ ସେ ତାଙ୍କ ଘରଛାଡ଼ି ଏଇ ପ୍ରଥମ ମାତ୍ର ଦଶବର୍ଷ ମଧ୍ୟରେ ବାହାରିଛନ୍ତି ।

ଚମକିପଡ଼ିଲେ ଅତସୀ ଓ ଅନୀତା

କ'ଣ ଗୋଟାଏ ଶବ୍ଦ ହେଲା !

କ'ଣ ଗୋଟାଏ କାହା ହାତରୁ ପଡ଼ି ଭାଙ୍ଗିଗଲା ବୋଧହୁଏ– ଯେ ତା'ରି ଶବ୍ଦ । ଖାଲି ବା ଭର୍ତ୍ତି ବୋତଲଟେ ବୋଧହୁଏ ।

ଦୁଇଜଣଯାକ ଚେଆର୍ ଛାଡ଼ି ଉଠିବାର ଉପକ୍ରମ କଲେ, କିନ୍ତୁ ପୁଣି ବସିପଡ଼ିଲେ ଅତସୀ । ଚଞ୍ଚଳ ପଦକ୍ଷେପରେ ଭିତରକୁ ଚାଲିଗଲେ ଅନୀତା ।

ଏମିତି ଶବ୍ଦ !!

ସେଦିନ ବହୁତ ଡେରି ରାତି ହୋଇଯାଇଥିଲା । ବିଛଣାରେ କଡ଼ ଲେଉଟାଉଥିଲେ ଅତସୀ । ଚବିଶଘଣ୍ଟା ଭିତରର ଏଇ ସମୟତକ ତାଙ୍କପାଇଁ ଅସହ୍ୟ । ଦିନସାରାର କ୍ଲାନ୍ତି ଯେମିତି ଘାରିବସେ ତାଙ୍କୁ । ବିଛଣା ଛୁଉଁଛୁଉଁ ଆଖି ବୁଜିହୋଇଆସେ– ଚେତନାଶକ୍ତି ଲୋପହୋଇଆସେ.... । କିନ୍ତୁ ଚାବୁକ୍ ମାରିଲାପରି କିଛି ଗୋଟାଏ ନିର୍ଦ୍ଦେଶ ଯେମିତି ଚମକାଇଦିଏ ତାଙ୍କୁ । ତାଙ୍କୁ ଜାଗ୍ରତ ହୋଇ ପଡ଼ିରହିବାକୁ ପଡ଼ିବ, ଶ୍ରୀକାନ୍ତ ଆସି ଶୋଇବା ପର୍ଯ୍ୟନ୍ତ । ତା'ପରେ ସେ ତାଙ୍କର ଦେହକୁ ଦରକାର କରିପାରନ୍ତି ବା ନାହିଁ । ଯଦି ସେତକ ତାଙ୍କର ଦରକାର ଥାଏ, ତେବେ ଅର୍ଦ୍ଧଚେତନ ଭାବରେ ଅତସୀଙ୍କୁ ସହଯୋଗ କରିବାକୁ ପଡ଼ିବ ପ୍ରାୟ ଆହୁରି ଅଧଘଣ୍ଟା ପର୍ଯ୍ୟନ୍ତ । ପରେ ପରେ ଦୁଇ ମିନିଟ୍ ମଧ୍ୟରେ ଶ୍ରୀକାନ୍ତ ଶୋଇଯିବେ, ଅଥଚ ଅତସୀଙ୍କ ଆଖିରୁ ତନ୍ଦ୍ରା ଉଭେଇଯାଇଥିବ – ସିଲିଂକୁ ଚାହିଁ କେତେଥର ଦୀର୍ଘଶ୍ୱାସ ଛାଡ଼ିବେ ସିଏ– ମନ ଭିତରେ ନିଦ୍ରାପାଇଁ ମାଗୁଣି କରିଚାଲିଥିବେ ।

''ସିଗାରେଟ୍ କେଶ୍ ଓ ଦିଆସିଲି କୁଆଡ଼େ ଗଲା ? ମୁଁ ଅଧଘଣ୍ଟା ହେଲା ଖୋଜୁଛି ।'' ଶ୍ରୀକାନ୍ତ ପଶିଆସିଥିଲେ ।

''ସେଇଠି ନାହିଁ କି ଡ୍ରଇଂ ରୁମ୍‌ରେ ?''

''ସେଇଠି ଅଛି ଆଉ ମୁଁ କ'ଣ ଅନ୍ଧ ହୋଇଯାଇଛି ଯେ ପାଉନାହିଁ ? କେବେହେଲେ ଗୋଟିଏ ଜିନିଷ ଠିକଣା ହୋଇ ରହିବ ଏ ଘରେ !''

ଚୁପ୍‌କରି ସେମିତି ପଡ଼ିରହିଲେ ଅତସୀ । ''କ'ଣ ଉଠିକରି ଦେଉଛ ନା ନାହିଁ ?''

ଦେହ ଆଜି ଜମା ମାନୁ ନାହିଁ ଏଇ ନିର୍ଦ୍ଦେଶକୁ । କୌଣସିମତେ ଘୋଷାରିହୋଇ ନିଜକୁ ଉଠାଇଦେଲେ ଅତସୀ । ଡାଇନିଂ ଟେବୁଲ୍ ପାଖ ସେଲ୍‌ଫ୍‌ରେ ନାହିଁ । ଡ୍ରଇଂରୁମ୍‌ରେ କାଗଜପତ୍ର ଇତସ୍ତତଃ ହୋଇ ପଡ଼ିଛି । ଏଇଠି ବସି ଖାଇବା ଆଗରୁ ଦୁଇଘଣ୍ଟା ଧରି ଶ୍ରୀକାନ୍ତ ପିଉଥିଲେ । ଏପଟ ସେପଟ ଖୋଜିଗଲେ ଅତସୀ । ନା, ଏଠି ମଧ୍ୟ ନାହିଁ । କେଉଁଠି ରଖିଲେ କେଜାଣି ଶ୍ରୀକାନ୍ତ ? ସାଢ଼େ ଗୋଟାଏ ରାତିରେ ନିଦ ମଳମଳ ହୋଇ କେତେ ଖୋଜିବେ ସେ ! ବଡ଼ ବିରକ୍ତ ଲାଗୁଥାଏ ତାଙ୍କୁ । ଷ୍ଟୋର୍‌ରୁମ୍ ଚାବି ଖୋଲି ଭିତରେ ପଶିଲେ ସେ । ଲାଇଟ୍ ଜଳାଇଲା ଭିତରେ ସେ ପ୍ରାର୍ଥନା କରୁଥିଲେ – ଯେମିତି ହେଲେ ୱିଲ୍‌ସ ଫିଲ୍‌ଟର୍ ପ୍ୟାକେଟ୍‌ଟିଏ ଥାଉ– ଦିଆସିଲି ପ୍ୟାକେଟ୍ ତ ଥିବ ନିଶ୍ଚୟ । ପର ମୁହୂର୍ତ୍ତରେ ଲାଜମାଡ଼ିଲା ତାଙ୍କୁ । ରାତି ଅଧରେ ଠାକୁରଙ୍କୁ ସେ ସିଗାରେଟ୍ ପ୍ୟାକେଟ୍‌ଟିଏପାଇଁ ପ୍ରାର୍ଥନା କରୁଛନ୍ତି ! ''ଏଇ ନିଅ ତୁମର ସିଗାରେଟ୍ ଓ ଦିଆସିଲି । ଷ୍ଟୋର୍‌ରୁମ୍ ଖୋଲି ଖୋଜିକରି ଆଣିବାକୁ ପଡ଼ିଲା । ତୁମ ପ୍ୟାକେଟ୍‌ଟା ତ ମିଳିଲା ନାହିଁ ।'' ଶ୍ରୀକାନ୍ତଙ୍କ ଅଧୈର୍ଯ୍ୟ ମୁହଁକୁ ଚାହିଁ ଟିକିଏ କଢ଼େଇହୋଇ ଖଟର ତଳପଟକୁ ଟଣାହୋଇଥିବା ମଶାରି ଆଢ଼େଇ ଯାଉ ଯାଉ କ'ଣ ଗୋଟାଏ ହାତରେ

ବାଜିଗଲା ତାଙ୍କର— ବାଜିଗଲା ଓ ପଡ଼ିଗଲା— ତା ସହିତ ଏଇ ଶବ୍ଦ ! ବୋତଲ ଭାଙ୍ଗିବାର ଶବ୍ଦ ! ଗୋଟିଏ ପଲିଥିନ୍‌ରେ ଦୁଇ ତିନୋଟି ବୋତଲର ବୋଧହୁଏ— ସେ ଆଗରୁ ଦେଖିନଥିଲେ — ବହିଥାକ କଡ଼କୁ କରି ଅସନ୍ତୁଳିତ ଅବସ୍ଥାରେ ଥିଲା— ଶ୍ରୀକାନ୍ତ ନିଶ୍ଚୟ ଯା'କୁ ଏମିତି ରଖିଦେଇଥିଲେ ।

ବହିଯାଉଥିବା ରମ୍ ଓ ହ୍ୱିସ୍କିର ଧାରକୁ ଅବିଶ୍ୱାସ୍ୟ ଆଖିରେ ଚାହିଁଥିଲେ ସେ । ଶ୍ରୀକାନ୍ତଙ୍କ ମୁହଁକୁ ଚାହିଁବାକୁ ସାହସ ହେଉନଥିଲା ତାଙ୍କର ।

ଶ୍ରୀକାନ୍ତ ସିଗାରେଟ୍‌ଟିଏ ଲଗାଇଲେ । ପାଖରେ ଥିବା ଚେଆରରେ ବସିପଡ଼ି ସେଇ ଧାରକୁ ଚାହିଁରହିଲେ । ଅତସୀ ଅପେକ୍ଷା କରୁଥିଲେ କିଛି ଗୋଟାଏ ଘଟିବ ବୋଲି— କିନ୍ତୁ କ'ଣ ଘଟିପାରେ ଜାଣିପାରୁ ନଥିଲେ । ସିଗାରେଟ୍‌ଟି ସରିବା ପରେ ଶ୍ରୀକାନ୍ତ ଶାନ୍ତ ଭାବରେ ଉଠିଆସି ଗଡ଼ରେଜ୍ ଆଲମିରାକୁ ଖୋଲିଲେ ଓ ହାତପୂରାଇ ଚାରି ପାଞ୍ଚଟା ଶାଢ଼ି ହ୍ୟାଙ୍ଗର ଭିତରୁ ଟାଣିଆଣିଲେ । ପାନୀୟର ମିଶ୍ରିତ ଧାରା, ଯାହା ସେତେବେଳକୁ ଯଥେଷ୍ଟ ଦୈର୍ଘ୍ୟ ଓ ପ୍ରସ୍ଥ ବିଶିଷ୍ଟ ଆକାର ଧରିସାରିଥିଲା, ତା'ରି ପାଖରେ ବସିପଡ଼ିଲେ ସେ । ଶାଢ଼ିଗୁଡ଼ିକ ଓଲଟପାଲଟ କରି ସେଥିରେ ଭିଜାଇବାକୁ ଲାଗିଲେ । ଯା'ପରେ ସେଇମିତି ଶାନ୍ତ ଭାବରେ ଦିଆସିଲି ପ୍ୟାକେଟ୍ ଖୋଲି କାଠିଟିଏ ଜଳାଇଲେ..... ତଡ଼ିତ୍ ବେଗରେ ଅବସ୍ଥାଟି ବୁଝିପାରିଥିଲେ ଅତସୀ । ହେ ଭଗବାନ୍ ! କ'ଣ କରିବାକୁ ଯାଉଛନ୍ତି ଶ୍ରୀକାନ୍ତ ! ସେ ସଂଗେ ସଂଗେ ତାଙ୍କ ହାତ ଧରିପକାଇଲେ ଓ କୌଣସିମତେ ଦିଆସିଲିଟି ଲିଭାଇଦେଲେ । ବେଡ଼ରୁମ୍— ମଶାରି ପଡ଼ିଛି ! ଘରସାରା କାଗଜପତ୍ର, ଲୁଗାପଟା ଭର୍ତ୍ତି ! — ଶ୍ରୀକାନ୍ତ ହାତ ଛଡ଼ାଇଦେଇ ଆହୁରି କାଠିଟିଏ ଜଳାଇଲେ । ଏଥର ମଧ୍ୟ ପୂର୍ବପରି ଚେଷ୍ଟାକରି ତାଙ୍କୁ ଲିଭାଇଦେଲେ ଅତସୀ ।

ଶ୍ରୀକାନ୍ତଙ୍କର ଜିଦ୍ ବଢ଼ିଯାଉଥିଲା ଯେମିତି । ଦାନ୍ତ ଚିପି ସେ ଫିସ୍‌ଫିସ୍ କରି କହିଥିଲେ— ଯାଉ, ସବୁ ସରିଯାଉ ଏଇଠି ।

ଏଥର ଅତସୀ ତାଙ୍କ ହାତଧରିବାକୁ ଯିବାବେଳକୁ ଜଳନ୍ତା ଦିଆସିଲି କାଠିଟି ତାଙ୍କ ଉପରକୁ ପକାଇଲେ ଶ୍ରୀକାନ୍ତ । କାଠିଟିକୁ କୌଣସିମତେ ଲିଭାଇଦେଲେ ଅତସୀ । ପୁଣି ସେଇମିତି ଜଳାଇଲେ ଆଉ ଦୁଇଟି କାଠି ଶ୍ରୀକାନ୍ତ । ଅତସୀ କିଛି ବୁଝିପାରିବା ଅବସ୍ଥାରେ ନଥିଲେ । ପଳାଇଆସି ଛୁଆମାନଙ୍କ ବେଡ୍‌ରୁମ୍‌ରେ ପଶିଯାଇଥିଲେ ସେ ଓ ଭିତରୁ କବାଟ ବନ୍ଦକରିଦେଇଥିଲେ ।

ସବୁକିଛି ସରିଯାଇନଥିଲା ସେଇଠି । ଏଇ ଘଟଣାର ପାଞ୍ଚ ଛଅ ବର୍ଷ ପରେ ଏମିତି ହୋସ୍ ନଥିବା ଅବସ୍ଥାରେ ମାରୁତି ଗାଡ଼ି ଡ୍ରାଇଭ୍ କରୁ କରୁ ରାସ୍ତାକଡ଼ ଗଛରେ ଧକ୍‌କା ଲାଗିଥିଲା । ଡାକ୍ତରଖାନା ପର୍ଯ୍ୟନ୍ତ ମଧ୍ୟ ବଞ୍ଚାଇ ରଖାଯାଇ ପାରି ନଥିଲା ଶ୍ରୀକାନ୍ତଙ୍କୁ । ସେତେବେଳକୁ ଝିଅକୁ ଏଗାରବର୍ଷ ଓ ପୁଅକୁ ସାଢ଼େବାର ।

''ଦେଖନ୍ତୁ ଏମାନଙ୍କର ସାହସକୁ ! କିଛି ଦେଖିବେ ନାହିଁ । ସ୍କଚ୍ ବୋତଲ ଚାରିଟା– ଖାଲି ହେଲେ ବି– ଯାଙ୍କର ପ୍ରିୟ ବ୍ରାଣ୍ଡ ତ– ତାଙ୍କ ଟେବୁଲ୍‌ରେ ସଜାଇ ରଖିଥିଲି । ଇଏ ଡଷ୍ଟିଂ କରୁଛି, ସତେ ଯେମିତି ଭାରି ଗୋଟାଏ କାମ । ଧୂଳି ତ ଝାଡ଼ିବୁ, ସେଥିରେ ହାତ ମାରୁଥିଲୁ କାହିଁକି ?'' ଅସ୍ତବ୍ୟସ୍ତ ହୋଇ ପଶି ଆସୁ ଆସୁ କହିଥିଲେ ଅନୀତା ।

''ସ୍କଚ୍ ବୋତଲ୍ ଭାଙ୍ଗିଲାପରି ଲାଗୁଥିଲା ମୋତେ ।'' ଧୀର ଭାବରେ କହିଲେ ଅତସୀ ।

''ତୁ କେମିତି ଜାଣିଲୁ ? ତୋର ବି ଏମିତି ଭାଙ୍ଗିଛି କି ?''

''ଭଙ୍ଗୁର ଜିନିଷ – ଭାଙ୍ଗିବ ତ କେତେବେଳେ ହେଲେ– କାହା ଜୀବନରେ କେମିତି ଭାବରେ''– ସେମିତି ଧୀର ଭାବରେ କହିଲେ ଅତସୀ ।

''କ'ଣ ହେଲା ?''

''ହଁ, ଭାଙ୍ଗିଛି ଯେ– ଏମିତି ନୁହେଁ– ଆଉ ପ୍ରକାରେ''– ଅନୀତାକୁ ଚାହିଁ ମ୍ଲାନ ହସିଲେ ଅତସୀ ।

□□□

# ସହଯାତ୍ରା

ସୁନୟନା ଷ୍ଟେସନ୍‌ରେ ପହଞ୍ଚିଲା ବେଳକୁ ଟ୍ରେନ୍ ଛାଡ଼ିବାକୁ ମାତ୍ର ଦଶ ମିନିଟ୍ ବାକି ଥିଲା । ଚଞ୍ଚଳ ଚଞ୍ଚଳ ସେ ହଳଦିଆ କଳା ଟ୍ୟାକ୍‌ସିରୁ ଓହ୍ଲାଇପଡ଼ିଲା ନିଜ ଭି.ଆଇ.ପି. ସୁଟ୍‌କେଶ୍ ଓ ଛୋଟ ସାଇଡ୍ ବ୍ୟାଗ୍‌କୁ ଟାଣିଆଣି ତଳେ ଥୋଇଲା । ମୁହଁଟେକି କୁଲିଟିଏ ଡାକିଲା, ପର୍ସ ଖୋଲି ଟ୍ୟାକ୍‌ସି ଡ୍ରାଇଭର୍‌କୁ ଟଙ୍କା ଦେଲା ଓ କୁଲିକୁ ଶୀଘ୍ର ଯିବାକୁ କହିଲା । ବୋର୍ଡ଼ରେ ଫ୍ଲାସ୍ ହୋଇଛି– ଗୀତାଞ୍ଜଳି ଏକ୍‌ସପ୍ରେସ୍ ବାର ନମ୍ବର ପ୍ଲାଟ୍‌ଫର୍ମରୁ ଛାଡ଼ିବ ବୋଲି । ଅଧା ଚାଲିବା ଅଧା ଦୌଡ଼ିବା ଭଙ୍ଗୀରେ ଏ.ସି. କମ୍ପାର୍ଟମେଣ୍ଟ ଖୋଜି ଚାଲିଲା ସେ । ନିଜ ସିଟ୍‌ଟି ଖୋଜି, ବସିପଡ଼ିବା ପରେହିଁ ନିଃଶ୍ୱାସ ମାରିଲା ସୁନୟନା । ପ୍ଲାଟ୍‌ଫର୍ମରେ କିଏ ଚିହ୍ନାଜଣା ଅଛନ୍ତି କି ନାହିଁ ଦେଖିବାପାଇଁ ମଧ୍ୟ ତାକୁ ତର ନଥିଲା । ସେ ସିଟ୍‌ରେ ବସିପଡ଼ିବା ପରେପରେହିଁ ବୋଧହୁଏ ତା'ର ସହଯାତ୍ରିଣୀ ଚଢ଼ିଲେ । ଅଳ୍ପ-ବାଳ ରଖିଥିବା, ସାଲୱାର୍-କାମିଜ୍ ପିନ୍ଧିଥିବା ମଧ୍ୟମ ସ୍ୱାସ୍ଥ୍ୟର ପ୍ରୌଢ଼ାଜଣକ । ପଛେ ପଛେ ଖାକିପୋଷାକ ପିନ୍ଧାଦୁଇଜଣ ଅର୍ଡ଼ର୍ଲି ବୋଧହୁଏ । ପୁଲିସ୍ ୟୁନିଫର୍ମ ସେମାନେ ପିନ୍ଧିନାହାନ୍ତି, ରେଲୱେ କର୍ମଚାରୀ ହେବେ ବୋଧହୁଏ । ଦୁଇଟି ବକ୍‌ସ, ତିନୋଟି ସାଇଡ୍ ବ୍ୟାଗ୍ ଓ ଦଉଡ଼ିବନ୍ଧା ହୋଇଥିବା ଛୋଟବଡ଼ କାର୍ଟୁନ୍ କେତୋଟି । ପଛେ ପଛେ ସାଧା ପୋଷାକରେ ପତଳିଆ ଚେହେରାର ଲୋକଟିଏ ଧରିଛି ପଲିଥିନ୍‌ରେ ମୂଳ ବନ୍ଧାହୋଇଥିବା କେତେଗୁଡ଼ିଏ ଚାଇନିଜ୍ ପାମ୍‌ର ଚାରା । କର୍ତ୍ତୃତ୍ୱପୂର୍ଣ୍ଣ ସ୍ୱରରେ ଭଦ୍ରମହିଳା ଜଣକ ଛୋଟବଡ଼ ଗୁଡ଼ାଏ ଜିନିଷପତ୍ର ଏପଟ ସେପଟ ସିଟ୍‌ତଳେ ରଖିବାକୁ କହିଲେ । ବେଶ୍ କୋଳାହଳ କରି ସାଙ୍ଗରେ ଆସିଥିବା ଆଜ୍ଞାପାଳକମାନେ କାର୍ଟୁନ୍‌ଗୁଡ଼ିକୁ ଭର୍ତ୍ତି କରିବାକୁ ଲାଗିଲେ । ସୁନୟନାକୁ ଅଗତ୍ୟା ଗୋଡ଼ ଦୁଇଟି ସିଟ୍ ଉପରକୁ ଉଠାଇବାକୁ ପଡ଼ିଲା । ଚାଇନିଜ୍ ପାମ୍‌ଗୁଡ଼ିକ ସିଟ୍ ତଳେ ଧରିଲା ନାହିଁ । ଯେମିତି ରଖିଲେ ବି କିଛି ଡାଳପତ୍ର ବାହାରିଆସିଲା । ଗଲା ଆସିଲାବେଳେ କିଏ ମାଡ଼ିଦେଇପାରେ– ଭଦ୍ରମହିଳା ବଙ୍ଗଳା ଭାଷାରେ ଆଦେଶ ଦେଲେ– ସାହେବଙ୍କ ନାଆଁ କହି ୟା'କୁ ପ୍ୟାନ୍‌ଟ୍ରି କାର୍‌ରେ ରଖ ବା ଆଟେନ୍‌ଡାଣ୍ଟ୍‌ର ରୁମ୍‌ରେ ରଖ । ଏ ଭିତରେ ଠେଲାଠେଲି କରି ବାର ତେର ବର୍ଷର ଦୁଇଟି ବାଳକ ପଶିଲେ । ଦୁଇଜଣଯାକ ଚଷମା ପିନ୍ଧିଛନ୍ତି– ହାତରେ ଦୁଇଟା କମିକ୍‌ସ ବହି ବୋଧହୁଏ– ପାଟିର ଚଳନରୁ ଜଣାପଡୁଛି ଚୁଇଁଗମ୍ ଚୋବାଉଛନ୍ତି ।

'ହ୍ୱେଆର୍ ଡୁ ୱି ସିଟ୍ ?''

''ହିଅର୍ ବାବା'', ଭଦ୍ରମହିଳା ଜଣକ ସୁନୟନା ବସିଥିବା ସିଟ୍‌କୁ ଆଙ୍ଗୁଠି ଦେଖାଇଦେଲେ । ସାମାନ୍ୟ ନାକଟେକି ଚଷମା ଉଠାଇବା ଭଙ୍ଗୀରେ ପ୍ରଥମ ପିଲାଟି ସୁନୟନାକୁ ଟିକିଏ ଚାହିଁଲା ଓ ଦୂରେଇକରି ବସିପଡ଼ିଲା । ତା'ର ଭାଇ ଜଣକ ଡାହାଣପଟେ ତା' ପାଖରେ ବସିଗଲା । ଭଦ୍ରମହିଳା ସେପର୍ଯ୍ୟନ୍ତ ଠିଆହୋଇଥା'ନ୍ତି । ଅର୍ଡ଼ର୍ଲିମାନେ କାନ୍ଧ ଓ ମୁଣ୍ଡ ନୁଆଇଁ ସଲାମ୍ କରି ଓହ୍ଲାଇବାର ଉପକ୍ରମ କଲେ ।

''ହାଏ, ଶୁନିନ୍, ଚିଟି କୋ ମୁଝ୍‌ସେ ମିଲ୍‌ନେ ବୋଲୋଗେ ।''

ମୁଣ୍ଡ ହଲାଇ ସେମାନେ ଓହ୍ଲାଇଗଲେ । ସାମନା ତଳ ବର୍ଥଟିରେ ଭଦ୍ରମହିଳା ଜଣକ ବସିପଡ଼ିଲେ ।

ସୁନୟନାର ହଠାତ୍ ମନେପଡ଼ିଲା, ଟିକେଟ୍‌ଟିକୁ ଆଉଥରେ ଚେକ୍ କରିନେବା ଉଚିତ । ସେ ତରବର ହୋଇ ପର୍ସ ଖୋଲିଲା, ଟିକେଟ୍ ତା' ଜାଗାରେ ଠିକ୍ ଅଛି । କମ୍ପ୍ୟୁଟରାଇଜ୍‌ଡ ଟିକେଟ୍– ତେଣୁ ତା'ର ନାଆଁ ଲେଖା ହୋଇନାହିଁ; ଖାଲି କୋଚ ନମ୍ବର, ବର୍ଥ ନମ୍ବର ଓ ଏଫ୍ ଥାର୍ଟି । ମୁହଁ ପ୍ରସନ୍ନ ହୋଇଆସିଲା ତା'ର । ଏବେ ତା'ର ପରିଚୟ ଖାଲି ଏଫ୍ ଥାର୍ଟି– ମିସେସ୍ ସାମନ୍ତରାୟ ନୁହେଁ । ମାସେ ଆଗରୁ ଟିକେଟ୍ କରିଥିଲା ସେ । ନହେଲେ ଗୀତାଞ୍ଜଳି ଏକ୍ସପ୍ରେସ୍‌ରେ ଏ.ସି. ଟୁ-ଟାୟାରରେ ଇନ୍‌ସାଇଡ୍ ଲୋଅର୍ ବର୍ଥ ମିଳିବା ସହଜ କଥା ନୁହେଁ । ଯେବେଠାରୁ ସେ ଯିବାପାଇଁ ଠିକ୍ କଲାଣି, ବେଶ୍ କିଛିଦିନ ଭାବିବା ଚିନ୍ତିବା ପରେ, ପାଖଘରେ ପପୁନ୍‌କୁ ଛାଡ଼ି ଟ୍ୟାକ୍ସି ଧରି ସେ ନିଜେ ଷ୍ଟେସନ୍ ଆସିଥିଲା । ନା, କାହାରିକୁ ପଇସା ଦେଇ ଟିକେଟ୍ କାଟିହେବନାହିଁ । କାଉଣ୍ଟର୍ କିଉରେ ଠିଆହୋଇ ତାକୁ ଟିକେଟ କାଟିବାକୁ ପଡ଼ିଥିଲା ।

ସାଇଡ୍ ସିଟ୍‌ରେ ବୋଧହୁଏ ସାଉଥ୍ ଇଣ୍ଡିଆନ୍ ଦମ୍ପତି । ସାମାନ୍ୟ ଉତ୍ତୀର୍ଣ୍ଣ ବୟସର । ହୁଏତ ବମ୍ବେରେ ରହୁଥିବେ । କାଲ୍‌କାଟାରେ ଚାକିରି କରିଥିବା ପୁଅ-ବୋହୂ ବା ଝିଅ-ଜ୍ୱାଇଁଙ୍କ ପାଖକୁ ବୁଲିଆସିଥିଲେ । ସେମାନଙ୍କୁ ଟିକିଏ ନିରେଖି ଚାହିଁଲା ସୁନୟନା । ସେମାନଙ୍କ ବସିବା ଢଙ୍ଗରୁ ତାକୁ ଲାଗିଲା, ଯେମିତି ବର୍ଷବର୍ଷର ଅନ୍ତରଙ୍ଗ ଏକତ୍ର ଜୀବନ ସେମାନେ କଟାଇଛନ୍ତି– ପରସ୍ପରର ପରିପୂରକ ହୋଇ । ଏବେ ଉତ୍ତର-ବୟସରେ ମଧ୍ୟ ପରସ୍ପରର ସାହଚର୍ଯ୍ୟ ଅନିବାର୍ଯ୍ୟ ହୋଇପଡ଼ିଛି ସେମାନଙ୍କପାଇଁ । କେମିତି ଏତେଗୁଡ଼ାଏ ବର୍ଷ ଜୀବନର କାଟିଥିବେ ସେମାନେ ? ହସଖୁସିରେ, ଦୁଃଖ କଷ୍ଟରେ ନା ଏସବୁର ପେଣ୍ଡାଫେଣ୍ଟି ମିଶ୍ରଣରେ ? କେଜାଣି ? ଆଖିକୋଣରେ ସାମାନ୍ୟ କୌତୁକ ଫୁଟିଉଠିଲା ସୁନୟନାର ।

ଟ୍ରେନ୍ ସାମାନ୍ୟ ଦୋହଲିଲା ଓ ଚାଲିବାକୁ ଆରମ୍ଭ କଲା ଧୀରେ ଧୀରେ । ଭଦ୍ରଲୋକ ଜଣେ ପଶିଆସିଲେ ହାତରେ ଛୋଟ ଓଡ଼େଶୀ ଆଟାଚିଟେ ଧରି ଓ ସାମନା ସିଟ୍‌ରେ ବସିପଡ଼ିଲେ । ସେ ସାମାନ୍ୟ ଧଇଁସଇଁ ହେଉଥାଆନ୍ତି । ଇଏ ବୋଧହୁଏ ଏଇ ବ୍ଲକ୍‌ର

ଶେଷ ଯାତ୍ରୀ— ସୁନୟନା ଭାବିଲା, ନିଜ ପାଦ ଦୁଇଟି ଧୀରେ କରି ସିଟ୍ ଉପରକୁ ଟେକିଆଣିଲା ଓ ସାଇଡ୍ ବ୍ୟାଗ୍ ଖୋଲି ଫେମିନା ମ୍ୟାଗାଜିନ୍ କାଢ଼ିଲା । ଟ୍ରେନ୍‌ରେ ଗଲାବେଳେ ଏମିତି ଲାଇଟ୍ ମ୍ୟାଗାଜିନ୍ ପଢ଼ିବାକୁ ତାକୁ ଭଲଲାଗେ । ଟି.ଟି.ସି. ସେମାନଙ୍କ ପାଖକୁ ଆସିବାମାତ୍ରେ ସାଥୀରେ ଥିବା ଭଦ୍ରମହିଳା ତା'ର ଦୃଷ୍ଟି ଆକର୍ଷଣ କଲେ— ସେ ଅମୁକ ବଡ଼ ରେଲୱେ ଅଫିସରଙ୍କ ଧର୍ମପତ୍ନୀ ଓ ଖଡ଼ଗପୁର ପର୍ଯ୍ୟନ୍ତ ତାଙ୍କୁ ଯିବାକୁ ପଡୁଛି । ଟି.ଟି.ସି. ଏପରି ପ୍ରତ୍ୟୁତ୍ତର ଦେଲା— ସତେ ଯେପରି ସେ ଓ ଟ୍ରେନ୍ ଉଭୟ ଏପରି ଯାତ୍ରିଣୀଙ୍କୁ ଖଡ଼ଗପୁର ପର୍ଯ୍ୟନ୍ତ ସ୍ୱଚ୍ଛନ୍ଦ ଯାତ୍ରା କରିବାକୁ ଦେଇ କୃତାର୍ଥ ହୋଇଛନ୍ତି । ସୁନୟନାକୁ ଟିକିଏ ବିରକ୍ତ ଲାଗିଲା ଓ ନିଜ ଟିକେଟ୍ କାଢ଼ି ସେ ଭେରିଫିକେସନ୍ ପାଇଁ ବଢ଼ାଇଦେଲା ।

ଶାନ୍ତନୁ ଅଫିସ୍‌ରୁ କେବେ କେମିତି ଫୋନ୍ କରନ୍ତି— ପ୍ରାୟ କରନ୍ତି ନାହିଁ କହିଲେ ଚଳେ । ଆଜି ବି କରିନଥିବେ । ଯଦିବା ଫୋନ୍ କରିଥିବେ ଓ କେତେଥର ରିଙ୍ଗ୍ ହେଲାପରେ ସେ ଭାବିଥିବେ ସୁନୟନା ବାହାରକୁ କୁଆଡ଼େ ଯାଇଛି । ଯା'ଠାରୁ ଅଧିକ କିଛି ଭାବିବାକୁ ନା ତାଙ୍କର ସମୟ ଥିବ ନା ଥିବ ଇଚ୍ଛା । ସେ କେବେହେଲେ କଳ୍ପନା ମଧ୍ୟ କରିନଥିବେ, ସୁନୟନା ଏମିତି କାହାକୁ କିଛି ନ କହି ପୁଅକୁ ନିଜ ମା' ପାଖରେ ଛାଡ଼ି ଗୀତାଞ୍ଜଳି ଏକ୍ସପ୍ରେସ୍ ଧରି ବମ୍ବେ ଚାଲିଯାଇପାରେ । 'ଟିକିଏ ଡେରି ହେବ ଫେରିବାକୁ' କହି ସାମନା ଘର ମିସେସ୍ ଘୋଷଙ୍କୁ ଫ୍ଲାଟ୍‌ର ଚାବି ଦେଇଆସିଛି । ଫୁଲକୋବି, ଆଳୁକଷା ପରଟା ତିଆରି କରି ଦୁଇଟା କ୍ୟାସେରୋଲ୍‌ରେ ଡାଇନିଙ୍ଗ୍ ଟେବୁଲ୍ ଉପରେ ରଖିଦେଇଛି ଓ ଛୋଟ ହଟ୍‌କେଶ୍‌ରେ ସେଥିରୁ କିଛି ନେଇକରି ଆସିଛି । ଖାଲି ତାକୁ ଡରଲାଗୁଥିଲା, ସେ ଟ୍ରେନ୍‌ରେ ବସିବା ପର୍ଯ୍ୟନ୍ତ ଚିହ୍ନାଲୋକ କେହି ଭେଟ ହୋଇ ନ ଯାଆନ୍ତୁ । ତା'ପରେ ଟ୍ରେନ୍‌ରେ ଯିଏ ଦେଖିଲେ ଦେଖୁ— ସେ ଖାତିର୍ କରିନାହିଁ । ସବୁଦିନପରି ପ୍ରାୟ ସାଢ଼େସାତଟା ବେଳେ ଶାନ୍ତନୁ ଘରକୁ ଫେରିବେ, ହୁଏତ ଦୁଇ ତିନି ଥର କଲିଂବେଲ୍ ମାରିବେ, ଘର ଭିତରେ ତ ଲାଇଟ୍ ଜଳୁନଥିବ, ଅଧିକ ଧୈର୍ଯ୍ୟ ନ ଦେଖାଇ ସେ ମିସେସ୍ ଘୋଷଙ୍କୁ ଚାବି ମାଗିବେ । ମିସେସ ଘୋଷ ତାଙ୍କର ସରୁଓଠରେ ସରୁହସଟେ ବିଞ୍ଚିଦେଇ ଚାବି ବଢ଼ାଇଦେବେ ଓ ସୁନୟନା ଏପର୍ଯ୍ୟନ୍ତ ଫେରିନାହିଁ କି ବୋଲି ଅତିଶୟ ଅଦରକାରୀ ବିସ୍ମୟର ସହ ପଚାରିବେ । ଶାନ୍ତନୁ କବାଟ ଖୋଲି ଭିତରେ ପଶିବେ, ପ୍ୟାସେଜର ଲାଇଟ ଜଳାଇବେ, ଜୋତା ଖୋଲି ବଦଳାଇବେ । ତା'ପରେ ହୁଏତ ଡାଇନିଙ୍ଗ୍ ସ୍ପେସ୍‌ର ଲାଇଟ୍ ଜଳାଇବେ । ଶିଶୁକାଠର କଳା ଡାଇନିଂ ଟେବୁଲ୍ ଉପରେ ପେପରୱେଟ୍ ତଳେ ଫୋଲ୍ଡ ହୋଇ ରଖାଯାଇଥିବା ତା'ର ଚିଠିଟା ନିଶ୍ଚୟ ଆଖିକୁ ଦିଶିଯିବ । ଶେଷରେ ସେ ଦୁଇଧାଡ଼ି ଖାଲି ଲେଖିଦେଇ ଆସିଛି— ମୋତେ ଖୋଜିବ ନାହିଁ— ମୁଁ ସାତଦିନ ପରେ ଫେରିବି । କ'ଣ ପ୍ରତିକ୍ରିୟା

ହେବ ଶାନ୍ତନୁଙ୍କର ସେତକ ପଢ଼ି ? ସେ କ'ଣ ରାଗରେ ଅନ୍ଧ ହୋଇଯିବେ ନା ବ୍ୟସ୍ତ ବିକଳ ହୋଇଯିବେ ? ହୁଏତ ସାଙ୍ଗେ ସାଙ୍ଗେ ଚିହ୍ନାଜଣା ସମସ୍ତଙ୍କୁ ଫୋନ୍‌କରି ପକାଇବେ । ତା'ପରେ କଟକ, ଭୁବନେଶ୍ୱର ସବୁଆଡ଼େ... । ହୁଏତ ଏସବୁ ନ ଘଟିପାରେ । ସହଜେ ଅନ୍ୟମନସ୍କ ଶାନ୍ତନୁଙ୍କ ଆଖିରେ ଚିଠିଟା ପଡ଼ି ବି ନପାରେ । ସେ ହୁଏତ ବାଥ୍‌ରୁମ୍‌ରେ ଧୁଆଧୋଇ ହୋଇ ଆଜିର ନିଉଜ୍‌ପେପର ନେଇ ଟିଭି ସାମ୍ନାରେ ବସିପଡ଼ିବେ । ଘଣ୍ଟେ ଦେଢ଼ଘଣ୍ଟା ପରେ ତାଙ୍କୁ ଟିକିଏ ବୋଧହୋଇପାରେ, କୁଆଡ଼େ ଗଲା ସୁନୟନା, ଏପର୍ଯ୍ୟନ୍ତ ଫେରିନାହିଁ ! ଦଶଟାବେଳେ ସେ ଅଭ୍ୟାସ ଅନୁଯାୟୀ ଡାଇନିଂ ଟେବୁଲ୍‌ରେ ବସିବେ ଓ ଚିଠିଟା ପଢ଼ିବେ । ତା'ପରେ ସାଧାରଣ ଭାବରେ ଖାଇଦେଇ ଭାବିବେ ଦୁଇ ଚାରିଟା ଫୋନ୍ କରି ପଚାରିବା ଉଚିତ । ହୁଏତ ଭାବିବେ, ଏବେ କ୍ଲାନ୍ତି ଲାଗୁଛି, କାଲି କରିବି ବରଂ ଶୋଇଯିବା ଭଲ । ଟିକିଏ କୁତୁକୁତୁ ଲାଗିଲା ସୁନୟନାକୁ । ଠିକ୍ ହୋଇଛି । ଏମିତି କ'ଣ ସେ ଲେଖିଦେଇଛି ଯେ ନିଜ ଜୀବନର ଅଧାରୁ ଅଧିକ ସମୟ ଖାଲି ଶାନ୍ତନୁର ସେବା କରିବ ଓ ତା'ର ଘର ସଜାଡ଼ିବ ? ସକାଳୁ ଉଠି ତରବରରେ ଚା କପେ ପିଇ ତା' ପାଇଁ ବ୍ରେକ୍‌ଫାଷ୍ଟ ରେଡ଼ି କରିବା, ଲାଇଟ୍ ଲଞ୍ଚ୍ ପ୍ୟାକ୍ କରିବା, ବାଲକୋନିରୁ ତଳକୁ ଚାହିଁ ତା'କୁ 'ବାଏ' କରିବା, ତା'ର ଆସିବା ସମୟର ଅଳ୍ପ ପୂର୍ବରୁ ତରବର ହୋଇ ମୁହଁରେ ପାଉଡ଼ର କମ୍‌ପ୍ୟାକ୍ଟ୍ ବୁଲାଇନେଇ, ପାନିଆରେ ମୁଣ୍ଡ ଉପର ସାଉଁଳେଇଦେବା, ତା'କୁ କବାଟ ଖୋଲି ଜବରଦସ୍ତ ହସଟାଏ ଖେଳାଇବା, ଦରକାରୀ ଅଭିଯୋଗଟିଏ କରିବା, ରାତି ଖାଇବା ରେଡ଼ିକରି ଘଣ୍ଟାଏ ଧରି ପୁପୁନକୁ ଖୁଆଇ ସାରିବା ପରେ ଦୁଇଜଣ ବସି ଖାଇବା, ରୋଷାଇ ଘର ସଜାଡ଼ିସାରି ଲକ୍ କରିବା, କେବେ କେମିତି ଶାନ୍ତନୁର ଉଚ୍ଛୁଳା ସୋହାଗକୁ କୃତଜ୍ଞ ଆଞ୍ଜୁଳା ପାତି ଗ୍ରହଣକରିନେବା, ପରେ ଛଅ ସାତ ଘଣ୍ଟା ନିଘୋଡ଼ ନିଦରେ ଅଚେତନ ହେବା– ଏଇ ତ ତା'ର ସାଧାରଣ ନିତିଦିନିଆ ଜୀବନ । ଏଥିରେ କେବେ କେମିତି ବ୍ୟତିକ୍ରମ ଯେ ହୁଏ ନାହିଁ ସେକଥା ନୁହେଁ । କିନ୍ତୁ ଯେକୌଣସି ବ୍ୟତିକ୍ରମରୁ ମଧ ଏଇ ଗତାନୁଗତିକତାର ଛାପ ଲିଭିଯାଇ ପାରେ ନାହିଁ । କେବେ କେମିତି ସେ ଚାରି ପାଞ୍ଚଦିନପାଇଁ ବାପଘରକୁ ଯାଏ, କେବେ କେମିତି ଦୁଇତିନିଦିନପାଇଁ ନିନିଅପା ପାଖକୁ ଯାଏ, ବର୍ଷରେ ଥରେ ଦୁର୍ଗାପୂଜାରେ ସେମାନେ ଶାଶୁଘର ଭଞ୍ଜନଗର ସାତଦିନପାଇଁ ଯାଆନ୍ତି । ଦୁଇବର୍ଷରେ ଥରେ ଶାନ୍ତନୁ କେଉଁଠିକୁ ହେଲେ ତାକୁ ପାଞ୍ଚ-ଛଅଦିନପାଇଁ ବୁଲାଇନିଅନ୍ତି । ହେଲେ, ତାକୁ ଲାଗେ ସବୁଠାରେ ଯେମିତି ଧରାବନ୍ଧା ମପାଚୁପା ହିସାବନିକାଶର ବାସ୍ନା ଖେଳିବୁଲୁଥାଏ, ସେ ବାସ୍ନା ତା'କୁ ଛାଡ଼ିଯାଏନାହିଁ । କେବେଠାରୁ ଏମିତି ବଡ଼ ଛଟପଟ ଲାଗୁଛି ତା'କୁ । ତିନି ଫୁଟ୍‌ରେ ଚାରି ଫୁଟ ବାଲ୍‌କୋନିରୁ ତଳକୁ ଚାହିଁଥିଲା ବେଳେ, ଅସୁମାରି ଗାଡ଼ିମଟର ବଦଳରେ ସ୍ତବ୍ଧ ବିସ୍ତୀର୍ଣ୍ଣ ଘାସପଡ଼ିଆ

ଦିଶିଯାଇଛି ତା'କୁ । ତା'ପାଖରେ ଛୋଟ ସରୁ ନଈଟିଏ ବହିଯାଉଛି, ପଡ଼ିଆରେ କେତୋଟି ଗାଈ ଚରୁଛନ୍ତି । ଆଖିଆଗରେ ଗାଈଆଳ ପିଲାଟି ଦିଶୁନାହିଁ । ମୁଣ୍ଡ ଉପରେ କାହିଁ କେତେ ଉଚ୍ଚରେ ଖଣ୍ଡ ଖଣ୍ଡ ଧଳା ବଉଦଭରା ସଫା ନୀଳ ଆକାଶ । ଚାରିକଡ଼ରେ ଯେତେ ଇଚ୍ଛା ସେତେ ଘାସ, ମାଟି ବାସ୍ନାଭରା କଅଁଳ ପବନ । ଓଃ ! ଆଖିବୁଜି ହୋଇଯାଏ ତା'ର....

ଯିବ କି ନ ଯିବ ଅନେକ ଭାବିଛି ସେ । ପ୍ରଥମେ ତ ସାହସ ହେଉ ନଥିଲା— ଛାତି ଥରୁଥିଲା ତା'ର । ସବୁଠାରୁ ବେଶୀ ଡର ଥିଲା ଶାନ୍ତନୁଙ୍କୁ— କାଳେ ଭୁଲ୍ ବୁଝିବେ ସେ । ହୁଏତ ଭୁଲ୍ ବୁଝିବେ— କିନ୍ତୁ କାହିଁକି ? ତାଙ୍କର ଅଫିସିଆଲ୍ ଟୁର୍‌ରେ ତ ସେ ପ୍ରାୟ ଦୁଇ ତିନି ମାସରେ ଥରେ ପାଞ୍ଚ ଦିନରୁ ସାତ ଦିନ ବାହାରେ ରୁହନ୍ତି । ଅଫିସିଆଲ୍ କି ଆଉ କିଛି ବାହାନା ଇଏ, କେବେ ହେଲେ ପଚାରିନାହିଁ ସୁନୟନା । ଥରଟିଏ ବି କେବେ ସନ୍ଦେହ କରିନାହିଁ । ବରଂ ନୀରବରେ ସବୁକିଛି ଦରକାରୀ ଜିନିଷ ସଜାଡ଼ି ଦେଇଛି ଶାନ୍ତନୁଙ୍କର ଟାଇପିନ୍‌ଠାରୁ ଆରମ୍ଭ କରି ଗ୍ରେ-କଲର୍ ମ୍ୟାଚିଂ ମୋଜା ପର୍ଯ୍ୟନ୍ତ । ସେଥିରୁ କେବେ ଯଦି ଛୋଟିଆ କେଉଁ ଜିନିଷଟିଏ ସେ ଭୁଲିଯାଇଥାଏ, ଫେରିବା ପରେ ଶାନ୍ତନୁ ତା'କୁ ବାଧକରନ୍ତି ବିଶ୍ୱାସ କରିବାକୁ ଯେ ସେ ଗୋଟିଏ ନାହିଁ ନଥିବା ଭୁଲ୍ କରି ପକେଇଛି । ହଁ, କେବେ କେମିତି ସୁନୟନାପାଇଁ ଶାଢ଼ି ଖଣ୍ଡେ ବା ଭ୍ୟାନିଟି ବ୍ୟାଗ୍‌ଟିଏ ଆଣନ୍ତି ଓ ଖଟ ଉପରେ ଗର୍ବର ସହ ପକାଇଦିଅନ୍ତି— 'ଦେଖ, ସୁନ୍ଦର ହୋଇଚି ନା ?'

''ଓଃ ବହୁତ ସୁନ୍ଦର ହୋଇଛି' କହିବାକୁ ପଡ଼େ ସୁନୟନାକୁ । ବାସ୍ ୟା'ଠାରୁ ଅଧିକ କ'ଣ ପ୍ରାପ୍ୟ ହୋଇପାରେ ତା'ର ? ମୋଟା ଅଙ୍କର ଦରମା ପାଉଥିବା ସ୍ୱାମୀ, ଚାରିବର୍ଷର ଛୋଟପୁଅ, କଲିକତାରେ ସ୍ୱଚ୍ଛନ୍ଦରେ ଚଳିଯାଇପାରୁଥିବା ଗୋଟିଏ ଫ୍ଲାଟ୍, ମାରୁତି ଗାଡ଼ିଟିଏ ଓ ଚଳିବାପାଇଁ ଯାବତୀୟ ଦରକାରୀ ଆସବାବପତ୍ର । ତା'କୁ ବାଇଶିବର୍ଷ ହେବାଠାରୁ ତା' ଜୀବନର ସୀମା ସରହଦ ଏମିତି ଆଙ୍କିହୋଇଯାଇଛି । ସେ ଜାଣିଛି ଯେ ଏଇ ଚୌହଦୀ ଭିତରେ ସେ ବଞ୍ଚିଚାଲିବ, କିନ୍ତୁ ଆଉ ବଢ଼ିପାରିବନାହିଁ । ସେଇ ବାଇଶି ବର୍ଷରେହିଁ ଜୀବନର ତା'ର ବୌଦ୍ଧିକ ବୃଦ୍ଧି ବନ୍ଦହୋଇଯାଇଛି । ଇଏ ଏମିତି କିଛି ଆଶ୍ଚର୍ଯ୍ୟ କଥା ନୁହେଁ, କିଛି ଦୁଃଖର କଥା ମଧ ନୁହେଁ । କିନ୍ତୁ କାହିଁକି କେଜାଣି, ତା'ର ମାନୁନଥିବା ମନ ବାରମ୍ବାର ଚାଲିଯାଏ ସେଇ ସମୟକୁ, ଯେତେବେଳେ ଅସୁମାରି ସମ୍ଭାବନା ତା' ପାଖରେ ଲହଡ଼ି ଭାଙ୍ଗୁଥିଲେ । ସେ ଭାବିପାରୁ ନଥିଲା, କାହାକୁ ନିଜର କରିବ ଓ କାହାକୁ ପର । କାହିଁକି ଯେ ସେ ଭାବୁଥିଲା ଫୁଲଭର୍ତ୍ତି ମାର୍ଚ୍ଚ ମାସ, ଶ୍ରାବଣ ମାସର ଝରଝର ବା ଝିପିଝିପି ଲଗାଣ ବର୍ଷା, ନୀଳ-ଧଳା ଆକାଶକୁ ପ୍ରତିଫଳିତ କରୁଥିବା ଚକ୍‌ଚକ୍ ଶାରଦୀୟ ନଦୀ, ଡିସେମ୍ବର ସକାଳର କଅଁଳ ସୁଖକର ଖରା— ଏସବୁ ଯେମିତି ତା'ରି ନିର୍ଦ୍ଦେଶକୁ ଅପେକ୍ଷା କରିଛନ୍ତି— ଏଥିରୁ ସେ କୌଣସିଟିକୁ ବାଛିବ ନିଜ ଇଚ୍ଛାନୁସାରେ ।

ପିଲାଟିଦିନରୁହିଁ ସେ ଟିକିଏ ଅଲଗା ପ୍ରକାରର ଥିଲା— ଏକଥା ନୀନାଅପା ଓ ମା' ପ୍ରାୟ କୁହନ୍ତି । କୌଣସି ନିର୍ଦ୍ଦେଶକୁ ବିନାଯୁକ୍ତିରେ ମାନିନେଇପାରୁନଥିଲା ସେ । କିନ୍ତୁ ନୀନାଅପା କି ମା' ହୁଏତ ଜାଣନ୍ତି ନାହିଁ, ଏମିତି ବି ଅନେକ କଥା ଘଟିଛି ତା' ଜୀବନରେ, ଯେତେବେଳେ ସେ ଯୁକ୍ତି କରିବାକୁ ଭାଷା ପାଇନାହିଁ, ବରଂ ଅଭିମାନରେ ଅନ୍ତର୍ମୁଖୀ ହୋଇଯାଇଛି । ଏମିତି ଗୋଟିଏ ଦିନ ଥିଲା ତା'ର ଦ୍ୱାଦଶ ଜନ୍ମଦିନ । ସକାଳୁ ପୂଜା ସରିବା ପରେ ନୂଆ ଫ୍ରକ୍ ଓହ୍ଲାଇ ସ୍କୁଲ ୟୁନିଫର୍ମ ଆକାଶୀ କାମିଜ୍ ଓ ଧଳା ସାଲ୍‌ୱାର ପିନ୍ଧି, ଛାତିରେ ବହିଜାକି ସେ ପ୍ରାୟ ଅଧାଚଲା, ଅଧା-ଦୌଡ଼ା ଅବସ୍ଥାରେ ଥିଲାବେଳେହିଁ ମା' ପଛରୁ ଡାକିଲା –

''ଲଡୁ ଖାଇକି ଗଲୁ ତ ନୟନା ? ଶୁଣିଲୁ ଟିକେ ଯା'ଡ଼େ ।''

''କ'ଣ ହେଲା କହ । ଡେରିହୋଇଯାଉଛି ମୋର ।''

''ହେଇଟି ନେ' । ଏଇଟାକୁ ଏମିତି ପକା ।''

ମା' ଈଷତ୍ ମୋଟା ଧଳା କନାର ଓଢ଼ଣୀଟିଏ ବିଛେଇ ପକାଇଦେଲା ତା'ର ଛାତି ଉପରେ, ଯେମିତି ନୀନାଅପା ପକାଏ ।

''ଶୁଣ୍, ଏଇଟାକୁ ଏମିତି ପକାଇଥିବୁ ସବୁବେଳେ । ଜଗିରଖି ଯିବୁ, ଯେମିତି ଖସି ନପଡ଼େ । ଯଦି କାନ୍ଧରୁ କେତେବେଳେ ଖସିପଡ଼େ, ତୁ ନୂଆ ପକାଉଛୁ ତ, ଦେଖ, ଏମିତି କରି ପୁଣି ଟେକିଦେବୁ । ହଉ, ଏବେ ଯା ।''

ଚଟ୍‌କରି ମୁହଁ ବୁଲାଇ ନେଇଥିଲା ସୁନୟନା । ଏଇ ତା'ହେଲେ ଜନ୍ମଦିନର ଉପହାର । ଅଭିମାନ ଓ କୋହରେ କଣ୍ଠ ରୁନ୍ଧି ହୋଇଯାଇଥିଲା ତା'ର । ସମ୍ପର୍କହୀନ ଦୃଷ୍ଟିରେ ମଝିରେ ମଝିରେ ଚାହୁଁଥିଲା ଧଳା ଓଢ଼ଣୀଟିକୁ ସେ । ଏତେ ବଡ଼ ଚାଦରପରି ଧଳା ଓଢ଼ଣୀ, ଏଇଟାକୁ ପୁଣି ସବୁବେଳେ ଘୋଡ଼ାଇ ହୋଇ ରହିବାକୁ ହେବ— ଶୀତ ନ ହେଉଥିଲେ ମଧ୍ୟ । ଝାଳରେ ଯେମିତି ଭିତର ଭିଜିଯିବ । ଆଉ ନା ଡେଇଁପଡ଼ି ବରକୋଳି ତୋଳିହେବ ନା ଜୋର୍‌ରେ ଦୌଡ଼ି ଦୌଡ଼ି ବୋହୂଚୋରି ଖେଳିହେବ । ଯାହା ବି କଲେ ମଝିରେ ଅଡୁଆ ହେବ ଏଇ ଚାଦରପରି ଓଢ଼ଣୀଟା । କିନ୍ତୁ କାହିଁକି କେଜାଣି ମା' ସହ ଏ ନେଇ ସେ ଯୁକ୍ତି କରିପାରି ନଥିଲା । ଆଶ୍ଚର୍ଯ୍ୟଜନକ ଭାବରେ ଯୁକ୍ତିପ୍ରବଣତା ମଧ୍ୟ ତା'ର ଧୀରେ ଧୀରେ କମିଗଲା । ସେ ଅତି ଭଲ ପଢୁନଥିଲା । ତେଣୁ ଏମ୍.ଏ. ପଢ଼ିଲାବେଳେ ଯେତେବେଳେ ଦୂରସମ୍ପର୍କୀୟ ବୈଷ୍ଣବ ମାମୁଁ ଶାନ୍ତନୁ ସହ ବିବାହ ପ୍ରସ୍ତାବ ଆଣିଲେ, ତା'ର ବିଶେଷ କିଛି ମତ ଦେବାର ଅବକାଶ ନଥିଲା । ସୁଦର୍ଶନ ଶାନ୍ତନୁଙ୍କର ଯଥାର୍ଥ ବ୍ୟବହାର ଓ ଭଲ ଚାକିରି ବାପାଙ୍କୁ ଆକୃଷ୍ଟ କରିଥିଲା— ଶାଶୁଘରେ ଅଧିକ ଜଞ୍ଜାଳ ନଥିବା କଥା ମା'କୁ ଭାରି ଖୁସି କରିଥିଲା । ସେ ନିଜେ ମଧ୍ୟ ନିଷ୍ପତ୍ତି ନେଇପାରିନଥିଲା ଯେ ଆଉ ପଢ଼ି କିଛି ଚାକିରି କରିବ ନା

ବାହାହୋଇଯିବ । ଏଇ ଦ୍ୱନ୍ଦ ଭିତରେ ଓ ସମସ୍ତଙ୍କର ଆଗ୍ରହ ଦେଖି ସେ ସମ୍ମତି ଦେଇଥିଲା । ସେ ଯେ କିଛି ଭୁଲ୍ କରିପକାଇଲା, ସେପରି ନୁହେଁ । ବରଂ କହିବାକୁ ଗଲେ, ତା'ର ବିବାହ ଗୋଟିଏ ସଲଖ ଜୀବନଯାତ୍ରା । କିନ୍ତୁ ତାକୁ କାହିଁକି ଅନେକ ସମୟରେ ଲାଗେ ଯେ ଏଇ ପଥକୁ ସେ ଓ ଶାନ୍ତନୁ ମିଶି ତିଆରି କରିନାହାନ୍ତି, ବରଂ ଏମିତି ସଂକୀର୍ଣ୍ଣ ରାସ୍ତାଟିଏ ଥିଲା, ଯାହା ଉପରେ ପାଦ ପରେ ପାଦ ପକାଇ ସେମାନେ ଚାଲିଛନ୍ତି ।

ବଡ଼ ଷ୍ଟେସନଟିଏ ଆସିଲା । ବୋଧହୁଏ ଖଡ଼ଗପୁର । ଏଇ ଦୁଇଘଣ୍ଟା ମ୍ୟାଗାଜିନ୍ ଖୋଲି ନିଜ ଭାବନାରେ ବୁଡ଼ିଯାଇଛି ସେ । ମଧ୍ୟବୟସ୍କା ସ୍ତ୍ରୀଲୋକଜଣକ ନିଜର ଚଷମା ପିନ୍ଧା ଦୁଇ ପୁଅଙ୍କୁ ଧରି ଓହ୍ଲାଇବାର ଉପକ୍ରମ କଲେ । ଚଢ଼ିଲାବେଳପରି ଏବେ ମଧ୍ୟ ଦୁଇଜଣ ଲୋକ ଆସି ତାଙ୍କ କାଗଜ କାର୍ଟୁନଗୁଡ଼ିକ ଟଣାଓଟରା କରି ବାହାରକଲେ । ଭଦ୍ରମହିଳା ସେମାନଙ୍କୁ ପ୍ୟାଣ୍ଟ୍ରିରେ ଥିବା ନିଜ ଚାଇନିଜ୍ ପାମ୍ ଚାରାକଥା ମନେ ପକାଇଦେଲେ । ସେମାନେ ଓହ୍ଲାଇବା ସାଙ୍ଗେ ସାଙ୍ଗେ ଗୋଟିଏ ଦମ୍ପତି ଚଢ଼ିଲେ, ପୁରୁଷ ଜଣଙ୍କ କାଖରେ ପ୍ରାୟ ଦୁଇବର୍ଷର ପୁଅଟିଏ, ମହିଳାଜଣକ ଆଗରେ ଓ ପଛରେ କୁଲି ଦୁଇଟା ବାକ୍ସ ଓ ଗୋଟିଏ ବ୍ୟାଗ୍, ପାଣିଜାର୍ ଧରିଛି । ସୁନୟନାର ସାମ୍ନା ସିଟ୍‌ରେ ବସିଥିବା ଭଦ୍ରଲୋକଜଣକ ଉଠିପଡ଼ି ଆଡେଇ ହୋଇଯାଇ ସେମାନଙ୍କୁ ଭିତରକୁ ଯିବାକୁ ରାସ୍ତା ଦେଲେ । ସାମ୍ନା ଉପରତଳ ବର୍ଥ ଦୁଇଟି ସେମାନଙ୍କର ଥିଲା । ଏଇ ଷ୍ଟେସନରେ ଟିକିଏ ଓହ୍ଲାଇବ ବୋଲି ସୁନୟନା ଭାବୁଥିଲା, କିନ୍ତୁ ପୁଣି ସେଥିରୁ ନିବୃତ୍ତ ହେଲା । ଛୁଆଟି ବଡ଼ କଉତୁକିଆ ହୋଇଛି । ସୁନୟନା ଆଡ଼କୁ ଦୁଷ୍ଟାମିର ସହ କଣେଇ ଚାହିଁ ସେ ହସିଦେଲା । ସୁନୟନା ମୁରୁକିହସି ହାତ ବଢ଼ାଇଲା– ପିଲାଟି ଚଟ୍‌କରି ତା' ମା' ଛାତିରେ ମୁହଁ ଗୁଞ୍ଜିଦେଲା । ହଠାତ୍ ତା' ଭିତରେ କିଛି ଅଟକିଗଲା ପରି ଅନୁଭବ କଲା ସୁନୟନା । କ'ଣ କରୁଥିବ ଏବେ ପୁପୁନ୍ ? ତା'କୁ ମନେପକାଉଥିବ କି ? ମନେ ତ ନିଶ୍ଚୟ ପକାଉଥିବ । ବେଶୀ ବ୍ୟସ୍ତ ହେଉନଥିବ ତ ଆଉ ? ଅବଶ୍ୟ ଆଈ ପାଖରେ ସେ ଭାରି ଗେହ୍ଲାରେ ରହେ । କିନ୍ତୁ ଏତେଗୁଡ଼ାଏ ଦିନ କେବେ ଏକା ଛାଡ଼ିନାହିଁ ତାକୁ ସୁନୟନା । ଆଈ, ଅଜା, ମାମୁ ଓ ଚାକରବାକରମାନେ ତା'କୁ ପାଦରେ ଚଲାଇ ଦିଅନ୍ତି ନାହିଁ । ଯେବେ ଛୁଟିରେ ସେ ମାମୁ ଘରକୁ ଯାଏ, ଆସିଲା ପରେ କିଛିଦିନ ଭାରି ଜିଦ୍ କରେ । ଟିକେ ଟିକେ କଥାରେ କୁହେ– ମୁଁ ତୁମକୁ ଛାଡ଼ି ଆଈପାଖକୁ ଚାଲିଯିବି । ବଢ଼ୁଥିବା ପୁପୁନ୍‌ର ଦୁଷ୍ଟାମି ମନେପକାଇ ପ୍ରସନ୍ନ ସନ୍ତୋଷରେ ଝଲମଲ ହୋଇଉଠିଲା ସୁନୟନାର ମୁହଁ । ନିଜ ରକ୍ତମାଂସର ପିତୁଳା ପୁପୁନ୍‌କୁ ଦେଖି ଦେଖି ଅନେକ ସମୟରେ ଆଶ୍ଚର୍ଯ୍ୟ ହୁଏ ସୁନୟନା । ଛୁଆଟି ଯେତେବେଳେ ବଢ଼ୁଛି, ଏକ ଅଦ୍ଭୁତ ଆବେଗ ଓ ପ୍ରବଣତାରେ ଘାରିହୋଇଯାଉଛି ସୁନୟନା ।

ସାମ୍‌ନାରେ ବସିଥିବା ମା' ଜଣକ ଅପେକ୍ଷାକୃତ ବଡ଼ ବ୍ୟାଗ୍‌ରୁ ଗିନା ଚାମଚ ବାହାର କଲେ– ଗୋଟିଏ ପରିଷ୍କାର ଡିବାରୁ ଛୁଆର କିଛି ଖାଦ୍ୟ ସେଥିରେ କାଢ଼ିଲେ । ଅତି ଯତ୍ନରେ ସେଥିରୁ କିଛି ଚାମଚରେ ନେଇ ପିଲାଟିର ମୁହଁ ପାଖରେ ଟେକିଧରିଲେ । କିଛି ତିକ୍ତ-କଟୁ ଦ୍ରବ୍ୟ ଚାଖିଦେଲା ପରି ମୁହଁ ବିକୃତ କଲା ପିଲାଟି । ମା' ତା'ର ଆହୁରି ଆଗ୍ରହରେ ଅନୁରୋଧ କଲେ । ଛୁଆଟି ମୁହଁ ବୁଲାଇଦେଲା । ''ଏଇ ଦେଖ, ଦେଖୁଛୁ ବାହାରେ ଗଛ କେମିତି ଦୌଡୁଛି– ହୁଁ, ନେଇଯା' ଏତକ, ବାସ୍ ମୋ ସୁନାପୁଅଟା ପରା ।'' କହି ଚାମଚର ଖାଦ୍ୟତକ କୌଣସିମତେ ଛୁଆଟିର ମୁହଁରେ ଗୁଞ୍ଜିଦେଲେ ମା' ତା'ର । ପିଲାଟି ଥୁ ଥୁ କରି ତାଙ୍କ କୋଳରେ ଓ ତଳେ କାଢ଼ିପକାଇଲା ସେତକ । ''ଓଃ କ'ଣ କଲୁ ତୁ ?'' ବ୍ୟସ୍ତ ବିରକ୍ତ ହୋଇଗଲେ ମା' ତା'ର । ବାଆଁ ହାତରେ ଶାଢ଼ି ସଫା କରୁ କରୁ କୌଣସିମତେ ଭୁଲାଇ ସେ ଛୁଆଟି ମୁହଁରେ ଚାରି ପାଞ୍ଚ ଚାମଚ ଖାଦ୍ୟ ଗୁଞ୍ଜି ଦେବାରେ ସକ୍ଷମ ହେଲେ । ପ୍ରାୟ ଷଷ୍ଠଥର ଚାମଚ ବାହାର କରି ଆଣୁ ଆଣୁ ଭକ୍‌କରି ଖାଦ୍ୟତକ ବାନ୍ତି କରିଦେଲା ଛୁଆଟି, ନିଜ ସାର୍ଟ ଉପରେ । ଏଥର ଅତ୍ୟନ୍ତ ଦୁଃଖିତା ଓ ହତାଶ ଦିଶିଲେ ତା'ର ମାଆ ।

''ଓଃ, କେତେ ହଇରାଣ କରୁଛି ଇଏ ମୋତେ ।''

''ସେ ନଚାହୁଁଛି ଯଦି ତା'କୁ ଜବରଦସ୍ତି କାହିଁକି ଖୁଆଉଛ ?'' ବାପା ତା'ର କହିଲେ ।

''ସକାଳୁ କିଛି ଭଲକରି ଖାଇନି । ଏମିତି ହେଲେ ଦେହରେ କ'ଣ ଲାଗିବ ତା'ର ?'' ଅତି ନୈରାଶ୍ୟଜନକ ସ୍ୱରରେ ଉତ୍ତର ଦେଲେ ତା'ର ମାଆ ।

ପୁପୁନ୍ ଖିଆପିଆ ଠିକ୍ କରୁଥିବ ତ ? ମନକୁ ନ ପାଇଲେ ବା କିଛି କଥା ନେଇ ବିରକ୍ତ ହୋଇଗଲେ ସେ ଏମିତି ଥୁ ଥୁ କରି ମୁହଁରୁ ଖାଇବା କାଢ଼ିପକାଏ । ତା'କୁ ମନେପକାଇ ଦୁଃଖରେ ଯଦି ଖାଉନଥିବ ସେ ? ଅତ୍ୟନ୍ତ ଦୋଷୀ ଦୋଷୀ ମନେକଲା ସୁନୟନା ନିଜକୁ । ସାନ ପୁପୁନ୍‌କୁ ଏମିତି ଛାଡ଼ି ଚାଲିଆସିବା ଠିକ୍ ହେଲାନାହିଁ । ଛୁଆଟା ଭାରି ମନେ ମନେ ଖୋଜୁଥିବ ତା'କୁ । ଉଦାସ, ବିଷଣ୍ଣ ହୋଇଗଲା ସୁନୟନାର ମନ । ବନ୍ଦ ଝରକାର କାଚଦେଇ ବାହାରକୁ ଚାହିଁରହିଲା ସେ ।

ଜାମ୍‌ସେଦ୍‌ପୁରଠାରୁ ରାଉରକେଲା ପର୍ଯ୍ୟନ୍ତ ରେଳରାସ୍ତାର ଦୁଇପଟରେ ମଧ୍ୟମ ଧରଣର ଜଙ୍ଗଲ । ଅସ୍ତଗାମୀ ସୂର୍ଯ୍ୟର ଆଭା ଓ ଟ୍ରେନ୍ ଝରକାର ସବୁଜ କାଚ ଶାଳଗଛ ପତ୍ରସବୁକୁ କୋମଳ ଓ ଚକ୍‌ଚକ୍ ଦେଖାଉଥାଏ । ମଝିରେ ପତଳା ମଳିଚିଆ ପାଣିର ଝର । ଏଇ ରାସ୍ତାଦେଇ ଅନେକଦିନ ପରେ ସେ ଯାତ୍ରା କରୁଛି । ପ୍ରାୟ ପାଞ୍ଚବର୍ଷ ତଳେ, ବାହାଘର ପରେ ପରେ, ଗୋଆ ଯିବାପାଇଁ କଲିକତାରୁ ଏଇ ଟ୍ରେନ୍ ଧରି ସେମାନେ ବମ୍ବେ ଆସିଥିଲେ । ସେତେବେଳେ ବର୍ଷାଦିନ ଥିଲା । ଏଇ ଜଙ୍ଗଲର ଈଷତ୍‌ଘନ ଅଥଚ ଆକର୍ଷଣୀୟ ସବୁଜିମା ଖୁବ୍ ଆତ୍ମୀୟ ମନେହୋଇଥିଲା ତା'କୁ ।

ଟ୍ରେନ୍ ଏବେ ରାଉରକେଲାରେ ପହଞ୍ଚିବ । ଏଇଠି ଟିକିଏ ପ୍ଲାଟ୍‌ଫର୍ମ ଉପରକୁ ଓହ୍ଲାଇବ ସୁନୟନା । ସବୁ ସାଧାରଣ ଷ୍ଟେସନ ପରି ଏଇଟି–ଅଣ୍ଡାବାଲା, ଚା'ବାଲା, ବିସ୍କୁଟବାଲାଙ୍କର ପ୍ରତିଦ୍ୱନ୍ଦ୍ୱୀ ଆହ୍ୱାନ, ଛୋଟ ଛୋଟ ପିଲାମାନଙ୍କର ପତାଇଥିବା ବିକଳ ମାଗନ୍ତା ହାତ, ଉଦ୍ଦେଶ୍ୟହୀନ ଭାବରେ ବୁଲୁଥିବା ବା କୌଣସି ପାସେଞ୍ଜର ଟ୍ରେନ୍ ଉଦ୍ଦେଶ୍ୟରେ ମେଳା ମେଳା ହୋଇ ବସିଥିବା ସ୍ତ୍ରୀ-ପୁରୁଷ ଲୋକଙ୍କର ସମାହାର । ମ୍ୟାଗାଜିନ୍, ନିଉଜପେପର ନେଇ ଆଗପଟରୁ ଠେଲାଟିଏ ଆସୁଛି । କିଛି ଗୋଟାଏ କିଣିବ ବି ସୁନୟନା ? ଗୋଟାଏ ଦୁଇଟି ମ୍ୟାଗାଜିନ୍ ଖେଳାଉ ଖେଳାଉ ସେ ଲକ୍ଷ୍ୟ କଲା, ହଠାତ୍ ସାମ୍ନାର ଲୋକମାନେ ଚଞ୍ଚଳ ହୋଇପଡୁଛନ୍ତି । ବାଆଁ ପଟକୁ ବୁଲିଯାଇ ଦେଖିଲା, ଟ୍ରେନ୍ ଧୀରେ ଗଡ଼ିବାକୁ ଆରମ୍ଭ କରିଛି । ଏ ଭିତରେ ନିଜ କମ୍ପାର୍ଟମେଣ୍ଟଠାରୁ ସାମାନ୍ୟ ଦୂରକୁ ଚାଲିଆସିଛି ସେ । ହୁଏତ ଦୁଇଟା ବଗି ଟପିବାକୁ ପଡ଼ିବ । ସୁନୟନା ଦୌଡ଼ିବାକୁ ଆରମ୍ଭ କଲା । କାହାକୁ ଠେଲି, କାହାସହ ଧକ୍‌କା ଖାଇ ସେ ଦୌଡୁଥାଏ, ଜଣାନଥାଏ ତା'କୁ । ହେ ଭଗବାନ୍, ସେ କ'ଣ ଚଢ଼ିପାରିବ ନାହିଁ ଆଉ । କ'ଣ ହେବ ଏବେ ?

''କମ୍ ଅନ୍, ଗେଟ୍ ଅପ୍, କମ୍ ଅନ୍, ହୋଲ୍‌ଡ ମାଇଁ ହ୍ୟାଣ୍ଡ ।'' ନିଜ କମ୍ପାର୍ଟମେଣ୍ଟର ଦ୍ୱାରରୁ ବଢ଼ିଆସିଥିବା ଦୁଇଟି ହାତ ପ୍ରସାରିତ କରିଥିବା ବ୍ୟକ୍ତିଙ୍କ ମୁହଁକୁ ଚାହିଁବାର ଅବକାଶ ଆଉ ନଥିଲା ସୁନୟନାର । କୌଣସିମତେ ସେ ହାତ ଦୁଇଟିରେ ନିଜ ହାତ ରଖିଦେଇଛି ସେ । ଭିଡ଼ିହୋଇ ଶୂନ୍ୟରେ ଟ୍ରେନ୍‌ଭିତରକୁ ଉଠାହୋଇ ଆସିଲା ସୁନୟନା ।

''ହ୍ୱାଟ୍ ଉଡ୍ ହାଭ୍ ହ୍ୟାପେନ୍‌ଡ ନାଓ ? ୟୁ ଉଡ୍ ହାଭ୍ ମିସ୍‌ଡ ଦ ଟ୍ରେନ୍ । ଦିସ୍ ଇଜ ଶିଅର ନେଗ୍‌ଲିଜେନ୍‌ସ ।''

ଏଥର ମୁହଁ ଟେକି ଭଦ୍ରଲୋକଙ୍କୁ ଚାହିଁଲା ସୁନୟନା । ତା'ର ସାମନା ସିଟ୍‌ରେ କାଲ୍‌କାଟାରୁ ଉଠିଥିବା ଭଦ୍ରବ୍ୟକ୍ତି ଜଣକ ଇଏ । ହୁଏତ ସେ ତଳକୁ ଓହ୍ଲାଇବା ପରେ ସେ ମଧ୍ୟ ଓହ୍ଲାଇଛନ୍ତି ଓ କେମିତି ତାଙ୍କ ନଜର ସୁନୟନା ଉପରେ ପଡ଼ିଛି । ସୁନୟନା ନିଶ୍ଚୟ ବ୍ୟସ୍ତ ବିବ୍ରତ ଦିଶୁଥିଲା ।

''ଏନି ୱେ, ନେଭର୍ ମାଇଣ୍ଡ୍ । ଆଇ ଆମ୍ ବିକାଶ– ବିକାଶ ମୁଖାର୍ଜୀ ।'' ମୁହଁରେ ସାମାନ୍ୟ ଆନ୍ତରିକତା ଆଣି କହିଲେ ଭଦ୍ରଲୋକ ଜଣକ ।

ସାମାନ୍ୟ ଇତସ୍ତତଃ ହେଲା ସୁନୟନା ।

''ଆଇ ଆମ୍ ବନାନୀ ମହାନ୍ତି ।''

''ମହାନ୍ତି ? ୟୁ ମଷ୍ଟ ବି ଫ୍ରମ୍ ଓରିଶା ।''

''ୟେସ୍'' ।

''ହ୍ୱେୟାର୍ ଫ୍ରମ୍– କଟକ ୟା ଭୁବନେଶ୍ୱର ?''

''କଟକ ।'' ତାଙ୍କ ମୁହଁକୁ ସିଧା ଚାହିଁପାରୁନଥାଏ ସୁନୟନା । ଏମିତି ନୂଆ ନାଆଁଟିଏ ନିଜପାଇଁ ହଠାତ୍ ତା' ମୁହଁକୁ କେମିତି ଆସିଗଲା, ସେ ନିଜେଇ ବିସ୍ମିତ ହେଉଥାଏ ।

''ଏକ୍‌ସେଲେଣ୍ଟ । ମୁଁ କଟକରେ ପାଞ୍ଚବର୍ଷ ରହିଛି ।'' ଓଡ଼ିଆରେ କହିଲେ ସେ ।

ଚମକିପଡ଼ିଲା ସୁନୟନା— ଭଦ୍ରଲୋକ ଜଣକ ଆଉ ଅଧିକ କିଛି ପଚାରିବେ ନାହିଁ ତ ?

''ଦୋଳମୁଣ୍ଡାଇର ଚାଟ ଓ ଲସି ମୋର ଫେଭରିଟ୍ ଥିଲା ।'' ବିକାଶ ସହଜ ହେବାକୁ ଆରମ୍ଭକଲେ । ଅଧିକ କିଛି କହିବାକୁ ଡରମାଡୁଥାଏ ସୁନୟନାକୁ । ମୁହଁବୁଲାଇ ସେ ସିଟ୍ ଆଡ଼କୁ ଯିବାର ଉପକ୍ରମକଲା । ବିକାଶ ପୁସ୍‌ଡୋର ଠେଲି ଭଦ୍ରତାର ସହ କଡ଼େଇ ହୋଇ ଠିଆହେଲେ ।

ବସିଲା ପରେ ଆହୁରି ସହଜ ହୋଇ କଥା ଆରମ୍ଭ କଲେ ବିକାଶ । ସେ ଏଲ୍.ଏନ୍.ଟି. ରେ ଇଂଜିନିୟର । ବମ୍ବେରେ ପୋଷ୍ଟିଂ । କାଲ୍‌କାଟା ଅଫିସିଆଲ୍ ଟୁର୍‌ରେ ଆସିଥିଲେ । ରୁର୍‌କିରୁ ଇଂଜିନିୟରିଂ ପାସ୍ କରିଛନ୍ତି ସେ— ଇତ୍ୟାଦି । ସୁନୟନା ମଧ୍ୟ କିଛି କଥା କହିବାକୁ ଆରମ୍ଭକଲା, କିନ୍ତୁ ଜଗିରଖି । ବିକାଶଙ୍କ କଥାରେ ସୁନୟନା ତାସ୍ ଖେଳିବାକୁ ବସିଯାଇଥିଲା ତାଙ୍କ ସାଥିରେ । ଛୋଟ ଛୁଆଟିକୁ ନେଇ ବ୍ୟସ୍ତହେଉଥିବା ମାଆ ବାପାଙ୍କୁ ତାସ୍ ଖେଳିବାକୁ ଡାକିବାର ଅବକାଶ ନଥିଲା— ବରଂ ଛୁଆଟିର ବାପା କାଳେ ତାସ୍ ଟଣାଟଣି କରିବ ବୋଲି ତା'କୁ କୋଳରେ ଜାବୁଡ଼ିଧରିଥିଲେ । ଛୁଆଟିକୁ ମଝିରେ ମଝିରେ ଚାହିଁ ହସିଦେଉଥିଲା ସୁନୟନା । ପ୍ରାୟ ଦେଢ଼ଘଣ୍ଟା ତାସ୍‌ଖେଳି ଓ ଗପ ପରେ ବିକାଶ ଜଣାଇଲେ ଯେ ତାଙ୍କୁ ଭୋକଲାଗିଲାଣି, ସୁନୟନା ପାଖରେ କିଛି ଖାଦ୍ୟ ଅଛି ନା ସେ ପ୍ୟାଣ୍ଟ୍ରିରେ ଦେଖିବେ ? ଅଳ୍ପ କିଛି ଖାଇବା ଅଛି, ତା' ଦୁଇଜଣଙ୍କପାଇଁ ଯଥେଷ୍ଟ ହୋଇନପାରେ— ସାମାନ୍ୟ କୁଣ୍ଠାରସହ ଜଣାଇଲା ସୁନୟନା । ବିକାଶଙ୍କର ମିଲ୍ ଆସିଯିବା ମାତ୍ରେ ସେ ଖାଇବାକୁ ବାଧକଲେ । ''ପରଟା, କୋବିଆଳୁ -ୱାଭ୍—'' ଖୁସିର ଭାବ ଦେଖାଇଲେ ବିକାଶ—ସୁନୟନାକୁ ବାଢ଼ିକରି ଦେବାପାଇଁ ଅବକାଶ ଦେଲେ ନାହିଁ । ଗୋଟିଏ କ୍ୟାରିଅର୍‌ରୁ ନେଇ ଖାଇବାକୁ ଭାରି ମାଡ଼ିପଡୁଥାଏ ସୁନୟନାକୁ । ପାଖରେ ପୁଣି ଗୋଟିଏ ଦମ୍ପତି ବସିଛନ୍ତି ।

ଟ୍ରେନ୍ ବିଳାସପୁରରେ ପହଞ୍ଚିଲାବେଳକୁ ରାତି ଏଗାରଟା । ନିଦ ହୋଇନଥାଏ ସୁନୟନାକୁ । ବିକାଶ ଉଠି ଠିଆହେଲେ । ''ଏଇଟା ଗୋଟାଏ ଟେକ୍‌ନିକାଲ୍ ହଲ୍‌ଟ । ଟ୍ରେନ୍ କିଛି ସମୟ ରହିବ ଏଠି । ଚାଲନ୍ତୁ, ଓହ୍ଲାଇ ଚାଲିବା ଟିକିଏ ।''

ସୁନୟନା କିଛି ନ କହି ଉଠିପଡ଼ିଲା । ପ୍ଲାଟ୍‌ଫର୍ମରେ ହାଲ୍‌କା ଥଣ୍ଡାଲାଗୁଥାଏ । ରାତିର ନୀରବତା ଚିରି ପେଁ ପେଁ ବଜାଇ ପେଁକାଳିବାଲା ଟ୍ରେନ୍ କଡ଼େ କଡ଼େ ଚାଲୁଥାଏ । ଓଃ, କି ବିରକ୍ତିକର ! ଏତେ ରାତିରେ କିଏ କିଣିବ ଯା'କୁ ?

''ପୁପୁନ୍ ଯା'କୁ ଶୁଣି ଏବେ ବି ଉଠିପଡ଼ିଥା'ନ୍ତା ଓ ନେବ ବୋଲି ଜିଦିକରିଥା'ନ୍ତା ।'' କହିପକାଇଲା ସୁନୟନା । କଡ଼େଇକରି ଚାହିଁଲେ ତା'କୁ ବିକାଶ ।

''ପୁପୁନ୍ ମୋ ପୁଅ । ଚାରିବର୍ଷ ତା'କୁ । ବଡ଼ ଚଗଲା । ଆପଣଙ୍କର ?''

''କିଛି ନାହିଁ ।'' ହଠାତ୍ ଚୁପ୍ ହୋଇଗଲେ ବିକାଶ । ''ମୋ ସ୍ତ୍ରୀ ଡଲି ଚାରିବର୍ଷ ତଳୁ ଚାଲିଯାଇଛି ।'' ଟିକିଏ ଅଟକିଯାଇ କହିଲେ ସେ ।

''ଓଃ ! ଆଇ ଆମ୍ ସରି ।'' ସୁନୟନା ଦୁଃଖିତ ଓ ଚକିତହେଲା ।

''କିଚେନରେ ଗ୍ୟାସ୍ ସିଲିଣ୍ଡର ବର୍ଷ୍ଟ କରି....''

ଚୁପ୍ ହୋଇଗଲେ ଦୁଇଜଣ । ସାତ ଆଠ ଘଣ୍ଟା ଧରି ଜାଣିଥିବା ଏଇ ଲୋକଟି ପାଇଁ ସହାନୁଭୂତିରେ ଭରିଗଲା ମନ ତା'ର । ହୁଏତ ଲୋକଟି ତା'ର ସ୍ତ୍ରୀକୁ ଖୁବ୍ ଭଲ ପାଉଥିବ । ଚାରିବର୍ଷ ଧରି ହୁଏତ ଏକୁଟିଆ ଥିବ ।

''ବାହାଘର ବର୍ଷକ ପରେ ଏହା ଘଟିଲା । ଡଲି ସେତେବେଳକୁ କ୍ୟାରି କରୁଥିଲା ।'' ବିକାଶ ଦୀର୍ଘନିଃଶ୍ୱାସ ଛାଡ଼ିଲେ ।

ସେଇ ହାଲ୍‌କା-ଥଣ୍ଡା ନିସ୍ତବ୍ଧ ଅଧରାତି ଓ ଏକଦମ୍ କୋଳାହଳ ନଥିବା ପ୍ଲାଟ୍‌ଫର୍ମ ହଠାତ୍ ଆକର୍ଷଣହୀନ ମନେହେଲା ସୁନୟନାକୁ । ଏଇ ହ୍ୟାପି-ଗୋ-ଲକି ଜଣାପଡୁଥିବା ଲୋକଟିର ପୁଣି ଏତେ ଦୁଃଖ ଥାଇପାରେ !

''ଚାଲନ୍ତୁ ଫେରିଯିବା । ଟ୍ରେନ୍ ପୁଣି ଏଥର ଛାଡ଼ିଦେଇପାରେ ।'' ଆଉ ଚାଲିବାକୁ ମନକଲାନାହିଁ ସୁନୟନା ।

ସାରା ରାତି ସହଜରେ ନିଦ ହେଲାନାହିଁ ତାକୁ । ଲୋକଟିର ସ୍ତ୍ରୀ କ'ଣ ସତରେ ଆକ୍‌ସିଡେଣ୍ଟରେ ମରିଯାଇଥିବ ନା ଲୋକଟା ନିଜେ ତା'କୁ ପୋଡ଼ି ମାରିଦେଇଥିବ, ହୁଏତ ଯୌତୁକପାଇଁ ବା ଅନ୍ୟ କିଛିପାଇଁ । ସତରେ କ'ଣ ଲୋକଟି ଦୁଃଖ ପାଉଛି ତା'ର ସ୍ୱର୍ଗତା ସ୍ତ୍ରୀପାଇଁ ? ଚାରିବର୍ଷ ହେଲାଣି, ଆଉଥରେ ବାହାହୋଇ ନାହିଁ କାହିଁକି ? ବୟସରେ ତ ବୋଧହୁଏ ଶାନ୍ତନୁସାଙ୍ଗର ହେବ । ଏଇ ଲୋକଟି ସହିତ ମାତ୍ର ଆଠ ନଅ ଘଣ୍ଟାରେ ଏତେ ଆତ୍ମୀୟତା ଦେଖାଇବା କ'ଣ ଉଚିତ ହେଲା ତା'ପକ୍ଷେ ? ହଠାତ୍ ତା'ମନରେ ଖେଳିଗଲା.... ଯଦି ସେ ଶାନ୍ତନୁର ନହୋଇ ବିକାଶର ସ୍ତ୍ରୀ ହୋଇଥା'ନ୍ତା ! ଏଇ ଖୁସିବାସିଆ ଭଦ୍ରଲୋକଟି ସହ କେମିତି କଟିଥା'ନ୍ତା ତା' ଜୀବନ ? ଶାନ୍ତନୁ ପରି ଉଦାସ ନୀରବତା ସହ କ'ଣ ସେ ତା'ର କାମ କରୁଥା'ନ୍ତା, ଯେମିତିକି ସୁନୟନାର ଅସ୍ତିତ୍ୱ ନାହିଁ ନା ଟିକିଏ ଟିକିଏ କଥାରେ ଅସ୍ତବ୍ୟସ୍ତ କରୁଥା'ନ୍ତା ତା'କୁ ? ଥଟ୍ଟା ପରିହାସରେ ହସାଇ ଉଠାଇ ଦିଅନ୍ତା ନାହିଁ ?

ଟ୍ରେନ୍‌ର ଯାତ୍ରା ଗୋଟିଏ ଅଦ୍ଭୁତ ସମୟ । କେତେ ଅଳ୍ପ ସମୟ ଭିତରେ କି ଆବେଗରେ ସହଯାତ୍ରୀମାନେ ପରସ୍ପରକୁ ଆପଣାର ବିଗତ, ଆଗତ ଓ ବର୍ତ୍ତମାନକୁ

ବଖାଣି ବସନ୍ତି ସତରେ ! ଅନେକେ ତା' ମଧ୍ୟରୁ ଜାଣିଥା'ନ୍ତି ଯେ ହୁଏତ କେବେ ବି ସେମାନଙ୍କର ଭବିଷ୍ୟତରେ ଦେଖାହେବନାହିଁ । ଗୋଟିଏ ବଗିର ସୀମିତ ଇଲାକାରେ ସମୟାନୁବନ୍ଧ ହୋଇ ଏକତ୍ରିତ ହୋଇଯିବା ଏତେଗୁଡ଼ିଏ ଲୋକଙ୍କର ଏମିତି ସ୍ୱାଭାବିକତା କେମିତି ଆସେ ? ବୋଧହୁଏ ନିଜକୁ ଟିକିଏ ନିଃସଂକୋଚ ଖୋଲିଦେଇ ପାରିବାର ସୁଯୋଗ ମଣିଷ ଖୋଜୁଥାଏ ସବୁବେଳେ – ଟ୍ରେନ୍‌ର ଯାତ୍ରା ଶୃଙ୍ଖଳାହୀନ, ଦାୟିତ୍ୱହୀନ ଭାବରେ ଏଇ ସ୍ୱାଛନ୍ଦ୍ୟ ଦେଇଥାଏ ।

ନାଗପୁର୍ ଷ୍ଟେସନ୍ । ସକାଳୁ ସକାଳୁ ସୁନୟନା ଉଠିବାକୁ ଚାହୁଁ ନଥିଲା । ପ୍ରତିଦିନର ନିୟମାନୁବର୍ତ୍ତିତାରୁ ଆଜିର ସକାଳ ଅଲଗା ।

''ଚା ଆପଣଙ୍କ ପାଇଁ ।''

କିଏ ଜଣେ ସକାଳୁ ସକାଳୁ ଚା ଆଣି ହାତରେ ଧରାଇଦେବା ଏକ ଅଲଗା ଅନୁଭୂତି – ମାଟି ସରାରେ ହେଉ ପଛେ ।

''ଶାଲ ଘୋଡ଼ାଇହୁଅନ୍ତୁ, ବେଶ୍ ଥଣ୍ଡା ପଡୁଛି ।''

ପାଖରେ ଚଉତାହୋଇ ରହିଥିବା ଚାଦରଟି ଉଠାଇ ବଢ଼ାଇଦେଲେ ତାକୁ ବିକାଶ । ହାତ ବଢ଼ାଇ ଧରିନେଲା ସୁନୟନା ଓ ଦେହରେ ବେଢ଼ାଇ ଆଣିଲା । ସାମାନ୍ୟ ସଂକୋଚ ମଧ୍ୟ ଆସିଲା ତା'ର – ପାଖଲୋକ କ'ଣ ଭାବୁଥିବେ ?

ଆହୁରି ଷୋଳଘଣ୍ଟା ତା'ର କେମିତି ଯେ କଟିଗଲା, ସୁନୟନା ଜାଣିପାରିନାହିଁ – ହସ, ଖୁସି, ଜୋକ୍, ମଜାଗପ, ତାସ୍ ଖେଳ ଓ ଏକାଠି ଲଞ୍ଚ କରିବା ଭିତରେ । ଏଥର ସୁନୟନା ସହଜ ହୋଇଯାଇଥିଲା – ସହଯାତ୍ରୀ ଦମ୍ପତିଙ୍କ କଥା ଆଉ ଭାବୁ ନଥିଲା ।

''ଭି.ଟି.ରେ ଓହ୍ଲାଇବେ ତ ? କିଏ ରିସିଭ୍ କରିବାକୁ ଆସିବେ ନା ମୁଁ ଡ୍ରପ୍ କରିଦେବି ?''

''ନା, ନା, ମୋର ଅତି କ୍ଲୋଜ୍ ଫ୍ରେଣ୍ଡ୍ ସେଇଠି ରହେ । ସେ ଓ ତା'ର ହଜ୍‌ବ୍ୟାଣ୍ଡ ନିଶ୍ଚୟ ଆସିବେ ।''

''ଓକେ ।''

ଷ୍ଟେସନ୍‌ର ହଇଚଇରେ ତା'ର ବକ୍ସ ଓ ହ୍ୟାଣ୍ଡବ୍ୟାଗ୍‌ଟିକୁ ତଳକୁ ଓହ୍ଲାଇ ଆଣିଲେ ବିକାଶ । ସୁନୟନା ଖୋଜିଲା ଖୋଜିଲା ଆଖିରେ ଜନସମୁଦ୍ରକୁ ଚାହିଁଥିଲା । ସତରେ ଯଦି ରଂଜନା ଆସିନଥିବ ତା'କୁ ନେବାପାଇଁ କ'ଣ କରିବ ସେ, ଏତେ ବଡ଼ ମହାନଗରୀରେ ? ପର ମୁହୂର୍ତ୍ତରେ କିନ୍ତୁ ତା'ର ସେ ଭୟ ଆଉ ନଥିଲା । ବିକାଶ ତ ଅଛନ୍ତି – ତା' ଛଡ଼ା ରଂଜନାର ଠିକଣା ବି ଲେଖିରଖିଛି ସେ । କିନ୍ତୁ ତାଙ୍କ ସାଙ୍ଗେ କୁଆଡ଼େ ଯିବ ସେ ? ଭଦ୍ରଲୋକ କିଏ ନା କିଏ, ସତ କହୁଛନ୍ତି କି ମିଛ କିଏ ଜାଣେ ? ନା, ନା, ଅଜଣା ଅଶୁଣା ମଣିଷ ସହ ସେ କଦାପି ଯିବ ନାହିଁ କେବେ – ବରଂ ରଂଜନାକୁ

ଫୋନ୍ କରିବ । ଆରେ ଏଇତ ରଂଜନା – ଦୂରରୁ ଦେଖାଯାଉଛି । ସୁନୟନାର ମୁହଁ ଉଜ୍ଜ୍ୱଳ ହୋଇଉଠିଲା ।

''ଶାନ୍ତନୁକୁ ହ୍ୟାଲୋ କହିଦେବେ ।''

ଚମକିପଡ଼ିଲା ସୁନୟନା– ମୁହଁରୁ ରକ୍ତ ଶୁଖିଗଲା ତା'ର । ବିକାଶ ଲକ୍ଷ୍ୟ କରି ପାରିଲେ ଯେମିତି ।

''ଶାନ୍ତନୁ ମୋ ସହ ବର୍ଷେ ଟ୍ରେନିଂ କରିଛି– ମୁଁ ହିନ୍ଦୁସ୍ଥାନ୍ ଲିଭର୍‌ରେ ଜଏନ୍ କରିଥିଲି ପ୍ରଥମେ । ଆପଣଙ୍କ ବକ୍‌ସ ଉପରେ ତା'ର ନାଆଁ ଓ ଆଡ୍ରେସ ଲେଖାହୋଇଚି । ହି ଇଜ୍ ଏ ନାଇସ୍ ବୟ ।''

ସୁନୟନା କିଛି ଶୁଣିନପାରିଲା ପରି ବିକାଶର ମୁହଁକୁ ଚାହିଁଥିଲା । ଆଶ୍ୱସ୍ତ କଲା ପରି କ୍ଷୀଣ ହସିଲେ ବିକାଶ ।

''ଆପଣଙ୍କ ବାନ୍ଧବୀ ବୋଧହୁଏ ଆସିଗଲେ । ମୁଁ ଚାଲିଲି– ଦରକାର ପଡ଼ିଲେ ମନେପକାଇବେ– ଏଇ ମୋର କାର୍ଡ଼ ।'' ମୁହୂର୍ତ୍ତେ ଚୁପ୍‌ରହି ପୁଣି କହିଲେ ବିକାଶ, ''କିଛି ମନେକରିବେନାହିଁ । ଶାନ୍ତନୁ ସହ ମୋର କଥାବାର୍ତ୍ତା ହେବାର ନାହିଁ – ଅନେକ ଦିନୁ ଆମେ ପରସ୍ପରର ଖବର ରଖିନାହୁଁ ।'' ମୁହଁ ଫେରାଇନେଇ ବିକାଶ ଚାଲିଯାଉଥିଲେ ।

ରଂଜନା ଏଇ ଭିତରେ ପହଞ୍ଚିଯାଇ ତା'କୁ କୁଣ୍ଢାଇଧରିଛି । କ'ଣ କ'ଣ ବୋଧହୁଏ ପଚାରୁଛି । ସୁନୟନା କିନ୍ତୁ ବିକାଶଙ୍କର ଯିବାରାସ୍ତାକୁ ଚାହିଁଥିଲା । ବିକାଶ ଚାହାଁନ୍ତେ କି ଥରେ ମୁହଁଫେରାଇ ! ସୁନୟନା ହାତ ଠାରି ତାଙ୍କୁ ଡାକନ୍ତା, କିଛି କଥା ତାଙ୍କୁ ମନେପକାଇଦିଅନ୍ତା ଓ ଦୁଇଜଣଯାକ ହସି ହସି ବେଦମ ହୋଇଯାଆନ୍ତେ । ନାଁ, ବିକାଶ ହଜିଗଲେଣି ଜନଗହଳି ଭିତରେ, ଆଉ ଦିଶୁନାହାନ୍ତି ।

ରଂଜନାର କାନ୍ଧ ଉପରେ ମୁହଁରଖି ସୁନୟନା ତା'ର ଅପର୍ଯ୍ୟାପ୍ତ ପ୍ରଶ୍ନର ଉତ୍ତର ଦେବାପାଇଁ ନିଜକୁ ପ୍ରସ୍ତୁତ କରୁଥିଲା ।

□□□

# ମାଧମ

କଲିଂବେଲ୍ ବାଜୁଛି ବୋଧହୁଏ । ଛଅଟା ବାଜିବଣି, ଦୁଧବାଲା ଆସିଥିବ । ଅଳସ ଲାଗୁଥିଲେ ବି ଉଠିବାର ଉପକ୍ରମ କଲା ପଲ୍ଲବୀ । ''ଥାଉ, ଥାଉ ତୁମେ ଶୁଅ ।''– ହାତ ବଢ଼ାଇ ଅଟକାଇଦେଲେ ତାକୁ ପ୍ରଭାସ– ''ମୁଁ ଦେଖୁଛି କିଏ ।''

ହଠାତ୍ ଟିକିଏ ଅବାକ୍ ଲାଗିଲା ପଲ୍ଲବୀକୁ, କିନ୍ତୁ ପରମୁହୂର୍ତ୍ତରେ ଚେନାଏ ହସ ଖେଳିଗଲା ମୁହଁରେ । ଗତ କାଲି ରିପୋର୍ଟ ଆସିଛି ତା'ର ପ୍ରେଗ୍‌ନାନ୍‌ସିର । ପ୍ରଭାସ ଆଜିଠାରୁ ଯତ୍ନଶୀଳ ହେବାକୁ ଆରମ୍ଭକଲେଣି ।

''ମହାରାଣୀଙ୍କପାଇଁ କପେ ଚା' କରିବି କି ?''

ପୁଣି ମୁରୁକି ହସିଲା ପଲ୍ଲବୀ ।

''ମହାରାଜାଙ୍କର ତ ଆଜି ନାହିଁ ନଥିବା ଦୟା !'' ସେ ଉଠିବାର ଉପକ୍ରମ କଲା । ''ଯାଅ, ମୁହଁ ହାତ ଧୁଅ ତୁମେ, ମୁଁ ଚା' କରୁଛି ।''

''ନାଇଁ, ନାଇଁ, ତୁମେ ଆଉଟିକେ ଆରାମ କର । ଦେଖ ନା ମୋ ହାତରେ ତିଆରି ହୋଇପାରୁଛି କି ନାହିଁ ।''

''ମୋର ତ ଅଭ୍ୟାସ ଏତିକିବେଳେ ଉଠିବା, ଆଉ ଶୋଇବା ହେଇପାରିବ ନାହିଁ ଏବେ । ବରଂ ତୁମେ ତୁମ ସକାଳର କାମ ସାର ।'' ଉଠିପଡ଼ି ମୁହଁ ଧୋଇବାକୁ ବାଥ୍‌ରୁମ୍‌କୁ ଗଲା ପଲ୍ଲବୀ ।

ପ୍ରଭାସ ନଅଟାବେଳକୁ ଅଫିସ୍ ବାହାରିଯାଆନ୍ତି ଜଳଖିଆ ଖାଇ ଓ ଆଉ କିଛି ଲଞ୍ଚ୍ ବକ୍‌ସରେ ନେଇଯାଆନ୍ତି । ଅଫିସ୍ ବେଶ୍ ଦୂର, ଲଞ୍ଚ୍ ଟାଇମ୍ ଘଣ୍ଟାଏ ଭିତରେ ଆସି ଖାଇଯିବା କ୍ଳାନ୍ତିକର । ଆଜି କିନ୍ତୁ ପ୍ରଭାସ ନିଜଆଡୁ କହିଲେ– ''ଶୁଣ, ତୁମକୁ ଏକୁଟିଆ ଭଲଲାଗୁନଥିବ । ମୁଁ ବେଳେବେଳେ ଏଥର ଲଞ୍ଚ୍‌ପାଇଁ ଆସିପାରେ । ଅସୁବିଧା ଟିକିଏ ପଡ଼ିବ ହୁଏତ ।''

''ନାଇଁ ନାଇଁ– ଆରେ, ଏବେଠୁ ଏତେ ବ୍ୟସ୍ତ କାହିଁକି ହୋଇପଡୁଛ ? କିଛି ଦରକାର ନାହିଁ । ଏକୁଟିଆ ଦିନସାରା ତ ମୁଁ ଦୁଇବର୍ଷ ହେଲା ରହିଲିଣି । ଅଭ୍ୟାସରେ ପଡ଼ିଗଲାଣି । ଯାଅ ଏଥର, ଡେରିହୋଇଯିବ ।''

ପ୍ରଭାସ ସ୍କୁଟର ଷ୍ଟାର୍ଟ କରି ବାହାରିଗଲା ପରେ ପଲ୍ଲବୀ ତା'ର ଘର ଆଗର ଅତି ଛୋଟ ବଗିଚାକୁ ବାହାରିଆସେ । ଘଣ୍ଟାଟିଏ ସେ ମାଟିକୁଣ୍ଡରେ ଲାଗିଥିବା ଗୋଲାପ ଗଛ, କ୍ରିଜାନ୍‌ଥମମ୍ ଇତ୍ୟାଦିପାଇଁ ସମୟ ଦିଏ । ପୋକ ଲାଗିଥିବା ପତ୍ର ଛିଡ଼ାଏ,

ଖତମିଶା ମାଟି ଭରେ । ମାଟିକୁ ଖୁସାଏ ଟିକେ, ଇତ୍ୟାଦି । ଏଇ ସମୟଟି ତାକୁ ଖୁବ୍ ଭଲଲାଗେ । ପିଲାଦିନରୁ ସେ ଗଛପତ୍ରକୁ ଭାରି ଭଲପାଉଥିଲା । ଭାବୁଥିଲା, ନିଜର ଘର ହେଲେ ବଡ଼ ଗୋଟିଏ ବଗିଚା କରିବ । ବହୁତ ପ୍ରକାରର ଫୁଲ ଫଳ ଗଛ ଲଗାଇବ । ଛୋଟିଆ କିଚେନ୍ ଗାର୍ଡ଼ନ୍ ମଧ୍ୟ କରିବ । ଜାଗାଥିଲେ ଗୋଟିଏ ଛୋଟ ୱାଟର୍ ଟବ୍ ରଖିବ, ଯେଉଁଠି ପଦ୍ମ, କଇଁ ଦଳ ଲାଗିପାରିବ । କିନ୍ତୁ ନୂଆ ନୂଆ ଚାକିରି ପ୍ରଭାସଙ୍କର । ରାଜଧାନୀରେ ଏତେ ବଡ଼ ଜାଗା ଥାଇ ଘର ମିଳୁଛି କୁଆଡ଼ୁ ? ମିଳିଲେ ବି ଭଡ଼ା ଅମୂଲ ମୂଲ, ସେମାନଙ୍କପକ୍ଷେ ସଂଭବ ନୁହେଁ । ତେଣୁ ଏର୍.ଆଇ.ଜି. ଫ୍ଲାଟ୍‌ଟି ଅଳ୍ପ ଭଡ଼ାରେ ସହରତଳି ଅଂଚଳରେ ମିଳିଥିଲା । ସାମନାରେ ଛୋଟିଆ ହେଲେ ମଧ୍ୟ ମାଟି ଟିକିଏ ଥିଲା, ତା'ର ବହୁତ ଦିନର ଆଶାରୁ ଅଳ୍ପ ଟିକିଏ ଅଂଶ ପୂରଣ କରିବାପାଇଁ ।

ମେରୁନ୍ ରଙ୍ଗର ଗୋଲାପ ଚାରା ପୁଷ୍ପ ପ୍ରଦର୍ଶନୀରୁ ଆଣି ସେ ଲଗାଇଥିଲା ଦୁଇମାସ ତଳେ । ଦୁଇ ତିନି ଦିନ ତଳେ କଢ଼ଟିଏ ବାହାରିଥିଲା । ଆଜି କଅଁଳିଆ ଲାଲ ରଙ୍ଗର ପାଖୁଡ଼ା ମେଲିଆସୁଛି । ପ୍ରସନ୍ନ ଲାଗିଲା ପଲ୍ଲବୀକୁ । ଆଉଁସିଦେଲା କଢ଼ଟିକୁ ସେ । ''ତୁ ବି ?'' କହିଲା, ସତେ ଯେମିତି କଢ଼ଟି କଥା କହୁଛି ତା' ସହିତ ! ପାଚେରିକୁ ଲାଗି ଛୋଟ ସଜନାଗଛଟି । ଫୁଲ ଭର୍ତ୍ତି ହୋଇଥିଲା ଏଥର । ସରୁ ଛୁଇଁ କେତେଟା ପବନରେ ଦୋଳିଖେଳୁଛନ୍ତି । ମୁଗ୍ଧଭାବରେ ଚାହିଁରହିଲା ପଲ୍ଲବୀ । ଏ ସମସ୍ତ ଗଛପତ୍ର ତା'ର ଭାରି ପ୍ରିୟ । କିନ୍ତୁ ଆଜି ସେମାନଙ୍କ ଜୀବନଚକ୍ରରେ ଯେମିତି ସାମିଲ ହୋଇଯାଇଛି ସେ ! ଏକୁଟିଆ ଆଉ ଲାଗୁନଥିଲା ତାକୁ । ତା'ର ଛୋଟିଆ ବଗିଚାର କଢ଼, ଫୁଲ ଓ ଫଳ ଯେମିତି ପବନରେ ମୁଣ୍ଡ ହଲେଇ ତା'ର ଅନୁଭବକୁ ସାଉଁଟିନେଉଥିଲେ – ଏଇ ଲମ୍ୱା ଦ୍ୱିପ୍ରହର ସାରା ସିଏ ଯେ ଆଉ ଏକୁଟିଆ ନୁହେଁ ଏହି ସୁଖକର ପରମ ସତ୍ୟକୁ ବାଣ୍ଟିନେଉଥିଲେ ପଲ୍ଲବୀ ସହ ସେମାନେ ।

''ଆରେ ଆରେ, ହଳଦୀବସନ୍ତଟାଏ ଯେ'' –ପାଟିରୁ ବାହାରିପଡ଼ିଲା ପଲ୍ଲବୀର । ହଳଦୀବସନ୍ତଟିଏ ବସିଛି ସଜନାଗଛ ଡାଳରେ । ଶୁଭ ତା'ର ଦର୍ଶନ । ଆଃ ! ଆଜି ସକାଳ ଏମିତି ମୁଗ୍ଧକର ହେବ ବୋଲି ସେ କ'ଣ ଭାବିଥିଲା ? ପ୍ରସନ୍ନତା ଓ ପ୍ରଶାନ୍ତିର ତରଙ୍ଗ ବହିଗଲା ତା' ଭିତରେ । ଘର ଭିତରକୁ ଯାଇ ସେ ଚା' କପେ ପିଇବ କି ? ଘର ଭିତର ବି କେତେ ସୁନ୍ଦର ଲାଗୁଛି । ତା' ନିଜ ହାତରେ ତିଆରିଥିବା ସଜାଇଥିବା ଘରଟି । ପ୍ରଥମେ ପ୍ରଥମେ ବହୁତ ଉତ୍ସାହରେ ସଜାଇବା ଆରମ୍ଭ କରିଥିଲା ସେ । କିନ୍ତୁ ଗତ ଦୁଇବର୍ଷର ଏକାକୀତ୍ୱ କେମିତି ଧୀରେ ଧୀରେ ଉଦାସ କରିଆସୁଥିଲା ତାକୁ । କିନ୍ତୁ ହଠାତ୍ ଆଜିର ସକାଳ ! ଏତେ ନିଜର ତା'ର କିଛି ଥାଇପାରେ ବୋଲି କେମିତି ଉପଲବ୍ଧି ହୋଇନଥିଲା ତା'ର ଆଜିଯାଏ ! ସବୁକିଛି କେତେ ଅନ୍ତରଙ୍ଗ ଭାବରେ, କେତେ ବହଳ ଭାବରେ ତା' ନିଜର !

ଆଜି ତା'କୁ ତା'ର ଆପଣାର କେତେଜଣଙ୍କୁ ଜଣାଇବାକୁ ହେବ । ପ୍ରଭାସ ଆସିଲେ ଘରକୁ ଫୋନ୍ କରିବା କଥା ରାତିରେ । ବର୍ତ୍ତମାନ ମିନିକୁ ଚିଠି ଲେଖାଯାଇପାରେ । କାଗଜ ଖଣ୍ଡେ, କଲମ ଓ ତକିଆଟେ ଧରି ସେ ଖଟ ଉପରେ ଗଡ଼ିପଡ଼ିଲା । କ'ଣ ଲେଖିବ ମିନିକୁ ? ଏଇ ଅବ୍ୟକ୍ତ ବିହ୍ୱଳତାକୁ କେମିତି ରୂପଦେବ ସେ କାଗଜ କଲମରେ ? ମିନିକୁ କ'ଣ ଏମିତି ଲାଗିଥିବ ପ୍ରଥମ ଥର ? ନିଜ ଭିତରର ଉଲ୍ଲାସ, କସ୍ତୁରୀପରି ଏଇ ଅନୁଭବର ନିର୍ଯାସ କେମିତି ତା' ଆପଣାର ଅନ୍ୟ କେତେଜଣଙ୍କ ପାଖରେ ପହଞ୍ଚାଇ ପାରିଥିବ ସେ ?

ମାତୃତ୍ୱ ଏକ ସ୍ୱାଭାବିକ ସଂଭାବନା ହୋଇଥିଲେ ମଧ୍ୟ ପ୍ରତ୍ୟେକ ମା' ବୋଧହୁଏ ଭାବେ ତା' ନିଜପାଇଁ ଏଇ ସୂଚନା କେମିତି ସ୍ୱତନ୍ତ୍ର, ରହସ୍ୟମୟ, ମାୟାଚ୍ଛନ୍ନ । ଏହି ମାୟାଚ୍ଛନ୍ନ ସଂଭାବନାର ସ୍ୱତ୍ୱ କେବଳ ତା'ର । ଏଇ ଏକମାତ୍ର ପରିଣତି, ଯାହା ଭଙ୍ଗୁର ପୃଥିବୀରେ ତା'ର ଚିରନ୍ତନ ପରିଚୟ ! କେତେବେଳେ ଆହ୍ଲାଦିତ, କେତେବେଳେ ଚକିତ, କେତେବେଳେ ସନ୍ଦିଗ୍ଧ ହୋଇପଡୁଥିଲା ପଲ୍ଲବୀ । ମିନି ପ୍ରାୟ କୁହେ ଯେ ପ୍ରତି ଘଟଣାକୁ ଅତି ନିବିଡ଼ ଭାବରେ, ଅତି ଜଡ଼ିତ ଭାବରେ ଗ୍ରହଣ କରେ ପଲ୍ଲବୀ । ସେ ଦୃଷ୍ଟିରୁ ସେ ଅତି ଭାବପ୍ରବଣ ମଧ୍ୟ । କାଲି ରାତିରେ ସେ ପ୍ରକୃତରେ ଭଲଭାବରେ ଶୋଇପାରିନଥିଲା । ଏଇ ବିସ୍ମୟକର ଅଥଚ ସାର୍ବଜନୀନ ସୂଚନାଟି ତା'କୁ ଏକ ଅଦ୍ଭୁତ ଆଚ୍ଛନ୍ନ ଅବସ୍ଥାରେ ରଖିଲା, ଅନେକ ସମୟ ପର୍ଯ୍ୟନ୍ତ । ସେ ଚୁପ୍‌ଚାପ୍ ବିଛଣାରେ ପଡ଼ିଥିଲା– ପ୍ରଭାସ ଜାଣିପାରିଥିଲେ ବ୍ୟସ୍ତ ହୋଇଥା'ନ୍ତେ ବୋଲି । ତେଣୁ ଚଞ୍ଚଳ ଖାଇଦେଇ ସେ ଦୁଇଘଣ୍ଟା ଶୋଇଯିବ ବୋଲି ଭାବିଲା । ତା'ର ବର୍ତ୍ତମାନଠାରୁ ଅଧିକ ବିଶ୍ରାମ କରିବା ଉଚିତ– ପୁଣି ଚେନାଏ ରହସ୍ୟମୟ ହସ ଖେଳିଗଲା ଓଠରେ ତା'ର ।

ପ୍ରଭାସ ଆଜି ଅନ୍ୟଦିନମାନଙ୍କଠାରୁ ଚଞ୍ଚଳ ଆସିଛନ୍ତି । ଉପରକୁ ଦେଖାଉନଥିଲେ ମଧ୍ୟ ସେ ବିବ୍ରତ ଅଛନ୍ତି ବୋଲି ପଲ୍ଲବୀ ଜାଣିପାରିଲା । ଏଇ ଅବଶ୍ୟମ୍ଭାବୀ ଘୋଷଣାଟି ତାଙ୍କୁ ମଧ୍ୟ ଅନେକ ମାତ୍ରାରେ ପ୍ରଭାବିତ କରିଛି । କିନ୍ତୁ ପଲ୍ଲବୀ ଜାଣିପାରୁନଥିଲା କେଉଁଭଳି ; ତା'ର ଜିଜ୍ଞାସୁ ମନ ତାକୁ ବାଧ୍ୟକରୁଥିଲା, ଏତକ କୌଣସିମତେ ପ୍ରଭାସଙ୍କଠାରୁ ଶୁଣିବାପାଇଁ ।

''ଖାଇସାରି ଶୋଇଥିଲ ତ ?'' ଘରେ ପଶୁ ପଶୁ ପ୍ରଭାସ ପଚାରିଲେ ।

''ହଁ ସବୁଦିନ ତ କରେ ସେଇୟା ।'' ମୁରୁକି ହସିଲା ପଲ୍ଲବୀ । ଫୋନ୍ ପାଖରେ ବସିପଡ଼ିଲେ ପ୍ରଭାସ ।

''ହଁ, କୁହ କୁଆଡ଼େ କୁଆଡ଼େ ଫୋନ୍ କରିବା ।''

''ଏତେ ବ୍ୟସ୍ତ କାହିଁକି ? ହାତ ଗୋଡ଼ ଧୁଅ । ଚା' ପିଅ । ପକୁଡ଼ି ଛାଣିଦେବି କି ଟିକିଏ ?''

''ନାଇଁ, ଦରକାର ନାହିଁ । ତୁମେ ଟେଲିଫୋନ୍ ଇଣ୍ଡେକ୍ସଟା ଆଣିଲ ।''

ଏଥିରୁ ପଲ୍ଲବୀ ଜାଣିପାରିଲା ପ୍ରଭାସ କେତେ ଭାବରେ ଆନ୍ଦୋଳିତ । ମୁହଁ ଖୋଲି ତାଙ୍କ ଅନୁଭବ ବିଷୟରେ କେବେହେଲେ ବିଶେଷ କିଛି କୁହନ୍ତି ନାହିଁ ପ୍ରଭାସ । ତାଙ୍କ ବ୍ୟବହାର ଓ ଅଙ୍ଗଭଙ୍ଗୀରୁ ପଲ୍ଲବୀକୁ ସବୁକିଛି ଠଉରାଇବାକୁ ହୁଏ । କିନ୍ତୁ ନିଜ ପ୍ରଗଲ୍‌ଭତା ପଲ୍ଲବୀକୁ ଚୁପ୍ ରହିବାକୁ ଦିଏନାହିଁ । ପ୍ରଭାସ ଅଫିସ୍‌ରୁ ଫେରିବା ପରେ ପରେ ତାଙ୍କୁ କିଛି ଜଳଖିଆ ଓ ଚା' କପେ ଧରାଇଦେଇ ସାରାଦିନ ଏକୁଟିଆ ସେ ଭାବୁଥିବା ତଥ୍ୟତକ ପ୍ରଭାସଙ୍କ ଆଗରେ ଅଜାଡ଼ିଦିଏ । ତା' ଭିତରୁ କିଏ ଦରକାରୀ କିଏ ଅଦରକାରୀ ତା' ବାଛିବା ହେଲା ପ୍ରଭାସଙ୍କ ଅଧିକାର ।

''ମାଆ, ଜାଣିଲେଣି ନା ? ଆପଣ ଆଈ ହେବାକୁ ଯାଉଛନ୍ତି । ଏଇ ନିଅନ୍ତୁ, ପଲ୍ଲୀ ସହ କଥା ହୁଅନ୍ତୁ ।''

''ମାଆ—'' ପଲ୍ଲବୀର ସ୍ୱର ଥରୁଥିଲା । ସେ କ'ଣ କହିବ ଭାବିପାରୁନଥିଲା ।

''ପଲ୍ଲୀ, ମାଆଲୋ, ତୋ ଦେହ ଭଲଅଛି ତ ?''

''ମୁଁ ପୂରା ଠିକ୍ ଅଛି, ମାଆ । ଶୁଣ୍, ସେଇ ମେରୁନ୍ ରଙ୍ଗର ଗୋଲାପ ଗଛରେ ଫୁଲ ଫୁଟି ଆସିଲାଣି । ଡ୍ରାଇ କ୍ଲିନର୍‌ଠାରୁ ମୋର ମଠା ଶାଢ଼ିଟି ଆଣିଲୁ ନା ନାହିଁ ?'' କ'ଣ ମାଆକୁ ପଚାରୁଛି ପଲ୍ଲବୀ କେଜାଣି ?

''ଶୁଣ୍ ପଲ୍ଲୀ, ଖରାବେଳେ ବାହାରକୁ ବେଶୀ ବାହାରିବୁ ନାହିଁ । ଅସମୟରେ କିଏ କବାଟ ବାଡ଼େଇଲେ ଖୋଲିପକାଇବୁନାହିଁ । କିଛି ଅଘଟଣ ହେଲେ ଚମକିପଡ଼ିଲୁ ଯଦି ଭଲ ନୁହେଁ ।''

''ହଉ, ତୁ କେବେ ଆସିବୁ ?''

''ଶନିବାର ଆଡ଼କୁ ଯିବି ।''

ଶାଶୁଙ୍କ ପାଖକୁ ଫୋନ୍ କରିହେବନାହିଁ । ଚିଠିଟେ ଲେଖିବାକୁ କହିଲେ ପ୍ରଭାସ । ପଲ୍ଲବୀ ପୁଣି ପକୁଡ଼ି ଛାଣି ଆଣି ଦେବାର ପ୍ରସ୍ତାବ ଦେଲା ।

''ଥାଉ, ଦରକାର ନାହିଁ''— ଏତକ କହି ପ୍ରଭାସ ତା'କୁ କିଛି ମନେପଡ଼ିଗଲା ପରି ଚାହିଁଲେ ଓ ପଚାରିଲେ— ''ତୁମର ଖାଇବାକୁ ମନ ହେଉଛି କି ?''

''ନାଇଁ .... ମାନେ.... ତିଆରିକଲେ ଆଉ ଖାଆନ୍ତି ନାହିଁ କି ?'' ପଲ୍ଲବୀ ରୋଷେଇ ଘର ଭିତରକୁ ପଶିଗଲା ।

ପଲ୍ଲବୀ ଏଣିକି ଅଧିକ ନିୟମାନୁବର୍ତ୍ତୀ ହେବାକୁ ଆରମ୍ଭକଲା । ପ୍ରାୟ ପ୍ରତିଦିନ ସାଙ୍ଗ, ସାଥୀ, ମାଉସୀ, ପିଉସୀ, ନଣନ୍ଦ, ଝିଆରୀ ଇତ୍ୟାଦିଙ୍କ ଫୋନ୍ ଆସିବାକୁ ଆରମ୍ଭ କଲା ।

—ପଲ୍ଲୀ ଲୋ, ସୋମବାର ଦିନ ଲାଉ ଖାଇବୁ ନାହିଁ ।

— ପଲ୍ଲୀ ମା', ସ୍କୁଟରରେ ବେଶୀ ବୁଲାବୁଲି କରିବୁ ନାହିଁ ।

— ପଲ୍ଲବୀ, ମୁଣ୍ଡ ପାଖରେ କୃଷ୍ଣଙ୍କର ଫଟୋଟିଏ ରଖିକରି ଶୋଇବ । ଛୁଆଟି କୁଆଡ଼େ ସେମିତି ସୁନ୍ଦର ହେବ ।

—ଭାଉଜ, ମୋ ରାଣ, କ'ଣ ଖାଇବାକୁ ଇଚ୍ଛା ହେଉଛି ନିଶ୍ଚୟ କହିବ । ନହେଲେ ରାଗିବି ଜାଣିଥା....

—ପଲ୍ଲୀ ଅପା, କେଆର୍‌ଫୁଲ୍ । ଭଲ ଗାଇନାକଲୋଜିଷ୍ଟଙ୍କ ପାଖକୁ ଯିବ । ଆଜିକାଲି ଯେମିତି ଡାକ୍ତର ହେଲେଣି— ଯା' ଇଚ୍ଛା ତା' ମେଡିସିନ୍ ଦେଇଦେଉଛନ୍ତି ।

ପଲ୍ଲବୀକୁ ସମସ୍ତଙ୍କର ଏଇ ଉଦ୍ଭାବିତ ବ୍ୟସ୍ତତା ପ୍ରଥମେ ପ୍ରଥମେ ବେଶ୍ ମଜା ଲାଗୁଥିଲା । ଭଲଲାଗୁଥିଲା ଜାଣି ଯେ ଏତେଜଣ ତା' କଥା ସତରେ ଭାବୁଛନ୍ତି । ସପ୍ତାହରୁ ଧୀରେ ଧୀରେ ପନ୍ଦରଦିନରେ ଥରେ ସେ ଗାଇନୋକଲୋଜିଷ୍ଟଙ୍କ ପାଖକୁ ଗଲା । ପ୍ରଭାସ ନିଜେ ମନେପକାଇ ସ୍କୁଟର୍ ଆସ୍ତେ ଚଲାଇବାକୁ ଆରମ୍ଭକଲେ । ମେଡିସିନ୍ ଟାଇମ୍‌ରେ ଖାଇବାକୁ ଅନେକଥର ମନେପକାଇଦେଲେ ।

ସେଦିନ ଗାଧୁଆଘରେ ସାମାନ୍ୟ ଅନ୍ୟମନସ୍କତା ହେତୁ ପଲ୍ଲବୀର ଗୋଡ଼ ଖସିଗଲା । କମୋଡ଼୍‌କୁ ଧରିପକାଇ କୌଣସିମତେ ସେ ଠିଆହୋଇପାରିଲା । ଭାରି କିନ୍ତୁ ଡରିଯାଇଥିଲା ସେ । ତା'ର ଏତେ ଜୋର୍ ଚିତ୍କାର ଶୁଣି ବାସନ ମାଜୁଥିବା ପାର୍ବତୀ ଦଉଡ଼ି ଆସିଥିଲା ଏବଂ ତାକୁ ଧରି ଧରି ନେଇ ଖଟ ଉପରେ ଶୁଆଇଦେଲା । ପାଣି ଗିଲାସେ ପିଇବାକୁ ଦେଲା । ହାତ, ଗୋଡ଼ ଥରୁଥାଏ ତା'ର । ପାଞ୍ଚ ମିନିଟ୍ ପରେ ଫୋନ୍ କରି ପ୍ରଭାସକୁ ସେ ପଡ଼ିଯାଇଛି ଓ ଶୀଘ୍ର ଆସିବାକୁ କହିଲା । ତା'ପରେ ବୋଧହୁଏ ତା'ର ଆଖି ଅଳ୍ପ ଲାଗିଯାଇଛି । ପ୍ରଭାସ ପ୍ରାୟ ଅଧଘଣ୍ଟାଏ ପରେ ଆସି ପହଞ୍ଚିଗଲେ । ଖୁବ୍ ବ୍ୟସ୍ତ ଲାଗୁଥିଲେ ସେ । ସେତେବେଳକୁ ପଲ୍ଲବୀକୁ ପୂରା ସୁସ୍ଥ ଲାଗୁଥିଲା ଓ ସେ ଏକଦମ୍ ଠିକ୍ ଅଛି ବୋଲି ବାରମ୍ବାର କହିଲା । କିନ୍ତୁ ପ୍ରଭାସ ଶୁଣିଲେ ନାହିଁ ଓ ସଂଧ୍ୟାରେ ସେମାନେ ତା'ର ଡାକ୍ତରଙ୍କ ପାଖକୁ ଗଲେ । ମୁଖ୍ୟତଃ ପ୍ରଭାସଙ୍କ ବ୍ୟସ୍ତତା ଦେଖି ସେ ଅଲଟ୍ରାସାଉଣ୍ଡ୍ କରିବାକୁ ପରାମର୍ଶ ଦେଲେ । ଅଲଟ୍ରାସାଉଣ୍ଡରୁ କୌଣସି ଅସୁବିଧା ନାହିଁ ବୋଲି ଜଣାପଡ଼ିଲା । ଈଶ୍ୱରଙ୍କୁ ଧନ୍ୟବାଦ ଦେଇ ପଲ୍ଲବୀ ସ୍କୁଟର୍‌ରେ ବସିଲା । ଅଳ୍ପବାଟ ଗଲା ପରେ ପ୍ରଭାସ ସ୍କୁଟର୍ ଅଟକାଇଲେ ।

''ନଅଟା ବାଜିଲାଣି । ଏବେ ଆଉ ଘରକୁ ଯାଇ ରୁଟି ତରକାରି କରିବ କ'ଣ ? ଚାଲ ଆଜି ବାହାରେ ଖାଇଦେବା ।''

ପଲ୍ଲବୀକୁ ମଧ୍ୟ ମଝିରେ ମଝିରେ ବାହାରକୁ ଯିବାକୁ ଭଲଲାଗେ । ନିତି ନିତି ହାତରେ ରାନ୍ଧି ତା'କୁଇ ଖାଇବାକୁ ପଡ଼େ ତ ! ସେ ଅସମ୍ମତ ହେବାର କାରଣ ନଥିଲା ।

ପରେ ଚାବି ଖୋଲୁ ଖୋଲୁ କହିଲେ ପ୍ରଭାସ– ''ମାଆକୁ ଚିଠିଦେଇ ଡକାଇ ଦେଉଛି । ତୁମେ ଏକଦମ୍ ଏକୁଟିଆ ରହିବାଟା ଠିକ୍ ନୁହେଁ ଆଉ । ମୁଁ ହୁଏତ ମଝିରେ ମଝିରେ ଆସିବି, କିନ୍ତୁ ସବୁବେଳେ କିଏ ହେଲେ ପାଖରେ ରହିବା ଦରକାର ।''

କିଛି ଉତ୍ତର ଦେଇନଥିଲା ପଲ୍ଲବୀ ।

ଚାରିଦିନ ପରେ ଶାଶୂ ଆସି ପହଞ୍ଚିଲେ । ସେ ଭାରି ପ୍ରଫୁଲ୍ଲ ଦିଶୁଥିଲେ । ସାଙ୍ଗରେ ଅନେକ ଖାଇବା ଜିନିଷ ବାନ୍ଧିକରି ଆଣିଥିଲେ– ଘିଅଲଡୁ, କୋରା, ବଡ଼ି, ଆଚାର ଇତ୍ୟାଦି । ପ୍ରଭାସ ତାଙ୍କର ବଡ଼ ପୁଅ । ସାନପୁଅର ବାହାଘର ହୋଇନାହିଁ । ପଲ୍ଲବୀକୁ ଆଦର କରନ୍ତି ଶାଶୂ । ତେଣୁ ତାଙ୍କ ସହ ସମୟ କଟାଇବା ପଲ୍ଲବୀପାଇଁ ଆରାମଦାୟକ ଥିଲା ବେଶ୍ । ଏଇଥର ସେ ପଲ୍ଲବୀପାଇଁ ଟିକିଏ ଅଧିକ ଯତ୍ନଶୀଳ ଓ ସଜାଗ । ଘରୋଇ ତରକାରିଟିଏ ମନପସନ୍ଦ ହେଲାଭଳି ପ୍ରାୟ ସେ ପ୍ରତିଦିନ ରାନ୍ଧିବେ । ତେବେ ପଲ୍ଲବୀର ସ୍ୱଚ୍ଛଳ ଚଳପ୍ରଚଳ ହେବା ଟିକିଏ ବ୍ୟାହତ ହୋଇଛି; ଯଥା– ଯେକୌଣସି ସମୟରେ ବାହାରକୁ ଯିବ ନାହିଁ । ସକାଳୁ ଉଠି ଆଗ ଗାଧୋଇ ରୋଷେଇ ଘରକୁ ପଶିବ ଇତ୍ୟାଦି । ପଲ୍ଲବୀ କିନ୍ତୁ ଏଇ ନବ୍ୟ ଅନୁଭୂତ ଯତ୍ନକୁ ଉପଭୋଗ ମଧ୍ୟ କରୁଛି ।

''ଘିଅଲଡୁତକ ସବୁ ସରିଗଲାଣି ନା ନାହିଁ, ପଲ୍ଲୀ ? ଖାଇସାରିଲେ ସିନା ଆଉ ତିଆରିକରିବି ।''

''ବହୁତ ଘିଅ ହୋଇଯାଇଛି, ମାଆ । ଏତେ ଖାଇହେଉ ନାହିଁ । ଦେଖନା କେତେ ମୋଟା ହୋଇଗଲିଣି । ଡାକ୍ତର ବି ଆଉ ଓଜନ ନ ବଢ଼ାଇବାକୁ କହିଛନ୍ତି ।''

''ଆଜିକାଲି ଡାକ୍ତରମାନେ ଜାଣୁଛନ୍ତି କ'ଣ ? ଛୁଆ ଜନ୍ମ ହେଇଗଲା ପରେ କ'ଣ ଏଇ ଚର୍ବି ରହିବ ଆଉ ? ତେବେ ଘିଅ ଖାଇଲେ ସିନା ପିଲାର ଦେହରେ ଲାଗିବ । ତୋ ପାଇଁ ନୁହେଁ, ତା'ପାଇଁ ଏବେ ଏତକ ଘିଅ ଖାଇବା କଥା । ଛୁଆ ଚିକ୍କଣ ହେବ ନହେଲେ କେମିତି ?'' ପଲ୍ଲବୀ ଭାବିଲା ନ ଖାଇଲେ ଅନ୍ତତଃ ଚୁପ୍‌କରି ପାଚେରି ସେପଟକୁ ପକାଇଦେବ ।

ତା' ମାଆ ଏଥର ପ୍ରାୟ ପ୍ରତିଦିନ ଫୋନ୍ କରନ୍ତି । ଡେରିହୋଇଗଲେ ପଲ୍ଲବୀ ନିଜେ ଫୋନ୍‌କରିଦିଏ ।

—ପଲ୍ଲୀ ଲୋ, ଷ୍ଟେସନ୍ ଇତ୍ୟାଦି ଆଡ଼କୁ ଯିବୁନାହିଁ । ଗାଡ଼ି ମଟରର ଶବ୍ଦ, ପେଁ-ପାଁ ଇତ୍ୟାଦି ବଡ଼ ଖରାପ ଛୁଆପାଇଁ ।

—ପଲ୍ଲୀ ମାଆ, ପାରିବୁ ଯଦି ବିବେକାନନ୍ଦ ବା ରାମକୃଷ୍ଣ ପରମହଂସଙ୍କର ବହି କିଛି ପଢ଼ିବୁ । ଗୀତା ତୋତେ ଭଲ ଲାଗିବ ନାହିଁ । ତେବେ ଗୀତା ପଢ଼ିବା ଏଇ ସମୟରେ ଖୁବ୍ ଭଲକଥା ।

ଛୁଆପାଇଁ ଭଲ ଖରାପର ବୋଧହୁଏ ଶେଷ ନାହିଁ । ଏତେ ହିତାକାଂକ୍ଷା, ଏତେ ବ୍ୟସ୍ତତା, ଚିନ୍ତା ଭିତରେ ଜନ୍ମିବାକୁ ଯାଉଛି ତା'ର ପିଲାଟି । ହୁଏତ ଅଧିକାଂଶ ତା'ରି ପରି ପରିବାରର ସନ୍ତାନମାନେ ଏମିତି ସ୍ନେହ ଓ ଶୁଭାକାଂକ୍ଷାର ପାତ୍ର ହେଉଥିବେ । ଖୁସିରେ ଭରିଯାଉଥିଲା ତା' ମନ । ଆହା ! ସତରେ କ'ଣ ପୃଥିବୀରେ ଜନ୍ମିତ ସମସ୍ତ ଶିଶୁ ଏମିତି ସ୍ନେହ ସୌଭାଗ୍ୟର ଅଧିକାରୀ ହେଉଥିବେ ? କ'ଣ ବା ଜାଣନ୍ତି ଏଇ ଜନ୍ମିତ କୋମଳମତି ଶିଶୁମାନେ ? କି ପ୍ରକାର ପରିବେଶ, କି ପ୍ରକାର ପରିସ୍ଥିତି, କି ପ୍ରକାର ସମୟରେ ଜନ୍ମ ତାଙ୍କର ? କେବଳ ମାତ୍ର କିଛି ଅସହାୟତା ଓ ସରଳ ସୌନ୍ଦର୍ଯ୍ୟ ନେଇ ପୃଥିବୀ ଉପରକୁ ଆସନ୍ତି ସେମାନେ । ସେମାନଙ୍କ ଉପଲବ୍ଧିର ଜଗତ ତିଆରି ହେବା ପୂର୍ବରୁହିଁ ଅଧିକାଂଶ ଭାଗ୍ୟ ନିର୍ଦ୍ଧାରିତ ହୋଇଯାଇଥାଏ ତାଙ୍କପାଇଁ ।

ସେ ଯେ ମାଆ ହେବାକୁ ଯାଉଛି– ସେଇ ପ୍ରଥମ ସଂଦେଶର ବିସ୍ମିତ ପୁଲକ ପୂରାପୂରି ଲିଭିଯାଇନାହିଁ ପଲ୍ଲବୀଠାରୁ । ସେଇ ବିହ୍ୱଳ ଆଚ୍ଛନ୍ନ ଅବସ୍ଥା ଦିନର ଅନେକ ପ୍ରହରରେ ଘାରିବସେ ତା'କୁ । କେମିତି ହୋଇଥିବ ତା'ର ଶିଶୁ ? ତା'ର ଆକାର, ତା'ର ଆଚରଣ, ତା'ର ଅଂଗଭଂଗୀ କେମିତି ହୋଇଥିବ ? ଅନେକ ଶିଶୁଙ୍କୁ ଦେଖିଛି ସେ, ଆଦର କରିଛି । କିନ୍ତୁ ନିଜ ସନ୍ତାନ ବିଷୟରେ ଭାବିଲାବେଳକୁ କେମିତି ଏକ ଆଶଂକାମିଶ୍ରିତ ଆହ୍ଲାଦ ଛାଇଯାଉଛି ତା' ଚତୁର୍ଦ୍ଦିଗରେ । ଏଇ ଅନୁଭବ ବୋଧହୁଏ ବାତ୍ସଲ୍ୟ !

ପୁଅ ନା ଝିଅ– ଏକଥା ଭାବି ନାହିଁ ସେ ଥରେହେଲେ । କିନ୍ତୁ ଅନେକ ସୁନ୍ଦର, ସୁକୁମାର ଆକୃତି ଖେଳିଯାଇଛି ତା' ମାନସପଟରେ । ପ୍ରଭାସ ମଧ୍ୟ କହିନାହାନ୍ତି କିଛି – ପ୍ରଥମ ସନ୍ତାନ– ସେ ମର୍ଯ୍ୟାଦାର ସନ୍ତାନ । ତେବେ ଶାଶୁ କେତେଥର କହିଛନ୍ତି– ବଡ଼ ମାଛ ମୁଣ୍ଡ ଖାଇଲେ ପୁଅ ହୁଏ । ସବୁବେଳେ ଆଚାର ଖାଇବାକୁ ମନକଲେ ଝିଅ ହୁଏ । ସେ କୌଣସି ମତ ଦେଇନାହାନ୍ତି– ଭାବୁଛନ୍ତି ବୋଧହୁଏ ଏତକ ବାଛିବାର ଅଧିକାର ପଲ୍ଲବୀର ଅଛି ! ହସିପକାଇଲା ପଲ୍ଲବୀ । କିଏ ତା'ର ଏଇ କୁନୁମୁନିଆ ଶିଶୁ– ମନ୍ତ୍ର ଭେଳିକିଭଳି ଥରଟିଏ ଦୃଶ୍ୟ ହୋଇଯାଆନ୍ତା ନାହିଁ ! ଆହୁରି ତିନିମାସ ଅପେକ୍ଷା କରିବାକୁ ପଡ଼ିବ ! ଏକ ମଧୁର ଅଥଚ ବ୍ୟଗ୍ର ଅପେକ୍ଷାର ଦିନ ଏତକ !

କିନ୍ତୁ କାହିଁକି କେଜାଣି ଏଇ ସମୟରେ ହଠାତ୍ ଅସୁସ୍ଥ ହୋଇପଡ଼ିଲା ପଲ୍ଲବୀ । ମାନସିକ ସ୍ତରରେ ସେ ଖୁବ୍ ପାରିବାର ଥିଲା ଓ ଆରାମରେହିଁ ଥିଲା । କିନ୍ତୁ ତା'ର ରକ୍ତଚାପ ବଢ଼ିବାରେ ଲାଗିଗଲା ଓ କ୍ରମାଗତ ଭାବରେ ମୁଣ୍ଡ ବିନ୍ଧିବାକୁ ଲାଗିଲା । ପାଦ ଦୁଇଟି ଫୁଲିଗଲା । ସେ କିଛି ଖାଇପାରିଲାନାହିଁ । ପ୍ରଭାସ, ପ୍ରଭାସଙ୍କ ମାଆ ଓ ତା'ର ମାଆ, ବାପା ବ୍ୟସ୍ତହୋଇପଡ଼ିଲେ । ପ୍ରାୟ ଦୁଇଦିନରେ ଥରେ ଡାକ୍ତରଙ୍କ ସହ ପରାମର୍ଶ କରିବାକୁ ପଡ଼ିଲା । ପ୍ରତି ସପ୍ତାହରେ ଅଲ୍‌ଟ୍ରାସାଉଣ୍ଡ୍ ଓ ଫିଟାଲ୍ ହାର୍ଟବିଟ୍ ପରୀକ୍ଷା କରିବାକୁ ପଡ଼ିଲା । ଅଳ୍ପ କିଛି ଔଷଧ ଓ ଅନେକ ବାରଣ ଭିତରେ ରହିଲା ପଲ୍ଲବୀ । ଡାକ୍ତର ମଧ୍ୟ ସାମାନ୍ୟ ସନ୍ଦିଗ୍ଧ ହୋଇପଡ଼ିଲେ । ଜରାୟୁର ଆକାର ଛୋଟ ଓ ବଢୁଥିବା

ଭ୍ରୁଣଟିକୁ ଠିକ୍‌ରୂପେ ଧାରଣ କରିବାରେ ତା'ର ସକ୍ରିୟ କ୍ଷମତା କମିଆସୁଛି ବୋଲି ମତ ଦେଲେ ସେ । ହୁଏତ ସମୟ ପୂର୍ବରୁ ଡେଲିଭରି ହୋଇଯାଇପାରେ, ହୁଏତ ସିଜରିଆନ୍ ଅପରେସନ୍ ଦରକାର ପଡ଼ିପାରେ । ରକ୍ତଚାପ ଅଧିକ ହେଉଥିବାରୁ ମଧ୍ୟ ଅତି ଯତ୍ନରେ ରହିବାକୁ ଉପଦେଶ ଦେଲେ ଡକ୍ଟର । ପଲ୍ଲବୀର ମାଆ ଅତି ଦୁଃଖିତା ହୋଇପଡ଼ିଲେ । ଝିଅ ପାଖରେ ଆସି ରହିବାକୁ ପ୍ରସ୍ତାବଦେଲେ । ପଲ୍ଲବୀ କିନ୍ତୁ ଦରକାର ହେଲେ ଫୋନ୍ କରି ଡାକିବାକୁ କହି ମାଆକୁ ଶାନ୍ତ କରିବାକୁ ଚେଷ୍ଟାକରିଥିଲା ।

ଏଇ ସନ୍ଦିଗ୍ଧ ପରିସ୍ଥିତିରେ ପଲ୍ଲବୀର ବିସ୍ମୟବିହ୍ୱଳ ଅବସ୍ଥା ଉଭେଇଯାଇଥିଲା । ଏକ ଆସନ୍ନ ପରିଣତି ଅବସନ୍ନତା ଭରିଦେଲା ତା' ଭିତରେ । କ'ଣ ଯେମିତି ଓଲଟ ପାଲଟ ହୋଇଗଲା ଏଇ କେତେଦିନ ଭିତରେ – ମାତ୍ର ପନ୍ଦର ଦିନ ଭିତରେ ! ପଲ୍ଲବୀକୁ ସାମାନ୍ୟ ଭୟଲାଗୁଥିଲା । କ'ଣ ହେବ କେଜାଣି ? ସେ କେବଳ ଅବଶ୍ୟମ୍ଭାବୀପାଇଁ ପ୍ରାର୍ଥନା କରିବାକୁ ଲାଗିଲା । ଏତେ ସୁନ୍ଦର ସ୍ୱପ୍ନିଳ ଅବସ୍ଥା କେମିତି ଏକ ଶୂନ୍ୟସ୍ଥାନରେ ପରିବର୍ତ୍ତିତ ହୋଇଗଲା ତା' ପାଇଁ ! ଶିଶୁକୁ ନେଇ ସମସ୍ତ ସୁକୁମାର ଭାବନା ମଧ୍ୟ ଆଉ ମନେପଡୁନଥିଲା ତା'ର । ବର୍ତ୍ତମାନ କେବଳ ନିର୍ଦ୍ଧାରିତ ପରିଣତିକୁ ଅପେକ୍ଷା କରିବାକୁ ଲାଗିଲା ପଲ୍ଲବୀ । ଦିନଟିଏ ଯେମିତି ସପ୍ତାହେ ପରି ଲାଗୁଥିଲା ତାକୁ । ଛୁଆଟି ଭଲରେ ଭଲରେ ମୋ କୋଳକୁ ଆସିଯାଉ– ଏହାଛଡ଼ା କୌଣସି ଧ୍ୟାନ ନଥିଲା ତା'ର । ପ୍ରଭାସ ପ୍ରଥମେ ଦୁଇ ତିନି ଦିନ ଛୁଟି ନେଇଥିଲେ । କିନ୍ତୁ ଅଫିସ୍ ତ ଯିବାକୁହିଁ ହେବ । ଅଫିସ୍‌ରୁ ପ୍ରାୟ ଦୁଇ ତିନିଥର ଫୋନ୍ କରୁଥିଲେ । ପଲ୍ଲବୀ ଚାହୁଁଥିଲା ପ୍ରଭାସ ତା' ପାଖରେ ସବୁବେଳେ ଥାଆନ୍ତୁ । ମାଆ ବାରମ୍ଭାର କହୁଥିଲେ ତା'କୁ ନିଜ ପାଖକୁ କଟକ ନେଇଯିବାପାଇଁ । ଏଠାରେ ଏମିତି ଛାଡ଼ି ଯିବେନାହିଁ ବୋଲି ଜିଦ୍ କରୁଥିଲେ । କିନ୍ତୁ ପଲ୍ଲବୀକୁ ଲାଗୁଥିଲା ସେ ପ୍ରଭାସଙ୍କ ପାଖେପାଖେହିଁ ରହିବ । ଏବେ କୌଣସିମତେ ସେ ତାଙ୍କଠାରୁ ଦୂରକୁ ଯିବ ନାହିଁ । ପ୍ରଭାସଙ୍କ ଉପସ୍ଥିତି ଓ ଆଶ୍ୱାସନା ତା'ର ମାନସିକ ଓ ଶାରୀରିକ ପ୍ରସ୍ତୁତିପାଇଁ ଅତ୍ୟନ୍ତ ସହାୟକ । ପ୍ରଭାସ ଯେପରି ତା'ପାଇଁ ସବୁଠାରୁ ଜୀବନ୍ତ ସତ୍ୟ ଓ ସବୁକିଛିକୁ ଏକତ୍ର ସମ୍ମୁଖୀନ ହେବାପାଇଁ ଦୃଢ଼ ନିର୍ଭର ଆଶ୍ରୟ ! ପ୍ରକୃତପକ୍ଷେ ପଲ୍ଲବୀ ଏପରି ଅସହାୟତା କେବେ ଅନୁଭବ କରିନଥିଲା ।

''ଶୁଣ, ତୁମେ ସେତେବେଳେ ମୋର ପାଖରେ– ଏକଦମ୍ ପାଖରେ ରହିବ କହି ଦେଉଛି । ମୋତେ ନହେଲେ ଭାରି ଡରଲାଗିବ । ଏମିତି ମୋ ହାତଧରି ଠିଆ ହୋଇଥିବ ।''

''ସେମାନେ ରହିବାକୁ ଦେଲେ ତ ? କଥା ଦେଉଛି ପଲ୍ଲବୀ, ନିଶ୍ଚୟ ରହିବି ।''

ପଲ୍ଲବୀ କଳ୍ପନା କରେ– ପ୍ରଭାସ ତା'ର ହାତଧରି ଧୀରେ ଆଉଁଶି ପାଖରେ ଠିଆ ହୋଇଛନ୍ତି । ତାଙ୍କର ଦୃଷ୍ଟି ନିବିଡ଼ ଓ ସହାନୁଭୂତିପୂର୍ଣ୍ଣ । ଅସହ୍ୟ କଷ୍ଟ ଭିତରେ ପଲ୍ଲବୀ

ସେମାନଙ୍କ ସନ୍ତାନଙ୍କୁ ଜନ୍ମ ଦେଉଛି– ତା'ର ଯନ୍ତ୍ରଣାର ପ୍ରତିଫଳନ ପ୍ରଭାସଙ୍କ ମୁହଁରେ ସ୍ପଷ୍ଟ ଦେଖାଯାଉଛି ତାକୁ ।

ଖରାବେଳେ ଟିକିଏ ଆଖି ଲାଗିଯାଇଛି ପଲ୍ଲବୀର । ଆଜିକାଲି ସେ ପ୍ରାୟ ଚେଷ୍ଟାକରେ ଦ୍ୱିପ୍ରହରରେ ସାମାନ୍ୟ ଶୋଇପଡ଼ିବାକୁ । କ'ଣ କ'ଣ ଭାବନା ଆସେ କେଜାଣି, ଅଧିକାଂଶ ରାତିସାରା ତାକୁ ନିଦ ହୁଏ ନାହିଁ । ଛାଇ ଛାଇ ନିଦରେ ତାକୁ ଲାଗିଲା ଗୋଟିଏ ଅତଳ ଗହ୍ୱର– ଅଂଧାର, ଉପରୁ ମଧ କିଛି ଦିଶୁ ନାହିଁ । ସେ ମୁଣ୍ଡ ଝୁଙ୍କାଇ ଚାହୁଁଛି ଭିତରକୁ ଓ ନିମିଷକ ମଧରେ ଖସିଯାଉଛି ତା'ଭିତରକୁ ଯାଉଛି– ସେ ଭିତରକୁ ଭିତରକୁ ଖସିଯାଉଛି– ଧରିବାପାଇଁ କିଛି ନାହିଁ ହାତରେ– ଉପରକୁ ଚାହିଁ ଦେଖୁଛି କେତେଟା କଳା କଳା ଛାଇ ଦଉଡ଼ିଯାଉଛନ୍ତି ସେଇ ଗହ୍ୱରର ମୁହଁରେ । ସେ ତଳକୁ ତଳକୁ ଖସୁଛି– ପାଦ ତଳେ ବାଜୁନାହିଁ– ସେ ଯେତେ ଚେଷ୍ଟା କଲେ ମଧ । ନିଦ ଭାଂଗିଗଲା ପଲ୍ଲବୀର । ଥରୁଥିଲା ଦେହ ତା'ର । ବୋଧହୁଏ ଦୁଇଥର ସେ ମାଆ, ମାଆ ବୋଲି ଚିତ୍କାରକରିଛି– ଉଠିପାରିନାହିଁ କିନ୍ତୁ ।

''ଇଲୋ ମୋ ମାଆଲୋ, କ'ଣ କରିବି ଲୋ ମୁଁ !'' ଏଇତକ ଚିତ୍କାର ଶୁଣିଛି ସେ ବୋଧହୁଏ, ତା'ପରେ କ'ଣ ହୋଇଛି ସେ ଜାଣିପାରିଲାନାହିଁ ।

ସାମାନ୍ୟ ଉଷୁମ ଲାଗିବାରୁ ଆଖି ଖୋଲିଲା ପଲ୍ଲବୀ । ସର୍ଚ୍ଚଲାଇଟ୍‌ପରି ବଡ଼ ଲାଇଟ୍ ପଡ଼ିଛି ତା' ଦେହରେ । ଧଳା କପଡ଼ାଟିଏ ଘୋଡ଼ାହୋଇଛି ବେକ ପର୍ଯ୍ୟନ୍ତ । ମୁଣ୍ଡରେ ମଧ କ'ଣ ବନ୍ଧାହୋଇଛି । ସାମାନ୍ୟ ହାତ ଉଠାଇବାକୁ ଚେଷ୍ଟାକଲା ପଲ୍ଲବୀ । ନା, ସେ ପାରୁନାହିଁ । ଆଖି ବୁଲେଇ ଡାହାଣ ପଟକୁ ଚାହିଁଲା । କେହି ନାହାନ୍ତି । କାହାକୁ ଯେମିତି ଖୋଜୁଛି ସେ ! ବାଁ ପଟକୁ ଚାହିଁଲା– ଧଳା ପୋଷାକ ପିନ୍ଧି, ଧଳା କ୍ୟାପ୍ ଓ ମାଉଥ୍ କ୍ୟାପ୍ ପିନ୍ଧି ବୋଧହୁଏ ଡାକ୍ତର ଜଣେ ଠିଆହୋଇଛନ୍ତି– ତା'ର ଜାଣିଥିବା ଡାକ୍ତର ନୁହନ୍ତି । ଓଠ ଫିଟାଇ ସାମାନ୍ୟ ହସିବାକୁ ଚେଷ୍ଟାକଲା ପଲ୍ଲବୀ । ଏଇ ତା' ହେଲେ ତା'ର ସମୟ । ଜୀବନ ଓ ମୃତ୍ୟୁ ସହିତ ଯୁଦ୍ଧ କରିବାର କ୍ଷଣ ! କିନ୍ତୁ କାହାନ୍ତି ପ୍ରଭାସ ? ସେଇମିତି ଶୋଇ ଶୋଇ ଆଉଥରେ ଆଖି ବୁଲାଇଲା ପଲ୍ଲବୀ । ''ଡୋଣ୍ଟ୍ ୱରି, ମିସେସ୍ ପଟ୍ଟନାୟକ । ମିଷ୍ଟର୍ ପଟ୍ଟନାୟକ ଫୋନ୍‌ରେ ମିଳୁନଥିଲେ । ଆପଣଙ୍କ ଘରକୁ ଖରାବେଳେ ଫୋନ୍ କରିଥିଲେ । ତା'ପରେ ସେ ସହରତଳି ବ୍ୟାଙ୍କ୍‌କୁ କିଛି କାମରେ ଚାଲିଯାଇଥିଲେ । ତାଙ୍କୁ କଣ୍ଟାକ୍ଟ କରିବାକୁ ଚେଷ୍ଟାକରାଯାଉଛି । ଏଇ ପହଞ୍ଚିବେ ବୋଧହୁଏ । ଆପଣଙ୍କ ଶାଶୁ ଓ ପଡ଼ୋଶୀ ଆପଣଙ୍କୁ ମୋ ନର୍ସିଂ ହୋମ୍‌କୁ ନେଇଆସିଛନ୍ତି ।'' ସେ ଆଉ ହସିବାକୁ ଚେଷ୍ଟାକଲା ନାହିଁ । କେମିତି ଡର ଡର ଲାଗୁଥିଲା ତାକୁ । କେତେବେଳେ ଆସିବେ ପ୍ରଭାସ ? ଚଞ୍ଚଳ ଆସୁନାହାନ୍ତି କାହିଁକି ? ଅସମ୍ଭବ କ୍ଳାନ୍ତିରେ ଆଖି ବୁଜିହୋଇ ଆସୁଥିଲା ତା'ର । ଏଇ ସମୟରେ ଗୋଟିଏ ଏକଦମ୍ ଅଜଣା

ଯନ୍ତ୍ରଣାରେ ଥରିଉଠିଲା ତା'ର ଦେହ— ଶବ୍ଦଟିଏ ବାହାରିପଡ଼ିଲା ତା' ପାଟିରୁ । ତା'ପରେ କିଛି ସମୟପାଇଁ ସବୁ ଚୁପ୍‌ଚାପ୍ ।

"କ'ଣ ହେଲା, ମାଆ ? ଡାକ୍ତର କାହାନ୍ତି ?"— ପ୍ରଭାସଙ୍କ କଣ୍ଠ ! ଅମୃତ ବର୍ଷିଗଲା ଯେମିତି ପଲ୍ଲବୀର କର୍ଣ୍ଣଗହ୍ୱରରେ । ଉତ୍‌କୀର୍ଣ୍ଣ ହୋଇଉଠିଲା ସେ— ଏଇଠି ଅଛି ମୁଁ, ଏଇଠି ଅଛି । ଆସ, ଏପଟେ ଆସ । ପାଟିକରିବାକୁ ଚେଷ୍ଟା କଲା ପଲ୍ଲବୀ, କିନ୍ତୁ ସ୍ୱର ବାହାରିଲା ନାହିଁ ତା'ର । ପୁଣି ଥରେ ସେଇ ଯନ୍ତ୍ରଣା । କଣ୍ଠଫିଟାଇ ଆର୍ତ୍ତଚିତ୍କାର ଖାଲି ବାହାରିଲା ତା'ର ।

"ଆପଣଙ୍କୁ ଅନେକ ସମୟ ଧରି ଖୋଜିଲୁଣି ଆମେ । ଆପଣଙ୍କ ମାଆ କୌଣସି ନିଷ୍ପତ୍ତି ନେଇପାରିଲେନାହିଁ । ମିସେସ୍ ପଟ୍ଟନାୟକଙ୍କ ବାପା ମାଆଙ୍କୁ ବି ଖବର ଦେବାକୁ ସମୟ ହେଲାନାହିଁ । କିଏ ମିସେସ୍ ପଟ୍ଟନାୟକଙ୍କ କନ୍‌ସଲ୍‌ଟିଂ ଡକ୍ଟର ଥିଲେ ଜାଣି ହେଉନାହିଁ ।"

"କି ନିଷ୍ପତ୍ତି ? କ'ଣ ହେଲା ?" ଅଧୈର୍ଯ୍ୟ ସ୍ୱର ଶୁଭିଯାଉଥିଲା ପ୍ରଭାସଙ୍କର ।

—ଏଇଠି ଅଛି ମୁଁ । ଓଃ ! କେହି ଶୁଣିପାରୁ ନାହାନ୍ତି ତା' କଥା । ଖାଲି ଅଣ୍ଟା ପାଖରେ ତା'ର ହାଡ଼ ଖଣ୍ଡ ଖଣ୍ଡ ହୋଇଯିବା ପରି ଯନ୍ତ୍ରଣା । ଲୁହ ଦୁଇଧାର ଚିତ୍କାର ସହ ବୋହି ଆସିଲା ପଲ୍ଲବୀର ।

"ହଁ, କ'ଣ ହେଲା କୁହନ୍ତୁ ?" ଆଗ ଅପେକ୍ଷା ଆହୁରି କମ୍ପିତ ଥିଲା ପ୍ରଭାସଙ୍କ ସ୍ୱର ।

"ଆପଣଙ୍କ ସ୍ତ୍ରୀଙ୍କ ଅବସ୍ଥା ବଡ଼ ଖରାପ । ଏମିତି ପରିସ୍ଥିତିରେ ଅପରେସନ୍ କରି ଜରାୟୁକୁ ବାହାର କରିଦେବାକୁ ପଡ଼ିବ । ଛୁଆଟି ବଞ୍ଚିନପାରେ । ତାଙ୍କର କଷ୍ଟ ମଧ୍ୟ ଆରମ୍ଭ ହୋଇଗଲାଣି ।"

"ମାଇଁ ଚାଇଲ୍‌ଡ ! କ'ଣ ହେବ ତା'ର ?" ଚିତ୍କାରପରି ଶୁଭୁଥିଲା ପ୍ରଭାସଙ୍କ ସ୍ୱର ।

"ଅପରେସନ୍ କରି ୟୁଟେରସ୍‌ଟାକୁ କାଢ଼ିବାକୁ ପଡ଼ିବ । ପ୍ରିମାଚ୍ୟୁର୍ ଚାଇଲ୍‌ଡ ମଧ୍ୟ । ମୁଁ ଆପଣଙ୍କୁ ଗ୍ୟାରେଣ୍ଟି ଦେଇପାରୁନାହିଁ ।" ଟିକିଏ ରହିଗଲେ ଡାକ୍ତର ।

"ଭ୍ୟାକମ୍ ପମ୍ପ ଦେଇ ଛୁଆଟିକୁ କାଢ଼ି ହୁଏତ ବଞ୍ଚାଇଦିଆଯାଇପାରେ । ତା'ପରେ ଅପରେସନ୍ କରାଯାଇ ପାରନ୍ତା । କିନ୍ତୁ ସେଇ ଦୁଇ ଅଢ଼େଇ ଘଣ୍ଟା ସମୟ ଆପଣଙ୍କ ସ୍ତ୍ରୀଙ୍କ ଜୀବନପାଇଁ ବହୁତ ରିସ୍କ ହେବ । କିଛି ବି ହୋଇଯାଇପାରେ । ପ୍ରଥମେ ଅପରେସନ୍ କରିବାକୁ ଅନୁମତି ଦରକାର— ମୁଁ ଆପଣଙ୍କୁ ଅପେକ୍ଷାକରିଛି ।"

"ମୋ ଛୁଆକୁ ଯେମିତି ହେଲେ ବଞ୍ଚାନ୍ତୁ ଡକ୍ଟର । ସି ଇଜ୍ ବ୍ରେଭ୍ । ସି ଇଜ୍ ହେଲ୍‌ଦି । ସି କ୍ୟାନ୍ ଟେକ୍ ଇଟ୍ । ଆଉ ତ ପିଲା ହେବ ନାହିଁ ତା'ର । ଛୁଆକୁ ବଞ୍ଚାନ୍ତୁ — ଅପରେସନ୍ ଇମିଡିଏଟ୍‌ଲି ପରେ କରିବେ । ପ୍ଲିଜ୍ ଡକ୍ଟର......" ଆହୁରି ଜୋର୍, ଆହୁରି ଅଧୈର୍ଯ୍ୟ ଶୁଭୁଥିଲା ପ୍ରଭାସଙ୍କ ସ୍ୱର ।

ଡାକ୍ତର କ'ଣ କ'ଣ କହୁଥିଲେ....

ପୁଣି ସେଇ ଯନ୍ତ୍ରଣା ।

ପଲ୍ଲବୀର ଆଖି ବୁଜିହୋଇଆସୁଥିଲା ନା ସେ ଜାଣିଶୁଣି ବୁଜିଦେଉଥିଲା କେଜାଣି ?

□□□

# କାରଗିଲ୍ ମା'

— ତୋ ପାପାଙ୍କର କି ଖୁସି ସେଦିନ !

— ତାଙ୍କ ପାଦ ତଳେ ଲାଗୁଥାଏ କି ନଥାଏ ! ସେଇ କ୍ୟାବିନ୍‌ସାରା ତ ଖାଲି ଡେଉଁଥା'ନ୍ତି, ନାଚୁଥା'ନ୍ତି ସେ— ହସର ଫୁଆରା ବାହାରିଆସୁଥାଏ ମୁହଁରୁ ତାଙ୍କର । ହସ୍‌ପିଟାଲ୍‌ରୁ ଡିସ୍‌ଚାର୍ଯ୍ୟ ହୋଇ ଷ୍ଟେସନ୍‌ୱାଗନ୍‌ରେ ଆମେ ସମସ୍ତେ ବସି ଯେଉଁ ପନ୍ଦର କିଲୋମିଟର୍ ଘରକୁ ଆସିଲୁ— ତୋ ପାପା ଡ୍ରାଇଭ୍ କରୁଥା'ନ୍ତି— ରାସ୍ତାସାରା ଗୁଣୁଗୁଣୁ ହେଇ ଗୀତଗାଉଥା'ନ୍ତି ଓ ଡାହାଣ ପାଦରେ ତାଳଦେଇ ଚାଲିଥା'ନ୍ତି । ମୁଁ ପାଖରେ ଆଗସିଟ୍‌ରେ ବସିଥାଏ— ନରମ କପଡ଼ାରେ ଗୁଡ଼ାହୋଇ ତୁ ମୋ କୋଳରେ ଥାଉ— ଜମା ତିନିଦିନର ହୋଇଥାଉ ତ, ଆରାମ୍‌ରେ ଆଖିବୁଜି ଶୋଇଥାଉ । ମୁଁ କୌଣସିମତେ ହସ ଚାପି, ଓଠ କାମୁଡ଼ି ବସିଥାଏ ।

— ତା'ପରେ ଯେତିକି ମିଠେଇ ବଣ୍ଟାହେଇଛି, ଯେତିକି ଫୋନ୍‌କଲ୍ କରାଯାଇଛି, କ'ଣ କହିବି ଆଉ ? ୟା'ଙ୍କର ଏମିତି ଖୁସି ଦେଖି ବାସନମଜାଳୀ ଆଉ ପୂଝାରୀ, ଦୁଇ ଜଣଯାକ ନୂଆଲୁଗା ମାଗିଲେ । ମୁଁ କିନ୍ତୁ ଏତେ ଖୁସି ଦେଖାଉନଥାଏ — ଡରଲାଗୁଥାଏ କାଳେ କାହାର ନଜର ଲାଗିଯିବ । ଦୁଇ ଦିନ ପରେ, ସତକୁସତ କାହାର ନଜର ଲାଗିଗଲା କି କ'ଣ, ଶୁଖିକରି ଆପେ ଝଡ଼ିଯିବା ପୂର୍ବରୁ ତୋ ନାହିରେ କ'ଣ ଟିକେ ବାଜି ସାମାନ୍ୟ ଫାଟି ଯାଇଥିଲା । ସେଥିରୁ ରକ୍ତର ସରୁଧାରଟିଏ ବହିଯାଉଥିଲା— ପାଞ୍ଚ ଛଅ ବୁନ୍ଦା ହେବ ବୋଧହୁଏ । ମୋ ଦେହରୁ ତ ରକ୍ତ ଶୁଖିଗଲା ଯେମିତି ! ତୋ ପାପାଙ୍କୁ ଜାବୁଡ଼ିଧରି ମୁଁ ଝରଝର କାନ୍ଦୁଥାଏ ଓ ସେ ମୋତେ ବୁଝାଇଚାଲିଥା'ନ୍ତି— ରୁହ, ରୁହ, କାନ୍ଦ ବନ୍ଦ କର— ଧୈର୍ଯ୍ୟଧର, ଚାରି ପାଞ୍ଚ ଟୋପା ତ ବହିଛି.... । କିନ୍ତୁ ତୋ କୁନି ଦେହର ରକ୍ତ ! ମୁଁ କେମିତି ସହିପାରିଥା'ନ୍ତି କହିଲୁ ?

ସେତିକିବେଳୁ, ମୁହୂର୍ତ୍ତ ମୁହୂର୍ତ୍ତ— ଦିନ ଦିନ— ମାସ ମାସ— ବର୍ଷ ବର୍ଷ ଧରି — ପୂରା ବାଇଶି ବର୍ଷ ଭିତରେ, କେତେବୁନ୍ଦା ରକ୍ତ ତିଆରି କରିଥିଲି, ମୁନାରେ ? କେତେ ବୁନ୍ଦା ? ମୋ' ଧନ, କେତେ ବୁନ୍ଦା କହ ?

ତୁ ଖାଇଲାବେଳେ ଅଝଟ ହେଲେ, ଭାତ ଥାଳିରେ ଖାଇବା ଛାଡ଼ିଗଲେ, ତଳେ ଜିଦିକରି ବୁଣିଦେଲେ— କେତେଥର ତୋତେ ବୁଝାଇଛି ! ଚାଷୀଟିଏ କେଡ଼େ କଷ୍ଟରେ ମଞ୍ଜିତକ ସଂଗ୍ରହ କରେ । ଜମିରେ ହଳକରି, ଖରା ବର୍ଷା ସହ ଏକାକାର ହୋଇ ମଞ୍ଜିବୁଣେ, ଗଛ ଲଗାଏ, ଖରାରୁ ଘୋଡ଼ାଏ— ବର୍ଷା ପାଣି ଜମିଗଲେ ସିଆର କାଟେ,

ପୋକ ଧରିଗଲେ ଔଷଧ ଆଣି ଛିଞ୍ଚେ— ରାତି ରାତି ଧରି ଜଗିବସିଥାଏ— ଫସଲ କାଳେ କିଏ ନଷ୍ଟ କରିଦେବ— ଖାଇଦେବ । ପାଚିଲା ଧାନକେରା ସବୁ କାଟେ – ବେଙ୍ଗଳା ପକାଇ ଧାନ କାଢ଼େ, ଉଷୁଁଏ, କୁଟେ, ଚାଉଳ ତିଆରି କରେ । ଆମେ ତା'କୁ ଆଣି ରାନ୍ଧି ଖାଉ । କେତେ କଷ୍ଟ— ପରିଶ୍ରମ ମୁଠାଏ ଭାତ ପଛରେ ! ଏମିତି ଭାବରେ ବାବୁରେ ନଷ୍ଟ କରନ୍ତି ନାହିଁ ତାକୁ । ନଷ୍ଟ କରିବା ଆଗରୁ ଥରେ ହେଲେ ଭାବିବୁ କେତେ କଷ୍ଟ, କେତେ ଝାଳ, କେତେ ଉଜାଗର ରାତି ବିତିଛି ସେତକ ତିଆରିବା ପାଇଁ !

ଗତକାଲି ସକାଳୁ ସକାଳୁ କଲିଂବେଲ୍ ବାଜିଲାବେଳକୁ ମୁଁ ଡାଇନିଂ ଟେବୁଲ୍‌ରେ ଚା' ସଜାଡୁଥିଲି । ତୋ' ପାପା ଖବରକାଗଜ ଛାଡ଼ି ତରବର ହୋଇ ଉଠିପଡ଼ି କବାଟ ଖୋଲିଦେଲେ । ଆଗରେ କିଏ ଜଣେ ଠିଆହୋଇଥିଲା । ତୁମରି ପୋଷାକପିନ୍ଧା ପିଲାଟିଏ ହେବ— ତୋରି ବୟସର ହେବ ବୋଧହୁଏ । ତୋ ପାପା ଚଟ୍‌କରି ମୁହଁ ପଛକୁ ବୁଲାଇଦେଲେ— ମୋ ସହ ଆଖି ମିଶିଗଲା ତାଙ୍କର— ମୁଁ ସେତେବେଳକୁ ଚେୟାର୍ ଛାଡ଼ି ଉଠିପଡ଼ିଥାଏ— କଳା ଛାଇଟେ ପରି କ'ଣ ଯେମିତି ଚାଲିଗଲା ଆମ ଦୁହିଁଙ୍କ ମଝିରେ ! ସେଇମିତି ଚଟ୍‌କରି ମୁହଁ ଫେରାଇନେଲେ ତୋ ପାପା । ସେ ପିଲାଟିକୁ ଭିତରକୁ ଡାକିଲେ, କିଛି ବୋଧହୁଏ କଥା ଆରମ୍ଭ କଲେ । ମୁଁ ସେମିତି ଠିଆହୋଇଥାଏ – ମନେପକାଇବାକୁ ଚେଷ୍ଟା କରୁଥାଏ, ପିଲାଟିକୁ ଆଗରୁ କୋଉଠି ଦେଖିଛି କି ? ତୋ' ସାଙ୍ଗରେ ଘରକୁ କେବେ ସେ ଆସିଛି କି ? ମୁଁ ଜାଣି ଜାଣି ତୋ' ପାପାଙ୍କୁ ଚାହୁଁ ନଥାଏ । ତମରି ସେ ପିଲାଟି ସହିତ ସେ ହିଁ କଥାବାର୍ତ୍ତା କରନ୍ତୁ – ମୋର କ'ଣ ଯାଏ ଆସେ ! ଚାରି ପାଞ୍ଚ ମିନିଟ୍ ପରେ ସେ ପିଲାଟି ଉଠି ଠିଆହେଲା – ତା' ସାଙ୍ଗେ ସାଙ୍ଗେ କିଛି ପଡ଼ିଯିବା ପରି ଶବ୍ଦଟିଏ ହେଲା— ତୋ ପାପା ସୋଫାରୁ ଉଠୁ ଉଠୁ ହାମୁଡ଼େଇ ପଡ଼ିଛନ୍ତି କାର୍ପେଟ୍ ଉପରେ— ଡାହାଣ ହାତରେ ଟି'ପୟ ଉପରେ ଭରାଦେଇଛନ୍ତି । ମୁଁ ଦଉଡ଼ି ଆସୁଆସୁ ତୋ' ପାପା ମୁଣ୍ଡଉଠାଇ ମୋତେ ଚାହିଁଦେଲେ । ହଠାତ୍ ଚମକି ପଡ଼ିଲି ମୁଁ ! ସେ ତ ଏମିତି କେବେ ଚାହାଁନ୍ତି ନାହିଁ ? ପୁଣି ଯିମିତି ଛାଇଟେପରି କ'ଣ ଚାଲିଗଲା ମଝିରେ ! ତମରି ସେ ପିଲାଟି ନଇଁପଡ଼ି ତୋ' ପାପାଙ୍କୁ ଉଠାଇ ସୋଫାରେ ବସାଇଲା । ବୁଲିପଡ଼ି ମୋତେ ନମସ୍କାର କଲା ଓ କ'ଣ କ'ଣ ସେ କହିଯାଉଥିଲା !

– କ'ଣ ସବୁ ସେ କହିଯାଉଥିଲା ?

– ମୁନାରେ, ମୋ ଧନ, ତୁ କୋଉଠି ଅଛୁ ? କୋଉଠି ଅଛୁ ତୁ ? ମୁଁ କିଛି ଶୁଣିନାହିଁ ତା' କଥା— ତମରି ସେ ପିଲାଟିର— ତୋରି ବୟସର ସେଇ ପିଲାଟିର କଥା ।

ପୃଥିବୀଯାକର ନଈ, ନାଳ, ପୋଖରୀ କୋଉଠି ଶୁଖିଗଲାରେ ମୋ ଧନ ! ଟୋପାଟିଏ ପାଣି ଦେଲେ ନାହିଁ ତତେ ସେମାନେ ! ଛଅଦିନ ଛଅ ରାତି – ଟୋପାଟିଏ ପାଣିପାଇଁ ତୁ କୁଆଡ଼େ ବିକଳ ହୋଇପଡୁଥିଲୁ ! ରାତିରେ ତଳେ ଗଡ଼ିପଡ଼ି ବରଫ

ଚୋବାଇ ଯାଉଥିଲୁ– ହାତ ଦୁଇଟା ତୋର କୁଆଡ଼େ ବଂଧାହୋଇଥିଲା ! କୋଉଠି ଶୁଖିଗଲା ସୂର୍ଯ୍ୟ ଦେବତାଙ୍କୁ ମୁଁ ପ୍ରତିଦିନ ଟେକୁଥିବା ଆଞ୍ଜୁଳାର ପାଣି ! ଖାଇବା ତ ଦୂର, ଟୋପାଏ ପାଣି ବି ଦେଲେନାହିଁ ! ମୋ ଧନରେ, ତୁ ଲଗାଇଥିବା ନଡ଼ିଆଗଛ ଗୁଡ଼ାକ ପଇଡ଼ରେ ଭର୍ତ୍ତି ହୋଇଯାଇଛି । ପଛପଟ ଛୋଟ ପୋଖରୀରେ ତୁ ଛାଡ଼ିଥିବା କଇଁଫୁଲ ଆଜିକାଲି ରାତିରେ ଗୋଟାଏ ଦୁଇଟା ହେଇ ଫୁଟୁଛି । ଏମିତି ତଳତଳ ପୃଥିବୀରେ ତୋତେ ଟୋପାଏ ପାଣି ମିଳିଲା ନାହିଁ ! ପୁଣି ଛଅଦିନ ଛଅ ରାତି ଧରି ! କେମିତି ବିଶ୍ୱାସ କରିବିରେ ମୁଁ ଏ କଥା ! କିଏ ସେମାନେ ? କାହିଁକି ଏତେ କ୍ରୋଧ, କାହିଁକି ଏତେ ଘୃଣା ତାଙ୍କର ତୋ' ପ୍ରତି ? ଇଏ ସତ ନା ମିଛ ?

ଆଜି ସକାଳୁ ତୋ ପାପା ଏୟାର୍‌ପୋର୍ଟ ଗଲେ । ଘରସାରା ଲୋକଭର୍ତ୍ତି । କିଏ କିଏ ଆଉସବୁ ତାଙ୍କ ସହିତ ଗଲେ କେଜାଣି– ମୁଁ କିଛି ଜାଣିନାହିଁ । ତୁ ଆସୁଛୁ କି ରେ ମୋ ଧନ ? ଆସିଯାଆ ମୋ ବାପା ! କବାଟ ଠେଲିଦେଇ, ଠିଆହୋଇଯାଆ ମୋ ଆଗରେ । କଅଁଳି ଆସୁଥିବା ଛନଛନ ସବୁଜ ଲମ୍ବା କଦଳୀଗଛଟେପରି, ଘଡ଼ଘଡ଼ି ବିଜୁଳି ସାଂଗେ ପୃଥିବୀକୁ ଚମକାଇ ଝରଝର ଝରିପଡୁଥିବା ବୈଶାଖର ବର୍ଷାପରି, ଆମ ଛାତ ଉପରର ନରମ ଶୀତଦିନିଆ ଖରାପରି– ଆସିଯାଆ ମୋ ପାଖକୁ ଧନ– ଦୁଇମାସ ତଳେ ଯେମିତି ଯାଇଥିଲୁ, ଠିକ୍ ସେମିତି ।

ଡକ୍ଟର୍ ଗୁପ୍ତା ମୋତେ ଭୋର୍‌ରୁ ଇଂଜେକ୍‌ସନ୍‌ଟେ ଦେଇଛନ୍ତି । ହେଇଟି, ଆହୁରି ଗୋଟାଏ ଆଣି ଆସିଲେଣି । ଇଏ କୁଆଡ଼େ ମୋର ସ୍ନାୟୁକୁ ଶାନ୍ତକରିବ !

ତୋତେ ନଅବର୍ଷ ହୋଇଥିଲା । ତୋ ପାପାଙ୍କର ସେତେବେଳେ ଅଲ୍‌ୱାର୍‌ରେ ପୋଷ୍ଟିଂ ହୋଇଥାଏ । ଟାଉନ୍‌ହଲରେ ଛୋଟ ପିଲାଙ୍କର ଚିତ୍ରାଙ୍କନ ପ୍ରତିଯୋଗିତା ହେଉଥାଏ । ବିଷୟବସ୍ତୁ ଥାଏ– ଆଇ ଆମ୍ ଏ ହୀରୋ । ତୁ ସେଥିରେ ପ୍ରଥମ ପୁରସ୍କାର ପାଇଥିଲୁ । ତୋ'ର ଚିତ୍ରଥିଲା, ସବୁଜ ରଙ୍ଗର ଟୋପି, ସବୁଜ ପୋଷାକପିନ୍ଧି କାନ୍ଧରେ ରାଇଫଲ୍‌ଟେ ପକାଇ, ମୋଟା କଳା ନିଶଥିବା ଯୁବକଟିଏର ଚିତ୍ର ! ସେଇ ଚିତ୍ରଟି କେତେ ଭଲ ହୋଇଥିଲା ମୋର ମନେନାହିଁ । କିନ୍ତୁ ସେ ମୋଟା କଳାନିଶ ଓ କାନ୍ଧ ଉପରର ରାଇଫଲ୍ ଏବେବି ମୋ ଆଖିଆଗରେ ନାଚିଯାଉଛି । ତୋ ପାପା ଭାରି ଗର୍ବିତ ହୋଇଥିଲେ, କହିବୁଲୁଥିଲେ– ମାଇଁ ସନ୍ ୱିଲ୍ ବି ଏ ଫାଇଟର୍ । ମୋତେ କିନ୍ତୁ ସେଦିନ ଭଲ ଲାଗିନଥିଲା । ମୁଁ ଯୁକ୍ତି କରୁଥିଲି, ଏମିତି ଏସବୁ ଏତେ ପିଲାଦିନୁ ଶିକ୍ଷାଦେବା ଠିକ୍ ନୁହେଁ । ସେ କ'ଣ କରିବ, ଦେଖାଯିବ ।

କଥା ଅଛି, ସାତପୁରୁଷର ଖୁଣ ଆଣି ମଣିଷଛୁଆ ଜନ୍ମ ହୁଏ । କେଜାଣି କେମିତି ତୋର ଆଖିର ଡୋଳା ଗାଢ଼ ନୀଳ– ସଫା ଧଳା ଆଖିରେ ଗାଢ଼ନୀଳ ଡୋଳା ଓ ଘନ କଳା ଭୂଲତା । ତୋ ପାପା କୁହନ୍ତି, ତୋ ଜେଜେବାପାଙ୍କର କୁଆଡ଼େ ଏମିତି ଚେହେରା

ଥିଲା । ତୋ ଆଈ କୁହେ, ତା' ମାଆପରି ଦେଖିବାକୁ ତୁ । ଯାହାପରି ବି ହେଉ– ସରଳ, ସତେଜ, ବିଶ୍ୱାସଭରା ତୋ ଚାହାଣୀ । ବରଫ ପାହାଡ଼ ଭିତରେ ନିଥର, ଅତଳ ନୀଳ ହ୍ରଦର ପାଣିପରି ନିର୍ମଳ, କୋମଳ– କେତେବେଳେ କେମିତି ଦୁଷ୍ଟାମିରେ ଚଞ୍ଚଳ ହୋଇଯାଏ ଯାହା ! ତୁ ଆଖିଖୋଲିବା ଦିନରୁ ଯାହା ମୁଁ ଦେଖିଆସିଛି– ସେହି ହସହସ ସ୍ନେହଭରା ଚାହାଣୀ ତୋର– କେତେ ପରିଚିତ– ଆଃ ! ତୁ ଦୂରରେ ଥିଲାବେଳେ ବି ଦିଶିଯାଏ ମୋତେ । ବାଇଶି ବର୍ଷର ଆସ୍ଥା, ବିଶ୍ୱାସରେ ତିଆରି ସେଇ ଉଜ୍ଜ୍ୱଳ ଦୁଇ ମଣି, ରତ୍ନ ମୋର....

– ଧନରେ ! କ'ଣ କୁହାକୁହି ହେଉଛନ୍ତି– ଗୋଟିଏ ପରେ ଗୋଟିଏ ସେମାନେ ତା'କୁ ତାଡ଼ି ଦେଇଛନ୍ତି ! ମିଛ କଥା ଏସବୁ ! ତୁ ଥରେ ଚାହିଁଦେଲେ ତ ଶତ୍ରୁଟିଏର ବି ମାୟା ଆସିଯିବ । ଏକଥା କିଏ କରିବାକୁ ଯିବ ? ପୃଥିବୀଯାକର ସମସ୍ତ ନୃଶଂସତା ତ ହାର ମାନିଯିବ ତୋର ସରଳ, ନିର୍ମଳ ଚାହାଣୀ ଆଗରେ । ବାପାରେ, କ'ଣ ତୁ ତା'ହେଲେ ଶୋଇଥିଲାବେଳେ– ଅଜାଣତରେ .... ମୁଁ ତ ବିଶ୍ୱାସ କରିପାରୁନାହିଁ । ଅପେକ୍ଷା କରିଛି ତୋତେ ପଚାରିବାପାଇଁ । ତୁ କୋଉଠି ଅଛୁ ମୋ ମୁନା !

ଟାଣ ହୋଇଆସୁଥିବା ଲହୁଣି ପିତୁଳାଟିଏ ତୁ ! କେତେ ଭାର ଦେଇଥିବୁ ପୃଥ୍ୱୀକୁ ଯେ ଜମା ବାଇଶି ବର୍ଷରେ ! ସତରେ କ'ଣ ପୃଥ୍ୱୀ ସହିପାରିଲା ନାହିଁ ସେତକ ! କିଏ ହେଲେ କୁହ ମୋତେ– ସତ କୁହ !

''ଏଇଟାକୁ ଏମିତି ସିଧାକରି ଧରି ସୁସୁ କରିବୁ– ତା'ହେଲେ ଠିକ୍ ଯାଇ ଟଏଲେଟ୍‌ରେ ପଡ଼ିବ ।'' ମୁଁ ତୋତେ ପ୍ରଥମ ଥରପାଇଁ ଶିଖାଉଥିଲି ।

''ଆଉ କ'ଣ କ'ଣ ସେଥିରେ ସେ କରିବ, ତା'କୁ ଶିଖାଇଦିଅ ।'' ତୋ ପାପା ଟଏଲେଟ୍‌ର ଚୌକାଠ ଧରି ଠିଆହୋଇଥିଲେ ଓ ଓଠ ଚିପି ହସୁଥିଲେ ।

''ଚୁପ୍‌କର, ବଡ଼ ବେହିଆ ତୁମେ ।'' ମୁଁ ମୁହଁ ବୁଲାଇ କହିଥିଲି ଓ ହସିପକାଇଥିଲି ।

''ମମି, ପାପା କ'ଣ କହିଲେ କି ?'' ତୁ ସୁସୁ କରୁକରୁ ପଛକୁ ମୁହଁବୁଲାଇ ପଚାରିଲୁ ।

''କିଛି ନୁହେଁ ରେ, ତୁ ତୋ କାମସାରି ଫ୍ଲସ୍ କରି ଆ ।'' ମୁଁ କହିଥିଲି ଓ ରୋଷେଇ ଘରକୁ ଚାଲିଯାଇଥିଲି ।

–ରାକ୍ଷସ ! ପଶୁ ! ଓଃ ! କି ପ୍ରକାର ହିଂସ୍ରଜନ୍ତୁ ସେମାନେ ! ଖଣ୍ଡଖଣ୍ଡ କରି କାଟିଲେ ତୋତେ– କ'ଣ କାହାର ଦୋଷ ତୁ କରିଥିଲୁ ବାବୁରେ.....

ରତ୍ନା ଆଜି ସକାଳେ ଆସିଥିଲା, ତୋ ପାପା ଏୟାର୍‌ପୋର୍ଟ ଚାଲିଯିବା ପରେ । ତା'ର ପତଳା ବେକରେ ସେଇ ସୁନାଚେନ୍ ଓ ଡାଇମଣ୍ଡ ଲକେଟ୍‌ଟି ପିନ୍ଧିଥିଲା । ଆମେ ତା'କୁ ଯାହା ଏନ୍‌ଗେଜ୍‌ମେଣ୍ଟରେ ଦେଇଥିଲେ । ବାହାଘର ବର୍ଷେ ପରେ କରିବାକୁ ତ

ସେଦିନ ତା' ବାପା ମାଆ କହିଥିଲେ । ତୋ ପାପା କିନ୍ତୁ ପରେ କହିଲେ– ନାଇଁ, ଆମେ ଏଇ ଡିସେମ୍ବରରେ କରିଦେବା । ଆର୍ମିବାଲାଙ୍କର ବାହାଘର ଶୀଘ୍ର ହୋଇଯିବା ଉଚିତ । ମୁଁ ପାଟିରେ ହାତଦେଇଦେଲି ତାଙ୍କର– ସବୁବେଳେ ତାଙ୍କର ଏମିତି ଅମଙ୍ଗଳ କଥା । ତୁ ଖବର ପାଇଲୁ ତ ? ଡିସେମ୍ବର ତେଇଶିରେ ବାହାଘର ହେବ । ମୁଁ ଆଜି ରତ୍ନାକୁ କହିଲି ସେଇକଥା । ସେ ତ ଖାଲି ମୋତେ ଜାବୁଡ଼ିଧରିଥାଏ । ମୁଁ ସେଇଠୁ ବଡ଼ ଆଲମାରି ଚାବିଟା ଆଣି ପୁରୁଣା ଆଲ୍‌ବମ୍‌ଟି ବାହାରକଲି । ଚାବିଟା କୋଉଠି ରହିଯାଇଥିଲା କେଜାଣି, ଖୋଜିବାରେ ପନ୍ଦର ମିନିଟ୍ ଗଲା । ରତ୍ନା ବେଳେବେଳେ ଆସେ– ତୋର ପିଲାଦିନର ଫଟୋ ଦେଖିବାକୁ ଭାରି ଆଗ୍ରହ ତା'ର । ଆଜି କିନ୍ତୁ ମୁଁ ଆମର– ମାନେ ତୋ' ପାପା ଓ ମୋ'ର ପୁରୁଣା ଆଲବମ୍‌ଟା କାଢ଼ିଲି । ତୋତେ ସେତେବେଳେ ସାତ ବର୍ଷ– ତୋ ପାପାଙ୍କୁ ତେତିଶି । ଆମେ ନୂଆ ନୂଆ ବମ୍ବେ ଆସିଥାଉ । ପ୍ରଥମକରି ମୁଁ ବେଭିବଲ୍‌କୁ ଯାଇଥିଲି; ତୋତେ ଆଉଟ୍ ହାଉସ୍‌ରେ ଦିଦି ପାଖରେ ଛାଡ଼ିଦେଇ । ତୋ ପାପା ରାଗୁଥିଲେ, କାହିଁକି ଶାଢ଼ି ପିନ୍ଧିକରି ଆସିଲି– ଗାଉନ୍‌ଟେ କାହିଁକି ତିଆରି ନ କଲି ! ସେତେବେଳେ ମୋତେ ଭାରି ଲାଜ ମାଡୁଥିଲା– ଗାଉନ୍ ପିନ୍ଧିକରି ବାହାରକୁ କେମିତି ଯାଇଥା'ନ୍ତି ? ତୋ ପାପା ଧଳାରଙ୍ଗର ଗଳାବନ୍ଦ କୋଟ୍ ପିନ୍ଧିଥା'ନ୍ତି – ସେମିତି ଶାଢ଼ି ପିନ୍ଧାହୋଇ – ବେଭିବଲ୍‌ର ଫ୍ଲୋର୍‌କୁ ଟାଣିନେଲେ । ତାଙ୍କର ବନ୍ଧୁ କିଏ ବୋଧହୁଏ ଫଟୋଟି ଉଠାଇଛନ୍ତି– ତା'କୁଇ ରତ୍ନାକୁ ଦେଖାଉଥିଲି । ତା'କୁ କହିଲି, ତୁମେମାନେ ଏମିତି ଫଟୋଟିଏ ଉଠାଇବ । ଯା'ଠାରୁ ଆହୁରି ଜୀବନ୍ତ ଯେମିତି ହେବ ! ତୁମେମାନେ ଜଲ୍‌ଦି ହନିମୁନ୍‌ରୁ ଫେରିଆସିବ । ଜାନୁଆରୀ ୧ ତାରିଖ ସଂଧ୍ୟା– ପୁଣି ନୂଆ ଶତାବ୍ଦୀର ଆରମ୍ଭ – ଆର୍ମିବଲ୍‌ରେ ନିଶ୍ଚୟ ଯୋଗଦେବ । ରତ୍ନା ଗୋଟିଏ ମେରୁନ୍ କଲର୍‌ର ଗାଉନ୍ ତିଆରିକରିବ । ମେରୁନ୍ କଲର୍ ତା'ର ଗୋରା ଦେହକୁ ଭାରି ମାନିବ । ତା'ର କୁଞ୍ଚୁକୁଞ୍ଚିଆ ଛୋଟ ବାଳକୁ ଉଠାଇଦେଇ ଟପ୍‌ନଟ୍‌ଟେ କରିଦେବ । ଡାନ୍‌ସ ଫ୍ଲୋର୍‌ରେ ତୁ ତା'କୁ ବାହୁରେ ଧରିଥିଲାବେଳେ ଓ ସେ ଟିକିଏ ବେକ ପଛକୁ ଝୁଙ୍କାଇଥିବାବେଳେ, କାହାକୁ କହିବ ଫଟୋଟିଏ ନେବାକୁ । ତୁ... ମୁନାରେ, ତୁ କୋଉ ରଙ୍ଗର ସୁଟ୍ ପିନ୍ଧିବୁ..... ମିନିଟିଏ ମୁଁ ଭାବୁଁ ଭାବୁ ରତ୍ନା ମୁହଁରେ ଦୁପଟ୍ଟା ଢାକି ଦୌଡ଼ି ପଳାଇଲା । ବାରଣ୍ଡାରେ ଡକ୍ଟର ଗୁପ୍ତାଙ୍କୁ କ'ଣ କହିଲା କେଜାଣି– ଗୁପ୍ତା ଅଙ୍କଲ୍ ଆସି ପୁଣି ଇଞ୍ଜେକ୍‌ସନ୍‌ଟେ ଦେଲେ । ମୋ ଆଖି ତ ବୁଜିହେଇ ଆସିଲା– ଆଲମାରିଟା ସେମିତି ଖୋଲାପଡ଼ିଲା.....

– ଜାଣୁ, ମୁନା....

– ତୁ ଯେତେବେଳେ ଏକଦମ୍ ଛୋଟଟିଏ ହେଇଥିଲୁ– ଖଟ ଉପରେ ଶୋଇ ଶୋଇ ଅନେକ ସମୟରେ ସ୍ଥିର ଦୃଷ୍ଟିରେ ସିଲିଂ ଫ୍ୟାନ୍‌କୁ ଚାହିଁ ଚାହିଁ ହାତ ଗୋଡ଼ ହଲାଇ ଖେଳିଚାଲିଥିଲୁ– ତୋ କୁନୁମୁନିଆ ମନରେ ତୁ କ'ଣ କ'ଣ ଭାବୁଥିଲୁ କେଜାଣି !

ତୋ ପାଖରେ ତୋତେ ଜଗି ମୁଁ ନଭେଲ୍‌ଟିଏ ଧରି ଖଟର ବାଡ଼କୁ ଆଉଜି ପଢୁଥିଲି– କିନ୍ତୁ ଅନେକ ସମୟରେ ଗୋଟିଏ ଅଜଣା ଆଶଙ୍କା ମୋତେ ଘାରିଦେଉଥିଲା । ଆତଙ୍କିତ ହେଇଯାଉଥିଲି ଯେ, କାଳେ ତୋତେ ବଢ଼ାଉଥିବା ଭିତରେ ମୋର କିଛି ହେଇଯିବ ! ଏମିତି କିଛି ହେଇଯିବ ଯେ ମୁଁ ନଥିବି – ତୋତେ ଏକୁଟିଆ ଛାଡ଼ିଦେଇ..... । ନଭେଲ୍‌ଟିକୁ ଅଧାଖୋଲା କରି ଖଟ ଉପରେ ରଖିଦେଇ ମୁଁ ତୋ ମୁହଁକୁ ଚାହିଁବସୁଥିଲି । ତୋର ଏଇତକ ତମ୍ବାଳିଆ ରଙ୍ଗର କେଶ ତିରୁପତିଙ୍କ ପାଖରେ ପଡ଼ିବ । ତୁ ଗୁରୁଣ୍ଡିବୁ – ଖଟବାଡ଼କୁ ଧରି ଠିଆହେବୁ । ଧୀରେ ଧୀରେ ହଲିହଲି ଚାଲିବୁ । ନର୍ସରୀ ସ୍କୁଲ୍ ଯିବୁ, ଛୋଟିଆ ୟୁନିଫର୍ମ ପିନ୍ଧି । ଛୋଟ ସାଇକେଲ୍‌ଟିଏ ଥିବ ତୋର । ପାପା ତ ତୋର ଅଫିସ୍‌ରେ ଥିବେ– ତୋତେ ସାଇକେଲ୍ ଉପରେ ବସାଇ, ପଛରୁ ଧରି ଧରି ମୋତେ ହିଁ ତ ବାରଣ୍ଡାସାରା ଚଲାଇବାକୁ ହେବ । ଅଥଚ ତା' ପୂର୍ବରୁ ଯଦି ମୋର କିଛି ହୋଇ ଯାଇଥିବ..... କ'ଣ କରିବୁରେ ତୁ ଏକା ଏକା !

ସ୍କୁଲ୍‌ରୁ ଫେରି ଭୋକଲାଗିଲେ କାହାକୁ କହିପାରୁନଥିବୁ– ହଲିବାକୁ ଆରମ୍ଭ କରିଥିବା ଦାନ୍ତକୁ ଭାଙ୍ଗିଦେବାକୁ କେହି ଖାତିର୍ କରୁନଥିବେ– ମୂଷଳଧାରାରେ ବର୍ଷା ପଡୁଥିବାବେଳେ ଜୋର୍‌ରେ ଘଡ଼ଘଡ଼ି ମାରିଲେ କୁଣ୍ଢେଇ ଧରିବାକୁ କେହି ନଥିବେ । ଆହା ! ମା' ଛେଉଣ୍ଡ ହେଇ କେଡ଼େ ଦୁଃଖରେ ଭୟରେ ତୁ କାନ୍ଦୁଥିବୁ । ଏତକ ଭାବୁ ଭାବୁ ମୁଁ କାନ୍ଦିପକାଏ । ତୁ କିନ୍ତୁ ସେମିତି ମୁଚୁକି ମୁଚୁକି ହସି ହାତଗୋଡ଼ ହଲାଇ ଖେଳୁଥାଉ । ମୁଁ ଲୁହପୋଛି ନଭେଲ୍ ପଢ଼ାରେ ଲାଗେ ।

ମୁନାରେ, ଧନ, ମୁଁ ଆଉ ଟିକିଏ ସ୍ପର୍ଦ୍ଧା ମଧ କରିପକାଇଥିଲି । ଆଜିକାଲି ଲୁଚେଇ ଲୁଚେଇ ପ୍ରାର୍ଥନା କରୁଥିଲି, ନାତି କି ନାତୁଣୀଟିଏ ସାଙ୍ଗରେ ଖେଳିପାରିବା ପୂର୍ବରୁ ଈଶ୍ୱର ମୋତେ ନେଇ ନ ଯାଆନ୍ତୁ ! ଏଇ ଛୋଟିଆ ନାତି କି ନାତୁଣୀର ଚେହେରା କିନ୍ତୁ ମୁଁ ଭୟରେ ଆଙ୍କୁନଥିଲି– ଆଗରୁ ଏମିତି କରିବା ଉଚିତ ନୁହେଁ– ଦୃଷ୍ଟିପଡ଼ିଯିବ ।

– ବାବୁରେ, ଏଇ ଦେଖ୍ ! ଅଣ୍ଟିଭର୍ତ୍ତି ପାକଳ ସ୍ୱପ୍ନମାନଙ୍କୁ ମୁଁ କେମିତି ଆବୋରି ଧରି ବସିଛି, ଦେଖ୍ !

ତୋ' ପାପା ଫେରିଲେ ବୋଧହୁଏ । ଏତେ ଲୋକ ଗଦାହୋଇଛନ୍ତି, ଗେଟ୍ ପାଖରେ, ବାହାରେ, ଅଥଚ ପାଟି ଶୁଭୁନାହିଁ କାହାର, ଜମାରୁ । ତୁମ ଆର୍ମିଲୋକଗୁଡ଼ାଏ ଆସିଛନ୍ତି ସାଙ୍ଗରେ । ଚମକୁଥିବା ବିଜୁଳିପରି ଚଞ୍ଚଳ ତୁ ମୁନା । ତୁ ତ ଗେଟ୍ ଖୋଲି କେବେ ହେଲେ ଚାଲିକରି ଆସୁନା– କେତେ ଖେପା ଡିଆଁମାରି ସିଧା ଆସି ଭିତର ଘରେ ହାଜିର ହୋଇଯାଉ । ବାଁ ହାତରେ ମ୍ୟୁଜିକ୍ ସିଷ୍ଟମ୍ ଅନ୍ କରୁ ଓ ଡାହାଣ ହାତରେ ମୋତେ ଜାବୁଡ଼ିଧରୁ । ମୁଁ, ମୋର ଅଣ୍ଟା ପାଖରେ ଗୁଡ଼େଇ ହେଇଥିବା ତୋର ପତଳା ଲମ୍ବା ଆଙ୍ଗୁଠିଗୁଡ଼ାକ ଆଉଁଷୁ ଥାଏ ।

କିଏ ... କିଏ କେଜାଣି କହୁଛି, ପ୍ରଥମେ ତୋର ଆଙ୍ଗୁଠିଗୁଡ଼ାକ ସେମାନେ ଗୋଟି ଗୋଟି କରି କାଟିଲେ, ଆଉ ତା'ପରେ..... ପାଟିକରି ଚୁପ୍ ହେବାକୁ କହିଲି ମୁଁ ତା'କୁ । କେହି ଏ ପୃଥିବୀରେ ଏମିତି ନାହିଁ – ନା ଈଶ୍ୱର ନା ସଇତାନ୍, କେହି ଏମିତି କରିପାରିବ ନାହିଁ ତୋ ସହିତ । ତୋର ତ କେହି ଶତ୍ରୁ ନାହାନ୍ତି । ମୁଁ ବିଶ୍ୱାସ କରୁନାହିଁ କିଛି– ମୁଁ ଜାଣେ, ମୋତେ ଟିକିଏ ଛଟପଟ କଲା ପରେ ତୁ ତୋର ପିଲାଦିନପରି ପଛରୁ ଆସି ଦୁଇହାତରେ ମୋ ଆଖି ବୁଜିଧରିବୁ......

ଜାତୀୟପତାକା ଗୁଡ଼ାହେଇ ଛଅଫୁଟ ଲମ୍ବର କାଠ ବାକ୍ସଟିଏ ବସିବା ଘରକୁ ଆସିଲା । ତୋରି ସାଙ୍ଗ ବୋଧହୁଏ ପାଞ୍ଚ ଜଣ ହେବେ, ତା'କୁ ମିଶିକରି ଖୋଲି ଧରିଲେ । ସଫା ଧଳା କପଡ଼ାରେ ବନ୍ଧାବନ୍ଧି ହୋଇ ତିନିଫୁଟ ଲମ୍ବ, ଦେଢ଼ଫୁଟ ଖଣ୍ଡେ ହେବ ଚଉଡ଼ାର ସାମାନ୍ୟ ଉଚ୍ଚା ଜିନିଷଟିଏ ଯତ୍ନରେ ଗୁଡ଼ାହୋଇଥାଏ– ମୂଲ୍ୟବାନ୍ ଜିନିଷ କିଛି– କ'ଣ କେଜାଣି, ଭିତରୁ ଟିକିଏହେଲେ ଦିଶୁନଥାଏ ।

– ଆଣ୍ଠୁପାଖରୁ ଗୋଡ଼ ଦୁଇଟି କାଟିନେଇଛନ୍ତି ।

– କିଏ କହିଲା ଏତକ ? ମୁଁ ବୁଲିପଡ଼ି ଦେଖିଲାବେଳକୁ ପାପା ତୋର ଘାଇଲା ଜନ୍ତୁଟେ ପରି ଛଟପଟ ହେଉଛନ୍ତି– କାହାକୁ କାମୁଡ଼ିବେ କି ନିଜକୁ କାମୁଡ଼ିହେବେ । ମୁଁ ତାଙ୍କ ପାଖକୁ ଦୌଡ଼ି ଯିବାକୁ ଚେଷ୍ଟା କଲି– ହାତ ବଢ଼ାଇବାକୁ ଚେଷ୍ଟା ବି କଲି, କିନ୍ତୁ କ'ଣ ହେଲା କେଜାଣି, ଟିକିଏ ବି ହଲିପାରିଲି ନାହିଁ । ଗୁପ୍ତା ଅଙ୍କଲ୍ ଓ ଆଉ କିଏ କିଏ ବୋଧହୁଏ ଧରିଥା'ନ୍ତି ମୋତେ– ଦୁଇ ଦୁଇଟା ଇଂଜେକ୍ସନ୍ ଦେଇଦେଲେ । କ'ଣ କରିବି ଆଉ– ଶୋଇବାକୁ ପଡ଼ିବ ଏବେ । ତୋ ସାଙ୍ଗରେ କଥାବାର୍ତ୍ତା ବୋଧହୁଏ ହୋଇପାରିବିନାହିଁ ।

ନିଦ କ'ଣ ହେଉଛି ମୋତେ କିରେ ! ତୋତେ ନ ଦେଖିବାଯାଏ ଶୋଇବି କେମିତି କହିଲୁ ? ଅନ୍ଧାର ହେଇଥାଏ ଚାରିଆଡ଼େ । ମୁହଁକୁ ମୁହଁ ଦିଶୁ ନଥାଏ । ମୁଁ କିନ୍ତୁ ତୋ ନାଁ ଡାକି ଡାକି ଚାଲିଥାଏ । ଜାଣେ, ତୁ ଯୋଉଠି ଥିବୁ, ଦଉଡ଼ିଆସିବୁ ମୁନା, ମୋ ଡାକ ଶୁଣି ଥୟହୋଇ ରହିପାରିବୁ କ'ଣ ? ଆଗରେ ଇଏ କିଏ ଠିଆହୋଇଛି ? ମୁଁ ତ ଚମକିପଡ଼ିଲି । ତୋ ପରି ତ ଲାଗୁନାହିଁ । ଟିକିଏ ପାଖକୁ ଗଲି । ଧଳା ବରଫପରି ଚମକୁଥାଏ ତା' ଦେହ, ସରୁ ଘଞ୍ଚ ପାଇନ୍ ବଣପରି ଲମ୍ବିଥାଏ ତା'ର କେଶ– ସ୍ତ୍ରୀ ଲୋକଟେ ତ– ମୁଁ ବାଟ କାଟି ଦଉଡ଼ି ଆଗକୁ ଯିବାକୁ ବସିଲି । କାଳେ ତୁ ଆଗରେ କୋଉଠି ଥିବୁ ! ହାତ ଲମ୍ବିଗଲା ସେଇ ସ୍ତ୍ରୀଟିର ମୋ ସାମନାରେ– ସୁଉଚ୍ଚ ପାହାଡ଼ ସନ୍ଧିରୁ ତଳକୁ ଡେଇଁପଡୁଥିବା ଶୁଭ୍ର ଝରଣାପରି ତା'ର ବାହୁ ।

"କିଏ ତୁମେ ? ମୁଁ ମୁନାକୁ ଖୋଜୁଛି – ମୁନା କାହିଁ ? ମୁନାରେ..."

"ଚୁପ୍, ଚୁପ୍ " ମୋ ସାମନାରୁ ହାତ ଉଠାଇ ପାଟିରେ ଆଙ୍ଗୁଳିଦେଲା ସେ– ମୋତେ କଥା ନ କହିବାକୁ ଇଶାରା ଦେଲା ।

''ଶୋଇଛି ସିଏ । ପାଟି କର ନାହିଁ ।''

ମୁଁ ଟିକିଏ ପାଖକୁ ଆସିଲି ସ୍ତ୍ରୀଲୋକଟିର ।

''ଦେଖୁନୁ ମୋତେ, ମୁଁ ପରା କାର୍‌ଗିଲ୍ ମା' । ଦେଖ୍ ମୋତେ, ତିନିଶହ ଛପନଟି ଗୁଳି କାଢ଼ିଦେଇଛି ମୁଁ– ଏଇଠି ଦେଖ୍ ।''

ମୁଁ ନିରେଖିକରି ଚାହିଁଲି । ଦେହସାରା ରକ୍ତଜୁଡୁବୁଡୁ ତା'ର । କି ରଂଗର ଲୁଗା, କି ରଂଗର ବ୍ଲାଉଜ୍ ପିନ୍ଧିଛି କେଜାଣି ! ଦେହସାରା ଗୁଳିର ଘା' ଦାଗ । ଇଞ୍ଚେଟିଏ ବି ଦିଶୁନାହିଁ । ମୁହଁକୁ ଚାହିଁଲି– କପାଳସାରା ଗୁଳିର ଦାଗ– ଝରଝର ରକ୍ତ ବାହାରୁଛି – ସବୁଆଡ଼ ପୂରାପୂରି ଲାଲ୍, ଆଉ ସଫା ଚକ୍‌ଚକ୍ ଜମିଥିବା ବରଫପରି ଦିଶୁନାହିଁ ସେ ।

''ସେମାନେ ସମସ୍ତେ ଶୋଇଛନ୍ତି ସେଇଠି– ସେ ପଟେ ......'' ଝରଝର ରକ୍ତ ବହିଯାଉଥିବା ହାତ ଉଠାଇ ବୁଲିପଡ଼ି ପଛକୁ ଦେଖାଇଲା ସେ । କେମିତି କ୍ଲାନ୍ତଶ୍ରାନ୍ତ ହୋଇ, ମୋଡ଼ିମୋଡ଼ି ହେଇ ଶୋଇପଡ଼ିଛନ୍ତି, ଦେଖୁନୁ....ଉଠାନା ସେମାନଙ୍କୁ ।

''ମୁନା, ମୁନା କାହିଁ ?''

''ସେଇଠି ଅଛି ।''

ତାଙ୍କରି ଭିତରେ ତା'ହେଲେ ଶୋଇଛୁ ତୁ ! ଅଧିକାଂଶ ଦିନ ତୋ ବେଡ଼୍‌ରୁମ୍‌କୁ ଆସି ତୋର ଟେବୁଲ୍ ଲ୍ୟାମ୍ପ୍ ଲିଭାଏ ମୁଁ । ତୁ ପଢୁ ପଢୁ ଶୋଇଯାଇଥାଉ । ବେକ ପର୍ଯ୍ୟନ୍ତ ପଡ଼ିଥିବା ରେଜେଇକୁ କାନ ଉପରକୁ ଟାଣିଦିଏ.....

''ତା'କୁ ଟିକେ ରେଜେଇଟେ ଘୋଡ଼େଇଦେବ । ଫୋଡ଼ିହୋଇଯାଏ ବୋଲି, କମ୍ବଳ ସେ ଭଲପାଏ ନାହିଁ । ଏଥର ଶ୍ରୀନଗର ପୋଷ୍ଟିଂ ଆଗରୁ ବଡ଼ ରେଜେଇଟେ ତିଆରି କରିଦେଇଥିଲି...., ହଁ, ମଝିରେ ମଝିରେ ଟିକିଏ କାନ ଉପରକୁ ଟାଣିଦେବ । ଥଣ୍ଡା ଧରିଯିବ ନହେଲେ, ସେ କେବେହେଲେ କାନ ଘୋଡ଼େଇ ହୁଏ ନାହିଁ.....'' ମୁଁ ବ୍ୟସ୍ତ ହୋଇ କହିଚାଲିଲି ।

''ତୁ ନିଶ୍ଚିନ୍ତରେ ଫେରିଯାଆ, ସେ ମୋ ପାଖରେ ଆରାମରେ ଶୋଇବ ।'' କାର୍‌ଗିଲ୍ ମା' ବୁଲିପଡ଼ି ଧୀରେ ଧୀରେ ଚାଲିଗଲା ।

ଚିଠିଟିଏ ଲେଖୁଛି ତୋତେ । କୋଉ ଠିକଣାରେ ପଠାଇବି ? ଗୋଆଲିଅର୍‌ର ୯୯ ଏ.ଓ. ନା ଶ୍ରୀନଗରର ୧୩ ଜାମ୍ମୁ କାଶ୍ମୀର ରାଇଫଲ୍‌ସ – କୋଉ ଠିକଣାରେ ପଠାଇବି, ବାବୁରେ..... ?

– ଯାଉଛି କାର୍‌ଗିଲ୍ ମା' ନାଁ ଲେଖିଦେବି । ସେଇହିଁ ଚିଠିଟି ନିଶ୍ଚୟ ତୋ' ପାଖରେ ପହଞ୍ଚାଇଦେବ ।

□□□



## ପାରମିତା ଶତପଥୀ

... ଓଡ଼ିଶାର ବହୁ ଉଲ୍ଲେଖନୀୟ ସାହିତ୍ୟ-ପତ୍ରିକାରେ ଭିନ୍ନ ସ୍ୱାଦର ଉଚ୍ଚାଂଗ ଗଳ୍ପ ଲେଖି ଖୁବ୍ କମ୍ ସମୟରେ ରୁଚିନିଷ୍ଠ, ବୁଦ୍ଧିଜୀବୀ ପାଠକମହଲରେ ଆଦୃତା । ଜୀବନର ସ୍ଥୂଳ ଦୈନଂଦିନତା ଅହରହ ଉତ୍ତୀର୍ଣ୍ଣ ହୋଇଚାଲିଥାଏ ସୃଜନ-ପ୍ରକ୍ରିୟାରେ । କଥା ଜଗତରେ ପ୍ରଥମ ସ୍ୱାକ୍ଷର : ବିବିଧ ଅସ୍ୱପ୍ନ (୧୯୯୭) ଓ ଦ୍ୱିତୀୟ ଭାଷାକ୍ଷରା । ଆୟକର ବିଭାଗର ଉପ-ଆୟୁକ୍ତ ଭାବେ ସଂପ୍ରତି ଭୁବନେଶ୍ୱରରେ ଅବସ୍ଥାପିତା...

॥ କୌମାରୀ ଶକ୍ତିହସ୍ତା ଚ ମୟୂରବରବାହନା ॥
ଯୋଦ୍ଧୁମଭ୍ୟାୟଯୌ ଦୈତ୍ୟାନମ୍ବିକା ଗୁହରୂପିଣୀ ॥